# ଜଗନ୍ନାଥ ପଢ଼ିଆରୀ
# ରଚନା ସଂଭାର



ସଂକଳନ ଓ ସଂପାଦନା

ଡକ୍ଟର ଅରବିନ୍ଦ ଗିରି



## ଡକ୍ଟର ଅରବିନ୍ଦ ଗିରି

ଜନ୍ମ : ୧୫ ଅକ୍ଟୋବର, ୧୯୫୪

ଗ୍ରାମ : କିଶୋର ପ୍ରସାଦ, ବାଂଶଡ଼ା, ଭଦ୍ରକ । ଶିକ୍ଷା : ଏମ୍.ଏ.(ଓଡ଼ିଆ), ପିଏଚ୍.ଡ଼ି (ଉତ୍କଳ) । ସାମ୍ପ୍ରତିକ କାଳର ଓଡ଼ିଆ ଭାଷା ସାହିତ୍ୟରେ ଜଣେ ବିଶିଷ୍ଟ ଗବେଷକ, ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ପ୍ରତିଷ୍ଠିତ । ଦୁଇଶହରୁ ଅଧିକ ଗବେଷଣାତ୍ମକ ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଅନାଲୋଚିତ ପ୍ରତିଭା, ଦୁର୍ଲଭ ରଚନାବଳୀ ସଂଗ୍ରହ ଓ ସମ୍ପାଦନା ତାଙ୍କ ସାରସ୍ୱତ ସାଧନାର ଅନ୍ୟ ଏକ ବୈଶିଷ୍ଟ୍ୟ । ଏତଦ୍‌ଭିନ୍ନ ଗଳ୍ପ, କବିତା, ବେତାର ଓ ଦୂରଦର୍ଶନରେ ଆଲୋଚନା ଆଦି ତାଙ୍କ ବହୁମୁଖୀ ପ୍ରତିଭାର ପରିଚୟ । ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ଦୀର୍ଘ ୩୪ବର୍ଷ ଅଧ୍ୟାପନା କାର୍ଯ୍ୟକରି ଅଧ୍ୟକ୍ଷ ଭାବରେ ଅବସର ଗ୍ରହଣ କରିଛନ୍ତି ।

# ଜଗନ୍ନାଥ ପଢ଼ିଆରୀ ରଚନାସମ୍ଭାର

ସଂକଳନ ଓ ସମ୍ପାଦନା : ଡ.ଅରବିନ୍ଦ ଗିରି

ପ୍ରକାଶିକା : କାଦମ୍ବିନୀ ପଢ଼ିହାରୀ
ଗୋଲାଡ଼ିଆ, ଚାନ୍ଦବାଲି, ଭଦ୍ରକ
ମାର୍ଫତ୍ : ଦେବବ୍ରତ ପଢ଼ିହାରୀ, ମୋ: ୯୪୩୭୫୩୧୦୮୬

ମୁଦ୍ରକ : କାଳୀପଦ ପଣ୍ଡା, 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ'
ନେଳିଆବାଗ, ଶ୍ରୀକଣ୍ଠପୁର, ବାଲେଶ୍ୱର

ମୋ. : ୯୪୩୭୦୮୯୨୪୧

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ପ୍ରଥମ ସଂସ୍କରଣ : ୨୦୧୬, ମୂଲ୍ୟ : ଟ.୨୨୫/-

---

**JAGANNATH PADHIHARI RACHANA SAMBHARA**

**Edited & Compiled :** Dr.Arabinda Giri

**Publisher : Kadambini Padhihari**
Goladia, Chandabali, Bhadrak
C/o : Debabrata Padhihari, **Ph. :** 9437531086

**Printer : Kalipada Panda, Subarnashree Prakashini**
Neliabag, Shreekanthapur, Balasore
Mob. : 9437089241

**Cover :** Bijay Kumar Pradhan

**First Edition** : 2016, **Price :** Rs.225/-

# ସ୍ମୃତି ଅତୀତ ଓ ଆଜି

କବି ବିନୋଦ ନାୟକଙ୍କ ସହିତ ପରିଚୟ ହେବା ପରେ ଜାଣିବାକୁ ପାଇଲି ତାଙ୍କ ଶିକ୍ଷାଗୁରୁ ଜଗନ୍ନାଥ ପଢ଼ିଆରୀଙ୍କ ଘର ଚାନ୍ଦବାଲିରେ ବୋଲି । ବିନୋଦବାବୁ ସୁନ୍ଦରଗଡ଼ ହାଇସ୍କୁଲ୍‌ରେ ଛାତ୍ର ଥିଲାବେଳେ ଜଗନ୍ନାଥବାବୁ ଉକ୍ତ ସ୍କୁଲ୍‌ରେ ଶିକ୍ଷକ ଭାବରେ ଯୋଗଦାନ କରିଥିଲେ । ତାଙ୍କର ସୁନ୍ଦର ଶିକ୍ଷାଦାନ ଓ ସାହିତ୍ୟ ରଚନା ବିଷୟରେ ପ୍ରଶଂସାପୂର୍ଣ୍ଣ ଅନେକ କଥା କହିଥିଲେ । ଆଗ୍ରହ ସହକାରେ ତାଙ୍କଠାରୁ ସବୁ କଥା ଶୁଣିଥିଲି ।

ସେତେବେଳେ ଚାନ୍ଦବାଲି କଲେଜରେ ଅଧ୍ୟାପନା କାର୍ଯ୍ୟ କରୁଥିଲି । ଗବେଷଣା କାର୍ଯ୍ୟରେ ମଧ୍ୟ ବହୁ ସମୟ କଟାଉଥିଲି । ପୁରୁଣା ପତ୍ରପତ୍ରିକା ସଂଗ୍ରହ କରିବା ମୋର ଏକପ୍ରକାର ମୁଖ୍ୟକାର୍ଯ୍ୟ ହୋଇଥିଲା । ସଂଗୃହୀତ ପତ୍ରପତ୍ରିକାରେ ଜଗନ୍ନାଥ ପଢ଼ିଆରୀଙ୍କ ପ୍ରକାଶିତ ତିନି ଚାରିଟି ଲେଖା ଦେଖି ଖୁସି ହୋଇଥିଲି । ତା'ଠାରୁ ଅଧିକ ଖୁସି ହୋଇଥିଲି ଯେବେ ଜାଣିଲି, ତାଙ୍କ ପୁଅ ଡାକ୍ତର ଦେବବ୍ରତ ପଢ଼ିଆରୀ, ଯେ କି ମୋର ଖୁବ୍ ପରିଚିତ ବନ୍ଧୁବୋଲି । କେବେ କେମିତି କଥାପ୍ରସଙ୍ଗରେ ବା ଦେହପା ଅସୁସ୍ଥ ବେଳେ ତାଙ୍କ ଚେମ୍ବରକୁ ଯାଇଥିବା ବେଳେ ତାଙ୍କ ସାହିତ୍ୟିକ ପିତା ଜଗନ୍ନାଥ ପଢ଼ିଆରୀଙ୍କ ବିଷୟରେ ଆଲୋଚନା ହେଉଥିଲା । ସେ କିନ୍ତୁ ଆଗ୍ରହର ସହିତ ମୋ କଥା ଶୁଣୁଥିଲେ । ତାଙ୍କ ପିତୃଦେବଙ୍କ ଲେଖାଲେଖି ବିଷୟରେ ବା ପ୍ରକାଶିତ ରଚନା ବିଷୟରେ ସେ ପ୍ରାୟ କିଛି ଜାଣି ନଥିଲେ । କେବଳ ଏତିକି କହୁଥିଲେ, "ଶୁଣିଛି ବାପା ଲେଖାଲେଖି କରୁଥିଲେ । ତାଙ୍କର ଲେଖା ପାଣ୍ଡୁଲିପି, କାଗଜପତ୍ର, ବହିପତ୍ର ସବୁ ୧୯୮୨ ପ୍ରଳୟଙ୍କରୀ ବନ୍ୟାବାତ୍ୟାରେ ନଷ୍ଟ ହୋଇଯାଇଛି । ଯାହାକିଛି ଜାଣିଥିବ ତାଙ୍କ ବଡ଼ନାନୀ ବିଷ୍ଣୁପ୍ରିୟା । ସେ ଡାକ୍ତରୀ ପଢ଼ିବାକୁ ଯାଇ ଏସବୁ ପ୍ରତି ବିଶେଷ ଧ୍ୟାନ ଦେଇପାରିନଥିଲେ । ତା'ଛଡ଼ା ତାଙ୍କ ପିତୃଦେବଙ୍କ ରଚନା ବିଷୟରେ କେହି କେବେ କିଛି ଆଲୋଚନା କରିନଥିବାରୁ ତାଙ୍କ ଲେଖାଲେଖିକୁ ସଂଗ୍ରହ କରିବା ଦିଗରେ ସେ ମଧ୍ୟ କେବେ ଯତ୍ନବାନ୍ ହୋଇନଥିଲେ ।

ଚନ୍ଦବାଲି ରାଜକନିକା ବୈତରଣୀ ଫେରି ଘାଟ ପାଖରେ ମୋର ରହଣି ଭଡ଼ାଘର ଥିଲା । ଦିନେ ରବିବାର ସକାଳ ପ୍ରାୟ ଦଶଟା ବେଳେ ଡାକ୍ତର ଦେବବ୍ରତବାବୁ କ୍ଲିନିକ୍‌କୁ ନ ଯାଇ ମୋ ବସାରେ ପହଞ୍ଚିଲେ ଏବଂ ମୋତେ ତାଙ୍କଘରକୁ ସଙ୍ଗରେ ନେଇଗଲେ । ଗାଁ ଭିତରେ କବିଙ୍କ ଘରେ ପହଞ୍ଚିଲି । ସେତେବେଳେ ଆନନ୍ଦରେ ମୋ ହୃଦୟ ପୁଲକିତ ହୋଇଉଠୁଥିଲା । କବିଙ୍କ ଶୋଇବାଘରେ ପଲଙ୍କ ଉପରେ ବସିଲି । ତାଙ୍କ ବ୍ୟବହାର୍ଯ୍ୟ ପୁରୁଣା ବାକ୍‌ସ, ପେଟରା ଯାହା ଯେଉଁଠି ଥିଲା, ସବୁଥିରୁ ଅଣ୍ଡାଳି କାଗଜପତ୍ର, ଚିଠିପତ୍ର, ଚାରିପାଞ୍ଚଟି କଭରବନ୍ଧା ଫାଇଲ୍ ଆଣି ରଖିଲେ । ତାଙ୍କ ବଡ଼ଝିଅ ବିଷ୍ଣୁପ୍ରିୟାଦେବୀ ମଧ ଘରେ ଉପସ୍ଥିତ ଥିଲେ । ଜାଣିଲି ଏସବୁ କାର୍ଯ୍ୟରେ ସହଯୋଗ ଓ ତଥ୍ୟ ଜଣାଇବା ପାଇଁ ତାଙ୍କୁ ଡକାଯାଇଥିଲା । ଯେତେବେଳେ କଭରଫାଇଲ୍ ଖୋଲିଲି, ସେତେବେଳେ ହାତଲେଖା ପାଣ୍ଡୁଲିପିର ଅବସ୍ଥା ଦେଖି ଖୁବ୍ ଦୁଃଖ ପ୍ରକାଶ କରିଥିଲି । ହାତଲେଖା କାଗଜଗୁଡ଼ିକ ପାଣିରେ ଓଦା ହୋଇ ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ସବୁ ପାଣ୍ଡୁଲିପି ମିଶାମିଶି ହୋଇଯାଇଥିଲା । ପାଣ୍ଡୁଲିପିର ପ୍ରାୟ ଷାଠିଏ ଭାଗ ଓଦାହୋଇ ପାର୍ଶ୍ୱରୁ କିଛିକିଛି ଅଂଶ ଝଡ଼ି ଯାଇଥିଲା । ଯାହାକିଛି ମିଳିଥିଲା, ପାଣିଭିଜା କାଳିଲେଖା ଆଂଶିକ ବା ସମ୍ପୂର୍ଣ୍ଣ ଅସ୍ପଷ୍ଟ ହୋଇଯାଇଥିଲା ।

ଦୀର୍ଘ ଦୁଇଘଣ୍ଟା କାଳ ବସି ପାଣ୍ଡୁଲିପି ସବୁକୁ କୌଣସିମତେ ସଜାଡ଼ିଲି । କିଛି ତଥ୍ୟ ଓ ଫଟୋ ସଂଗ୍ରହକରି ଭଡ଼ାଘରକୁ ଫେରିଲି । ଫେରିଲାବେଳେ ଦେବବ୍ରତବାବୁ ଏବଂ ତାଙ୍କ ଭଉଣୀ ଖୁବ୍ ଆଗ୍ରହ ସହିତ କହିଥିଲେ, "ଚେଷ୍ଟା କରନ୍ତୁ ଯଦି କିଛି ଏଥିରୁ ଉଦ୍ଧାର ହୋଇପାରେ । ସେସବୁକୁ ଆପଣଙ୍କ ଦାୟିତ୍ୱରେ ଛପାଇଦେବା ।" ଏହି କଥାପଦକ ସେଦିନ ମୋ ମନ ଭିତରେ ଏତେ ଗଭୀର ରେଖାପାତ କରିଥିଲା ଯେ, ରାତ୍ରିରେ ବିଶ୍ରାମ ନେବାର ଅନେକ ବିଳମ୍ବ ପର୍ଯ୍ୟନ୍ତ ଆଖିକୁ ନିଦ ଆସିନଥିଲା । ଭାଇ-ଭଉଣୀଙ୍କ ସାରସ୍ୱତ ସ୍ରଷ୍ଟା ପିତାଙ୍କ ପ୍ରତି କି ଗଭୀର ଆନ୍ତରିକତା । ତାଙ୍କ ସାହିତ୍ୟ ସୃଷ୍ଟିକୁ ପ୍ରକାଶ କରିବାପାଇଁ କି ଆକୁଳ ଆଗ୍ରହଭାବ ? ସେଦିନ ସେମାନଙ୍କର ଅନାବିଳ ଆତିଥ୍ୟ ପାଖରେ ସବୁଦିନ ମୁଁ ଋଣୀ ହୋଇଯାଇଥିଲି ଏବଂ ତାଙ୍କ ରଚନାଗୁଡ଼ିକୁ ନେଇ ଏକ ଛୋଟିଆ ଗ୍ରନ୍ଥଟିଏ ପ୍ରକାଶ କରିବି ବୋଲି ସଂକଳ୍ପ ନେଇଥିଲି ।

ଏଭଳି ସଂକଳ୍ପ ନେବାର ଅନ୍ୟଏକ କାରଣ ଥିଲା, ଜଗନ୍ନାଥବାବୁ ଓଡ଼ିଆ ସାହିତ୍ୟରେ ଜଣେ ଅନାଲୋଚିତ ପ୍ରତିଭା । ତାଙ୍କ ବ୍ୟକ୍ତିତ୍ୱ ଓ ସାରସ୍ୱତ ସୃଷ୍ଟି ଉପରେ କୌଣସି ଆଲୋକପାତ ହୋଇନାହିଁ । ତା'ଛଡ଼ା ତାଙ୍କର ରଚିତ କୌଣସି ପୁସ୍ତକ ମଧ୍ୟ ପ୍ରକାଶ ପାଇନାହିଁ । ଯାହାକିଛି ରଚନା ପ୍ରକାଶ ପାଇଛି, ତାହାସବୁ ପତ୍ରପତ୍ରିକା ପୃଷ୍ଠାରେ ରହିଯାଇଛି । ଆଉ ତାଙ୍କ ରଚିତ ଅବଶିଷ୍ଟ ପାଣ୍ଡୁଲିପି ମଧ୍ୟ ବନ୍ୟାବାତ୍ୟାରେ ନଷ୍ଟ ହୋଇଯାଇଛି । ଆଉକିଛି ନଷ୍ଟପ୍ରାୟ କାଳଗର୍ଭରୁ ଉଦ୍ଧାର କରାଯାଇଛି । ଏସବୁ ସଯତ୍ନରେ ସଂଗ୍ରହ କରାଯାଇ ପ୍ରକାଶ କରିବା ଥିଲା ମୋପ୍ରତି ଏକ ଜାତୀୟ କର୍ତ୍ତବ୍ୟ । ତା'ଛଡ଼ା ଚାନ୍ଦବାଲିରେ ରହଣି ମଧ୍ୟରେ ଜଗନ୍ନାଥବାବୁଙ୍କୁ ଦେଖିଛି ଅନେକବାର । କିନ୍ତୁ ତାଙ୍କ ସହିତ ସେତେବେଳେ ମୋର ବ୍ୟକ୍ତିଗତ ପରିଚୟ ହୋଇନଥିଲା । "ଆରତୀ" ପତ୍ରିକାର ସମ୍ପାଦକ ଉପେନ୍ଦ୍ର ସାମଲଙ୍କ ଘରେ ପ୍ରାୟ ବର୍ଷେକାଳ ଭଡ଼ାରେ ଥିଲି । ସେତେବେଳେ ଜଗନ୍ନାଥବାବୁ ପ୍ରାୟ ଉପରଓଳି ବେଳଗଡ଼ି ବେଳେ ଆସି ଉପେନ୍ଦ୍ରବାବୁଙ୍କ ସହିତ ଗପସପ କରୁଥିଲେ । ଚାନ୍ଦବାଲିରେ ରହିବାର ଚାରିବର୍ଷ କାଳ ପର୍ଯ୍ୟନ୍ତ ଉଭୟେ ଜୀବୀତ ଥିଲେ ।

୧୯୯୯ ମସିହା ଅକ୍ଟୋବର ମାସରେ ମୋର ସ୍ୱର୍ଣ୍ଣଚୂଡ଼ ମହାବିଦ୍ୟାଳୟ, ମିତ୍ରପୁରକୁ ବଦଳି ହେଲା । ସାଙ୍ଗରେ ପାଣ୍ଡୁଲିପି ସବୁକୁ ବାନ୍ଧି ବାଲେଶ୍ୱର ଆଣିଲି । କର୍ମକ୍ଷେତ୍ରର ବ୍ୟସ୍ତତା, ବିଭିନ୍ନ ପ୍ରତିକୂଳ ପରିସ୍ଥିତି ଓ ଏଥିପ୍ରତି ବିଶେଷ ଧ୍ୟାନ ନ ଦେବା ଅବହେଳାରୁ କାର୍ଯ୍ୟଟିକୁ ପନ୍ଦରବର୍ଷ ପଛକୁ ଟାଣି ଆଣିଲା ।

ଦୁଃଖର ବିଷୟ, ପୁସ୍ତକର ମୁଖବନ୍ଧଟି ତାଙ୍କର ପ୍ରିୟଛାତ୍ର କବି ବିନୋଦ ନାୟକଙ୍କଠାରୁ ତାଙ୍କଘର ଲଇକେରାକୁ ଯାଇ ଲେଖେଇ ଆଣିଥିଲି, ସେ ମଧ୍ୟ ସ୍ୱର୍ଗବାସୀ ହୋଇଗଲେ । ସେ ବହୁ ଆଶା କରିଥିଲେ ତାଙ୍କ ଜୀବଦ୍ଦଶାରେ ପୁସ୍ତକଟି ପ୍ରକାଶ ପାଇବ ବୋଲି । 'ହେଳାରେ ଭେଳା ବୁଡ଼ିଲା' ଭଳି ମୋର ବିଭିନ୍ନ ଅସୁବିଧାଜନିତ ଅବହେଳା ପାଇଁ ଏହା ସମ୍ଭବ ହୋଇନଥିଲା । ସେପାଇଁ ଆଜି ମୁଁ ଖୁବ୍ ଦୁଃଖିତ ।

କିନ୍ତୁ, ଏହି ଅବହେଳା ଯୋଗୁଁ ପରକ୍ଷଣରେ ଆଉ କିଛି ଲାଭ ମିଳିଥିଲା । ପଢ଼ିଆରୀ ବାବୁଙ୍କ ପ୍ରକାଶିତ ରଚନା ବିଷୟରେ ଖୋଜାଖୋଜି ମୋର ଜାରି ରହିଥିଲା । ଲେଖକବନ୍ଧୁ ଯେଉଁମାନେ ପୁରୁଣା ବା ସମକାଳୀନ ପତ୍ରପତ୍ରିକା ବିଷୟରେ କାର୍ଯ୍ୟ

କରୁଥିଲେ, ସେମାନଙ୍କ ସାହଚର୍ଯ୍ୟରେ କବିଙ୍କ କେତୋଟି ଲେଖା ମଧ୍ୟ ସଂଗ୍ରହ କରିଥିଲି । ବିଶିଷ୍ଟ ଗବେଷକ, ପ୍ରାବନ୍ଧିକ ଫଣୀନ୍ଦ୍ର ଭୂଷଣ ନନ୍ଦ ମହାଶୟଙ୍କୁ ଏହି ଅବସରେ ଆନ୍ତରିକ କୃତଜ୍ଞତା ଜଣାଇବି ପଢ଼ିଆରୀ ବାବୁଙ୍କ ରଚନା ସଂଗ୍ରହ ପାଇଁ ।

ତଥାପି ତାଙ୍କର ଆଉକିଛି ଅଜ୍ଞାତ ରଚନା ସମକାଳୀନ ପତ୍ରପତ୍ରିକା ପୃଷ୍ଠାରେ କୀଟଦ୍ରଷ୍ଟ ପ୍ରାୟ ରହିଯାଇଛି । ସେସବୁ ରଚନାକୁ କାଳଗର୍ଭରୁ ପୁନରୁଦ୍ଧାର କରିବା କଷ୍ଟସାଧ ହୋଇପଡ଼ିଛି । ଏହି ପୁରୁଣା କାର୍ଯ୍ୟଟିକୁ ତ୍ୱରାନ୍ୱିତ କରିବାପାଇଁ ପତ୍ର ଦ୍ୱାରା ତଥା ଟେଲିଫୋନ୍ ଯୋଗେ ବାରମ୍ବାର କବିପୁତ୍ର ଡାକ୍ତର ଦେବବ୍ରତ ପଢ଼ିଆରୀ, ଭଉଣୀ ବିଷ୍ଣୁପ୍ରିୟା ଏବଂ ତାଙ୍କ ଆତ୍ମୀୟ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ପୂଜ୍ୟ ପଞ୍ଚାନନ ପଲାଇ ମହୋଦୟ ଅନୁରୋଧ କରି ମୋତେ ବାରମ୍ବାର ସଚେତନ କରାଇଥିବାରୁ ତାଙ୍କଠାରେ ଆଜୀବନ ଋଣୀ ।

ଅବଶେଷରେ 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ'ର କବି ଶ୍ରୀ କାଳୀପଦ ପଣ୍ଡା ପୁସ୍ତକଟିର ମୁଦ୍ରଣକାର୍ଯ୍ୟ ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି । ଏହି ଅନାଲୋଚିତ, ଅନାଲୋକିତ ସାରସ୍ୱତପ୍ରତିଭା ସୃଷ୍ଟିସମ୍ପଦ ପ୍ରତି ପାଠକବର୍ଗ ଆକୃଷ୍ଟ ହୋଇ ପୁସ୍ତକଟିକୁ ସମାଦର କଲେ, ସମ୍ପାଦନା ଶ୍ରମ ସାର୍ଥକ ହେବ ବୋଲି ଜାଣିବି ।

ତା.୦୧.୦୪.୨୦୧୬ରିଖ
ସୁଏଲପୁର, ବାଲେଶ୍ୱର

ବିନୀତ
ଡ଼. ଅରବିନ୍ଦ ଗିରି

# ଅଭିମତ

ସ୍ୱର୍ଗତ ଜଗନ୍ନାଥ ପଡ଼ିଆରୀ ମୋର ଅନ୍ତରଙ୍ଗ ବନ୍ଧୁ । ସେ ୧୯୦୮ ମସିହାରେ ଗୋଲାଡ଼ିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଉକ୍ତ ଗ୍ରାମଟି ଭଦ୍ରକ ଜିଲା ଚାନ୍ଦବାଲି ବ୍ଲକ୍‌ର ବୈତରଣୀ ନଦୀକୂଳରେ ଅବସ୍ଥିତ । ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ବହୁ କଷ୍ଟରେ ମାଟ୍ରିକ୍ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । କମ୍ ପଢ଼ିଥିଲେ ମଧ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ବିଶେଷତଃ ଇଂରାଜୀ ଭାଷାରେ ତାଙ୍କର ବହୁତ ଜ୍ଞାନ ଥିଲା ।

ତାଙ୍କର ଏକ ପୁସ୍ତକ "ଜଗନ୍ନାଥ ପଡ଼ିଆରୀ ରଚନା ସମ୍ଭାର" ସୁପୁତ୍ର ଡାକ୍ତର ଦେବବ୍ରତ ପଡ଼ିଆରୀଙ୍କ ଦ୍ୱାରା ପ୍ରକାଶିତ ହେବାକୁ ଯାଉଛି । ସ୍ୱର୍ଣ୍ଣଚୂଡ଼ ମହାବିଦ୍ୟାଳୟର ଅବସରପ୍ରାପ୍ତ ପ୍ରାଧ୍ୟାପକ ଡକ୍ଟର ଅରବିନ୍ଦ ଗିରି ଲେଖାଗୁଡ଼ିକ ସଂଗ୍ରହ ଓ ସଂଶୋଧନ କରିଛନ୍ତି ଏବଂ 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ', ବାଲେଶ୍ୱର ଏହାର ଛପାଇବା ଦାୟିତ୍ୱ ନେଇଛି ।

ପାଣ୍ଡୁଲିପିଟି ପଢ଼ି ଏକ ଅଭିମତ ଦେବାକୁ ଡକ୍ଟର ଗିରି ମୋତେ ଅନୁରୋଧ କରିଛନ୍ତି । ତାଙ୍କ ଅନୁରୋଧ କ୍ରମେ ପାଣ୍ଡୁଲିପିଟିକୁ ଆମୂଳଚୂଳ ପଢ଼ିଲି । ଜଗନ୍ନାଥ ବାବୁ ଜଣେ ବିଶିଷ୍ଟ କବି ବା ଲେଖକ ହୋଇ ନ ଥିଲେ ହେଁ ତାଙ୍କର ଲେଖାଗୁଡ଼ିକ ଖୁବ୍ ଉଚ୍ଚକୋଟୀର ହୋଇଛି । ପ୍ରଖ୍ୟାତ କବି ଓ ଗାଳ୍ପିକମାନେ ତାଙ୍କ ଲେଖା ସମ୍ବନ୍ଧରେ ସୁଚିନ୍ତିତ ମତାମତ ଦେଇ ତାଙ୍କର ଭୂୟସୀ ପ୍ରଶଂସା କରିଛନ୍ତି । ୧୯୮୨ ମସିହା ପ୍ରଳୟଙ୍କରୀ ବାତ୍ୟାରେ ଲେଖାଗୁଡ଼ିକ ନଷ୍ଟ ହୋଇଯାଇଥିଲେ ହେଁ ଡକ୍ଟର ଗିରି ବହୁ ପରିଶ୍ରମ କରି ତନ୍ମଧ୍ୟରୁ କିଛି ଭଲ ଉଦ୍ଧାର କରିପାରିଛନ୍ତି । ଶିଳ୍ପୀ ଯେପରି ଏକ ମୃଣ୍ମୟ ମୂର୍ତ୍ତି ତିଆରିକରି ତାକୁ ଚକ୍ଷୁଦାନ ଦେଇ ଜୀବନ୍ତ ଭଳି କରିଦିଏ, ଠିକ୍ ସେହିଭଳି ଡକ୍ଟର ଗିରି ଲେଖାଗୁଡ଼ିକୁ 'କବିତା', 'ଗଳ୍ପ' ଓ 'ପ୍ରବନ୍ଧ' ତିନିଭାଗରେ ବିଭକ୍ତକରି କବିତା ଓ ଗଳ୍ପଗୁଡ଼ିକର ପୂର୍ବାଭାସ ଏଭଳି ଭାବରେ ଦେଇଛନ୍ତି ଯେ ସେଗୁଡ଼ିକ ମଧ ଜୀବନ୍ତ ଓ ହୃଦୟସ୍ପର୍ଶୀ ହୋଇପାରିଛି । ଏହାଦ୍ୱାରା ଡକ୍ଟର ଗିରିଙ୍କର ଉନ୍ନତ ସାହିତ୍ୟିକ

ପ୍ରତିଭାର ପରିଚୟ ମିଳିଛି । "ପଲ୍ଲୀ ବଧୂର ପତ୍ର", "ସନାତନ" ଓ ଚନ୍ଦବାଲି ବନ୍ଦର ଲେଖାଗୁଡ଼ିକ ପାଠକ ପାଠିକାମାନଙ୍କୁ ନିଶ୍ଚୟ ଆକର୍ଷଣ କରିବ । 'ଗୁଣ ଚିହ୍ନେ ଗୁଣିଆ, ସୁନା ଚିହ୍ନେ ବଣିଆ' ଉକ୍ତିଟି ଡକ୍ଟର ଗିରିଙ୍କ ପ୍ରତି ପ୍ରଯୁଜ୍ୟ, ଏଥିରେ ସନ୍ଦେହ ନାହିଁ । ପଢ଼ିଆରୀଙ୍କ ଘରକୁ ଯାଇ ଲେଖାଗୁଡ଼ିକୁ ଆଣିଛନ୍ତି ଏବଂ ପୁରୁଣା ପତ୍ରପତ୍ରିକାରୁ ଲେଖାଗୁଡ଼ିକ ସଂଗ୍ରହ କରିଛନ୍ତି ଏବଂ ଆବଶ୍ୟକ ସ୍ଥଳେ ସଂଶୋଧନ କରି ପୁସ୍ତକ ଆକାରରେ ପାଠକ ପାଠିକାମାନଙ୍କ ସମ୍ମୁଖରେ ଉପସ୍ଥାପନ କରିବାକୁ ଚେଷ୍ଟା କରିଛନ୍ତି । ଏଥିପାଇଁ ତାଙ୍କୁ ବହୁତ କଷ୍ଟ ମଧ୍ୟ ହୋଇଥିବ । ସେଥିପାଇଁ ମୁଁ ଗିରିବାବୁଙ୍କୁ ଧନ୍ୟବାଦ ଦେବା ସଙ୍ଗେସଙ୍ଗେ 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ' ଉକ୍ତ ପୁସ୍ତକଟିକୁ ଛପାଇବା ଦାୟିତ୍ୱ ନେଇଥିବାରୁ ଶ୍ରୀଯୁକ୍ତ କାଳୀପଦ ପଣ୍ଡାଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଉଛି । ସର୍ବୋପରି ପଢ଼ିଆରୀ ବାବୁଙ୍କ ପୁତ୍ର ଡାକ୍ତର ଦେବବ୍ରତ ପଢ଼ିଆରୀ ଓ ଝିଅ ଶ୍ରୀମତୀ ବିଷ୍ଣୁପ୍ରିୟା ପଢ଼ିଆରୀ ବାପାଙ୍କୁ ନିଜ ଅଞ୍ଚଳ ଓ ଓଡ଼ିଶାର ଶିକ୍ଷାବିତ୍‌ମାନଙ୍କ ନିକଟରେ ପରିଚିତ କରାଇବା ପାଇଁ ଯେଉଁ ପଦକ୍ଷେପ ନେଇଛନ୍ତି, ସେଥିପାଇଁ ସେମାନଙ୍କର ମଙ୍ଗଳକାମନା କରିବା ସଙ୍ଗେସଙ୍ଗେ ଭଗବାନଙ୍କ ନିକଟରେ ଦୀର୍ଘ ଜୀବନ ପ୍ରଦାନ ସକାଶେ ପ୍ରାର୍ଥନା କରୁଛି ।

ତା.୧୪.୦୫.୨୦୧୫

ମହାବିଷୁବ ସଂକ୍ରାନ୍ତି

ଶ୍ରୀ ପଞ୍ଚାନନ ପଲାଇ
ଅବସରପ୍ରାପ୍ତ ପ୍ରଧାନଶିକ୍ଷକ
ମତୋ ହାଇସ୍କୁଲ୍, ମତୋ
ଜିଲ୍ଲା - ଭଦ୍ରକ

# ପିତୃପ୍ରସଙ୍ଗ

ମୁଁ ହେଉଛି ମୋର ବାବାଙ୍କର ଶେଷସନ୍ତାନ ଓ ଏକମାତ୍ର ପୁଅ । ସେ ପିଲାଟିବେଳରୁ ମୋତେ ଖୁବ୍ ଭଲପାଉଥିଲେ ଏବଂ ତାଙ୍କର ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ଏହା ଅତୁଟ ଥିଲା । ତାଙ୍କର ଅନାବିଳ ସ୍ନେହ ଓ ଗଠନମୂଳକ ଶିକ୍ଷାର ପ୍ରେରଣା ମୋର ଛାତ୍ରଜୀବନକୁ ସର୍ବଦା ଅନୁପ୍ରାଣିତ କରିଥିଲା । ସେଥିଲାଗି ମୁଁ ଶିକ୍ଷାର୍ଜନ କ୍ଷେତ୍ରରେ କେବେ ମଧ୍ୟ ବିଫଳ ହୋଇନଥିଲି । ଉଦାହରଣସ୍ୱରୂପ - ସେ କହୁଥିଲେ ଇଂରାଜୀ ବାକ୍ୟଗଠନ କଲାବେଳେ ସର୍ବଦା ସରଳ ଓ ଛୋଟବାକ୍ୟ ଲେଖିବାକୁ । ତାଙ୍କ କଥାକୁ ମୁଁ ଏପର୍ଯ୍ୟନ୍ତ ବି ପାଳନ କରୁଛି । ଏହିପରି ଆହୁରି ଅନେକ କଥାସବୁ ଜୀବନରେ ମୁଁ ଅନୁସରଣ କରିଛି ।

ଜୀବନର ବହୁତ ଅଭାବ ଅସୁବିଧା ଓ ପ୍ରତିକୂଳ ପରିସ୍ଥିତିକୁ ସେ ମୁକାବିଲା କରିଛନ୍ତି ଓ କିପରି ଚଳିବାକୁ ହେବ ଆମକୁ ମଧ୍ୟ ଶିଖାଇଛନ୍ତି । ସେ କେବେ ନିଜପାଇଁ କିଛି ଚାହିଁ ନାହାନ୍ତି । ଏପରିକି ନିଜ ଦେହ ଅସୁସ୍ଥ ଅବସ୍ଥାରେ ମଧ୍ୟ ହୃଦୟ କଥା ପ୍ରକାଶ କରିନାହାନ୍ତି । ସମାଜ ପାଇଁ ଗଠନମୂଳକ କାର୍ଯ୍ୟ ଓ ଅନ୍ୟମାନଙ୍କ ପାଇଁ ସୁସ୍ଥ ଓ ସୁବିଧାମୂଳକ ପରିବେଶ ସୃଷ୍ଟି କରିବାରେ ସର୍ବଦା ବ୍ୟସ୍ତ ରହୁଥିଲେ । ଗରିବ ଓ ମେଧାବୀ ପିଲାମାନଙ୍କ ପାଇଁ ତାଙ୍କଦ୍ୱାର ସର୍ବଦା ଉନ୍ମୁକ୍ତ ଥିଲା । ତାଙ୍କର ଏହି ଉଦାର ଓ ପରୋପକାର ଚିନ୍ତାଧାରା ପାଇଁ ସେ ଏ ଅଞ୍ଚଳବାସୀଙ୍କ ହୃଦୟରେ ରହିଛନ୍ତି ।

ବିଭିନ୍ନ ଲେଖା ଓ ଅନୁବାଦରେ ସେ ନିପୁଣ ଥିଲେ । ପଢ଼ାପଢ଼ିରେ ମଧ୍ୟ ତାଙ୍କର ଗଭୀର ଆଗ୍ରହ ଥିଲା । ସେ କିନ୍ତୁ ତାଙ୍କର ଲେଖା ବିଷୟରେ କିଛି ମୋ ପାଖରେ ପ୍ରକାଶ କରିନଥିଲେ । ମୁଁ କିନ୍ତୁ ଓଡ଼ିଆ ଅଧ୍ୟାପକ ଅରବିନ୍ଦ ଗିରିଙ୍କ ପାଖରୁ ତାଙ୍କ ଲେଖାଲେଖି ବିଷୟରେ ଜାଣିଲା ବେଳକୁ ସେ ଇହଲୀଳା ସମ୍ବରଣ କରିସାରିଥିଲେ । ତଥାପି ତାଙ୍କ ନିଜ ହାତଲେଖାଗୁଡ଼ିକ ବହୁତ ସାବଧାନତାର ସହିତ ସଂଗ୍ରହ କରାଗଲା । ସେଗୁଡ଼ିକ ଭିତରୁ କିଛି ଭଲ ଓ ଅନେକ କିଛି ନଷ୍ଟ

ହୋଇଯାଇଥିଲା । ଏହି ଲେଖାଗୁଡ଼ିକୁ ଅରବିନ୍ଦ ଗିରି ବାବାଙ୍କ ପ୍ରିୟଛାତ୍ର ବିଶିଷ୍ଟ କବି ବିନୋଦବାବୁଙ୍କ ପ୍ରେରଣାରେ ପ୍ରକାଶ କରିବା ପାଇଁ ଉଦ୍ୟମ ଆରମ୍ଭକଲେ । ଏହି ପ୍ରଚେଷ୍ଟା ଯଦି ତାଙ୍କ ଦୀବଦ୍ଦଶାରେ ହୋଇଥାନ୍ତା, ତେବେ ଏହି ପୁସ୍ତକଟି ସର୍ବାଙ୍ଗ ସୁନ୍ଦର ହୋଇପାରିଥାନ୍ତା । ଯାହାହେଉ, ଭଗବାନଙ୍କ ଇଚ୍ଛାରେ ଦୀର୍ଘଦିନ ବ୍ୟବଧାନରେ ହେଲେ ମଧ୍ୟ ଆଜି ତାହା ପୁସ୍ତକ ଆକାରରେ ପ୍ରକାଶ ପାଇଲା ।

ବାବା ଓ ବୋଉଙ୍କର ଇଚ୍ଛା ଥିଲା ମୁଁ ତାଙ୍କ ପାଖରେ ସବୁବେଳେ ରହିବାପାଇଁ । ସେଥିପାଇଁ ସେମାନଙ୍କ କହିବା ଅନୁସାରେ ମୁଁ ଇଞ୍ଜିନିୟରିଂ ପାଠ୍ୟକ୍ରମ ଅଧାରୁ ଛାଡ଼ି ମେଡ଼ିକାଲ ପାଠପଢ଼ିଲି । ତେଣୁ ସେଇଆ ହେଲା । ପାଠପଢ଼ିବା ପରେ ନିକଟସ୍ଥ ସରକାରୀ ଡାକ୍ତରଖାନାରେ ମୋର ଚାକିରି ହେଲା ଏବଂ ବାବାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୁଁ ତାଙ୍କ ପାଖରେ ରହିପାରିଲି । ତାଙ୍କ ଦିଗ୍‌ଦର୍ଶନ ଏବଂ ଉପଦେଶ ପାଳନ କରିବା ଫଳରେ ମୁଁ ମୋର ଚାକିରି କ୍ଷେତ୍ରରେ ବେଶ୍ ପାରଦର୍ଶିତା ଲାଭ କରିପାରିଛି । ଯାହାଫଳରେ ମୁଁ ମାନସିକ ଶାନ୍ତି ପାଇପାରିଛି ଏବଂ ଭବିଷ୍ୟତ ଜୀବନ ମଧ୍ୟ ଠିକ୍ ହିସାବରେ କଟାଇ ପାରିବି ବୋଲି ମୋର ଆଶା ଓ ବିଶ୍ୱାସ ରହିଛି ।

ସେ ଜଣେ ସଚ୍ଚୋଟ, ସତ୍ୟନିଷ୍ଠ, କର୍ତ୍ତବ୍ୟପରାୟଣ, ସହନଶୀଳ, ନ୍ୟାୟପରାୟଣ ବ୍ୟକ୍ତି ଥିଲେ । ଏଥିଲାଗି ସେ ସର୍ବଜନ ଆଦୃତ ହୋଇଥିଲେ ଏବଂ ଲୋକମାନଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ । ତାଙ୍କର କର୍ମମୟ ଜୀବନ ଜଞ୍ଜାଳମୟ ଥିଲା । ତଥାପି ସେ ତାଙ୍କର ନୀତିରୁ ବିଚ୍ୟୁତ ହୋଇ ନଥିଲେ । କିନ୍ତୁ ତାଙ୍କର ଶେଷଜୀବନ ବେଶିଦିନ ନ ହେଲେ ବି ଅଳ୍ପଦିନ କଷ୍ଟରେ କଟିଥିଲା । ସେ କୌଣସି ନିଶାଦ୍ରବ୍ୟରେ ଅଭ୍ୟସ୍ତ ନ ଥିଲେ କିନ୍ତୁ ତାଙ୍କ ଛାତିରେ ପାଣି ଜମି ଯିବାରୁ ସେ ବହୁତ କଷ୍ଟ ପାଇଥିଲେ । କଟକ ମେଡ଼ିକାଲ୍‌ରେ ଭର୍ତ୍ତି ହୋଇ କିଛିଦିନ ରହିବା ପରେ ଘରକୁ ଫେରିଲେ । ସବୁ ପରୀକ୍ଷା ପରେ ମଧ୍ୟ ସଠିକ୍ ରୋଗ ନିରୂପଣ ହୋଇପାରିଲା ନାହିଁ । ତେବେ ଫୁସ୍‌ଫୁସ୍ କର୍କଟ ରୋଗରେ ପୀଡ଼ିତ ବୋଲି କୁହାଗଲା । ପରିଶେଷରେ ସେଥିରେ ସେ ପ୍ରାଣତ୍ୟାଗ କଲେ । ତାଙ୍କରି ନୀତି, ଆଦର୍ଶକୁ ଅନୁସରଣ କରି ମୋର ଆଗାମୀ ଦିନଗୁଡ଼ିକୁ କଟାଇବା ପାଇଁ ଚେଷ୍ଟା କରୁଅଛି । ଆଶା ତାଙ୍କର ଅଦୃଶ୍ୟ ଆଶୀର୍ବାଦ ମୋର ଜୀବନକୁ ସୁନିୟନ୍ତ୍ରିତ ଓ ଅନୁପ୍ରାଣିତ କରିବ ।

ଡା.ଦେବବ୍ରତ ପଢ଼ିଆରୀ
ସିନିଅର ମେଡ଼ିସିନ୍ ସ୍ପେସିଆଲିଷ୍ଟ
ଚାନ୍ଦବାଲି, ଭଦ୍ରକ

# ସୂଚୀପତ୍ର



## କବିତା

## ଗଳ୍ପ



## ପ୍ରବନ୍ଧ

## ପରିଶିଷ୍ଟ

# ଶ୍ରଦ୍ଧାଞ୍ଜଳି

୧୯୨୮ ମସିହାରେ ସୁନ୍ଦରଗଡ଼ ବାଳକ ଇଂରାଜୀ ବିଦ୍ୟାଳୟର (Boys English School) ପଞ୍ଚମ ଶ୍ରେଣୀରେ ଭର୍ତ୍ତି ହେଲି । ସେ ସ୍କୁଲ୍‌ର ସମସ୍ତ ଶିକ୍ଷକ ତାଲିମପ୍ରାପ୍ତ ଥିଲେ । ସେତେବେଳେ ଉକ୍ତ ସ୍କୁଲ୍‌ର ହେଡମାଷ୍ଟର ଥିଲେ ବରାହ ଚରଣ ମହାନ୍ତି ବି.ଏସ୍‌ସି. । ଏହାଙ୍କ ଘର କଟକ ଜିଲ୍ଲା ନିଆଳି ଅଞ୍ଚଳରେ । ହେଡ୍‌ପଣ୍ଡିତ ଥିଲେ ପୁରୀର ଦୀନବନ୍ଧୁ ମହାପାତ୍ର କାବ୍ୟତୀର୍ଥ । ସ୍କୁଲ୍‌ର ମୋଟ୍ ଚାରିଜଣ ଶିକ୍ଷକ ଓ ଜଣେ ପଣ୍ଡିତ । ପ୍ରଚାରକ ଅନନ୍ତ ମିଶ୍ର ୧୯୨୯ ମସିହାରେ ଆସି ଆମ ସହିତ ହଷ୍ଟେଲ୍‌ରେ ରହିଲେ । ସେ ଆମକୁ ବ୍ରହ୍ମଚର୍ଯ୍ୟ ଶିକ୍ଷା ଦେଉଥିଲେ । ଭୋରୁ ଉଠିବା, ବ୍ୟାୟାମ କରିବା, ପ୍ରାର୍ଥନା କରିବା ଆଦି ଗୋପବନ୍ଧୁଙ୍କ ନୀତିରେ ଆମକୁ ଶିକ୍ଷା ଦେଉଥିଲେ । ସେହିବର୍ଷ ସମ୍ଭବତଃ ଗୋପବନ୍ଧୁଙ୍କ ବିୟୋଗ ଘଟିଥିଲା । ଅନନ୍ତ ମିଶ୍ର କଟକ ଫେରି ସମାଜ ପକ୍ଷରୁ ତାଙ୍କ ଶ୍ରାଦ୍ଧଦିବସରେ ଗୋପବନ୍ଧୁଙ୍କ ଫଟୋ ଉଠାଇଥିଲେ । ଅନନ୍ତବାବୁ ହରେକୃଷ୍ଣ ମହତାବଙ୍କ ଲିଖିତ 'ପଲାସୀ ଅବସାନେ' ବହିଟି ତାଙ୍କର ଅତିପ୍ରିୟ ଥିବାରୁ ମୋତେ ଉପହାର ଦେଇଥିଲେ । ଉକ୍ତ ବହିଟିର କଭର ଓ ଭିତରପୃଷ୍ଠା ଚିରା ହୋଇଥିଲା ଏବଂ ନିର୍ଦ୍ଦେଶ ଥିଲା ଲୁଚେଇ ପଢ଼ିବାକୁ । ବହିଟି ପଢ଼ି ମହତାବବାବୁଙ୍କୁ ଏକ ପତ୍ର ଲେଖିଥିଲି । ମୋ ଚିଠିଟି ପାଇ ସେ ଖୁସିହୋଇ ଆଶୀର୍ବାଦସୂଚକ ଏକ ପତ୍ର ମଧ୍ୟ ଦେଇଥିଲେ । ସେତେବେଳେ ମହତାବବାବୁ କଟକର ସ୍ୱରାଜ ଆଶ୍ରମରେ ରହୁଥିଲେ ।

ଗାଁରେ କିଶୋର ଜୀବନରୁ ମୁଁ ବୈଷ୍ଣବ ପାଣିଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲି । ମୋର ବଡ଼ବାପା ପଦ୍ମଲୋଚନ ଗୌନ୍ତିଆ ଅଲେଖଧର୍ମରେ ଦୀକ୍ଷିତ ଥିଲେ । ସେ ଗ୍ରାମରେ ଚାରିଟି ଟୁଙ୍ଗି ମଧ୍ୟ ଗଢ଼ିଥିଲେ । ସେହି ଟୁଙ୍ଗିରେ ଚଉଷଠିଜଣ ବାବା

ବର୍ଷାକାଳରେ ରହୁଥିଲେ । ମୋର ଆଉଜଣେ ବଡ଼ବାପା ଦିବ୍ୟ ସିଂହ ଗୌନ୍ତିଆ ନାଟ୍ୟଦଳର ଗୁରୁ ଥିଲେ । ବ୍ରହ୍ମପୁରରୁ ନୀଳମଣି ସାହୁ ନାମକ ଜଣେ ନାଟ୍ୟ ଶିକ୍ଷାଗୁରୁଙ୍କୁ ଆଣି ମଧ୍ୟ ରଖିଥିଲେ । ବଡ଼ବାପା 'ମାଳଶ୍ରୀ' ନାମକ ଏକ ବହି ରଚନା କରିଥିଲେ । ମୋର ମାଆ କସ୍ତୁରୀଦେବୀ ମଧ୍ୟ କୃଷ୍ଣଙ୍କର ବ୍ୟାଘ୍ରବେଶ ନେଇ ଆଠଦିନରେ 'ଫୁଲତୋଳା' ନାମକ ବହିଟି ଲେଖିଥିଲେ । ଆମଘରେ ଅଲେଖଧର୍ମର ପରମ୍ପରା ଥିବା ହେତୁ ଭୀମଭୋଇ ମଧ୍ୟ ଆମ ଘରକୁ ଆସିଥିଲେ । ସେତେବେଳେ ସେ ଅନ୍ଧ ନଥିଲେ ।

ଏହି ପାରିପାର୍ଶ୍ୱିକତା ମୋର କବି ହେବା ଜୀବନକୁ ବହୁଭାବରେ ପ୍ରଭାବିତ କରିଥିଲା । ମୁଁ ବାର-ତେରବର୍ଷ ବୟସରେ 'ବଙ୍ଗଳାଶ୍ରୀ', 'ଚୋଖି'ରାଗରେ କବିତା ଲେଖିଥିଲି । କିନ୍ତୁ ଆଧୁନିକ କବିତା କ'ଣ ଆଦୌ ଜାଣି ନଥିଲି । ଚୋଖି ରାଗରେ ରଚିତ 'ଗଣେଶବନ୍ଦନା' ମୋର ପ୍ରଥମ କବିତା । ସେତେବେଳେ 'ନବୀନ' ସାହିତ୍ୟ ପତ୍ରିକା ସାପ୍ତାହିକ ରୂପରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିଲା । ଉକ୍ତ ପତ୍ରିକାର ସମ୍ପାଦକ ଥିଲେ କୃପାସିନ୍ଧୁ ପଟ୍ଟଦେବ । ଉକ୍ତ ପତ୍ରିକାରେ କୁନ୍ତଳା କୁମାରୀ ସାବତ୍, ସଚ୍ଚିଦାନନ୍ଦ ରାଉତରାୟଙ୍କ ଲେଖା ପ୍ରକାଶ ପାଉଥିଲା । ଉକ୍ତ ସ୍କୁଲ୍‌ରେ ପଢୁଥିବା ବେଳେ ଏହି ପତ୍ରିକା ପଢ଼ିବାର ସୁଯୋଗ ପାଇଥିଲି । ସେତେବେଳେ କୁନ୍ତଳା କୁମାରୀଙ୍କ ଭଉଣୀ ସୁନ୍ଦରଗଡ଼ରେ ଡାକ୍ତର ଥିଲେ । ତାଙ୍କ ପୁଅ ମୋର ସାଙ୍ଗ ଥିଲା । ତା'ଠାରୁ କୁନ୍ତଳା କୁମାରୀଙ୍କ 'ସ୍ଫୁଲିଙ୍ଗ' କବିତା ବହିଟି ଆଣି ପଢ଼ିବାର ସୁଯୋଗ ପାଇଲି । କିନ୍ତୁ ଆଧୁନିକ କବିତା ବିଷୟରେ କିଛି ଜାଣିପାରୁ ନଥିଲି କି ବୁଝିପାରୁ ନଥିଲି ।

ସେତେବେଳେ ଢେଙ୍କାନାଳରୁ ବସନ୍ତ କୁମାର ରାଉତ ଇଂରାଜୀ ଶିକ୍ଷକ ଆସି ଆମ ସ୍କୁଲ୍‌ରେ ଯୋଗଦେଲେ । କବି ମାୟାଧର ମାନସିଂହଙ୍କର ସେ କ୍ଲାସ୍‌ମେଟ୍ ଥିଲେ । ସେ ଆମ ହଷ୍ଟେଲ୍‌ରେ ସୁପରିନ୍‌ଟେଣ୍ଡେଣ୍ଟ ହେଲେ । ସେ 'ଧୂପ' ଓ 'ସବୁଜ କବିତା' ଆଣିଥିଲେ । ତାଙ୍କଠାରୁ ବହିସବୁ ଆଣି ପଢ଼ିଲି, କିନ୍ତୁ ଛନ୍ଦସବୁ ବୁଝିପାରିଲି ନାହିଁ । 'ନିହାରକଣିକା' ମୋ ରଚିତ ପ୍ରଥମ ଆଧୁନିକ କବିତା । କୁନ୍ତଳା କୁମାରୀ ସାବତଙ୍କ ପ୍ରଭାବରେ କବିତାଟି ରଚିତ ହୋଇଥିଲା । ଉକ୍ତ କବିତାଟି 'ନବୀନ' ପତ୍ରିକାରେ ପ୍ରକାଶ ପାଇଥିଲା । ଏଥିରେ ମୁଁ ଛନ୍ଦ ପ୍ରୟୋଗର ଭାରସାମ୍ୟ ରକ୍ଷା କରିପାରିନଥିଲି ।

ଏହି ସମୟରେ ଜଗନ୍ନାଥ ପଢ଼ିଆରୀ ଇଂରାଜୀ ଶିକ୍ଷକ ଭାବରେ ଆସି ଜାନୁଆରୀ ମାସରେ ଉକ୍ତ ସ୍କୁଲ୍‌ରେ ଯୋଗଦେଲେ । ତାଙ୍କର ଏଠାକୁ ଆସିବା ଏବଂ ଶିକ୍ଷକତା କରିବାର ମୁଖ୍ୟ କାରଣ ଥିଲା, ସେ ସୁନ୍ଦରଗଡ଼ରୁ ବିବାହ କରିଥିଲେ । ସୁନ୍ଦରଗଡ଼ର ରାଜବଂଶୀୟ ପିଲାମାନେ (ସମ୍ଭବତଃ ବଦ୍ରିନାରାୟଣ ଶେଖର ଦେଓ, ଚନ୍ଦ୍ର ଶେଖର ଦେଓ) ତାଙ୍କ ପାଖରେ ଟିଉସନ୍ ପଢୁଥିଲେ । ସେମାନଙ୍କ ସହିତ ମୁଁ ମଧ୍ୟ ସାର୍‌ଙ୍କ ପାଖରେ ଟିଉସନ୍ ପଢୁଥିଲି ଏବଂ ସାଙ୍ଗହୋଇ ଏକା ହଷ୍ଟେଲ୍‌ରେ ରହୁଥିଲୁ । ଏହା ପୂର୍ବରୁ ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ପାଦିତ 'ସହକାର' ପତ୍ରିକାରୁ ଜଗନ୍ନାଥବାବୁଙ୍କର 'ଷୋଡ଼ଶୀ' ନାମକ ଏକ କବିତା ମଧ୍ୟ ପଢ଼ିଥିଲି । ଉକ୍ତ କବିତାର ସେ ଲାଇନ୍‌ଟି ହେଉଛି -

"ଲୋଟଣି ମାରାର ପଛେ ଚଞ୍ଚଳ ଚରଣେ
ଛୁଟ ଯେବେ ଅଞ୍ଚଳ ଉଡ଼ିବୁଲେ ପବନେ ।"

ଏହି ରୂପକଳ୍ପ ଏତେ ମୋତେ ମୁଗ୍ଧ କରିଥିଲା, ସେ ଆସିବା ଆଗରୁ ମୁଁ ତାଙ୍କୁ ଭଲଭାବରେ ଜାଣିଥିଲି । ତା'ପରେ 'ସହକାର ନୂତନ ପ୍ରସ୍ତ' ବାଳକୃଷ୍ଣ କର ହାତକୁ ନେଲେ । ଏହାର ପ୍ରଚାର ଓ ପ୍ରସାର ପାଇଁ ବଳକୃଷ୍ଣବାବୁ ସୁନ୍ଦରଗଡ଼ ଆସିଲେ । ସେ ପଢ଼ିଆରୀସାର୍‌ଙ୍କୁ ଭଲଭାବରେ ଜାଣିଥିଲେ । ପଢ଼ିଆରୀସାର୍ ବାଳକୃଷ୍ଣବାବୁଙ୍କ ସହିତ ମୋର ପରିଚୟ କରାଇ ଦେଲେ । ମୁଁ ଯେ 'ନବୀନ' ପତ୍ରିକାରେ ଲେଖାଲେଖି କରେ ସାର୍ ଜାଣି ଖୁବ୍ ଖୁସି ହେଲେ । ପରେ 'ନବୀନ' ପତ୍ରିକାରେ ପ୍ରକାଶିତ କବିତାସବୁକୁ ଦେଖି ସାର୍ ଆନନ୍ଦରେ ମୋତେ କୁଣ୍ଢାଇ ପକାଇଲେ ଏବଂ ଆଶୀର୍ବାଦ କରି କହିଲେ, 'ତୁ ବଡ଼ ହେଲେ ବଡ଼ କବି ହେବୁ ।" ସେହି ଦିନଠାରୁ ସେ ମୋତେ ଆଧୁନିକ କବିତାର ମାତ୍ରାବୃତ୍ତ ଛନ୍ଦ ବିଷୟରେ ବୁଝାଇଥିଲେ । ରବୀନ୍ଦ୍ରନାଥ ମଧ୍ୟ ଏହି ଛନ୍ଦଟି ବ୍ୟବହାର କରିଥିଲେ । ସେ ମଧ୍ୟ ଏହି ଛନ୍ଦର ଆବିଷ୍କାରକ ଥିଲେ । ଓଡ଼ିଆ ସାହିତ୍ୟରେ ସବୁଜ କବିମାନେ ମଧ୍ୟ ଠିକ୍‌ଭାବରେ ଏହି ଛନ୍ଦର ପ୍ରୟୋଗ କରିନଥିଲେ । କିନ୍ତୁ, ପଢ଼ିଆରୀସାର୍ ଏହି ମାତ୍ରା ବୃତ୍ତଛନ୍ଦର ଯେଉଁ ନିୟମଟି କହିଥିଲେ, ତାହା ହେଉଛି - "ବ୍ୟଞ୍ଜନବର୍ଣ୍ଣ ଏବଂ ଅନୁସାର ଓ ବିସର୍ଗଯୁକ୍ତ ବର୍ଣ୍ଣର ପୂର୍ବବର୍ତ୍ତୀ ବର୍ଣ୍ଣଟି ଦ୍ୱିମାତ୍ରିକ ହୁଏ ।"

ଯଥା - ଲୋଟଣି ପାରାର ପଛେ ଚଞ୍ଚଳ ଚରଣେ (ଅକ୍ଷର ୮+୬)
ଛୁଟ ଯେବେ ଅଞ୍ଚଳ ଉଡ଼ିବୁଲେ ପବନେ । (ଅକ୍ଷର - ୭+୭)

ଏହା ଅକ୍ଷର ମାତ୍ରାରେ ସମାନ ହେଲାନାହିଁ । ଏଠାରେ ପ୍ରତ୍ୟେକ ସ୍ୱରବର୍ଣ୍ଣ ଏକଏକ ମାତ୍ରା ଏବଂ ବ୍ୟଞ୍ଜନବର୍ଣ୍ଣ ଦୁଇମାତ୍ରା । ତେଣୁ ମାତ୍ରା ଦିଗରୁ ଗଣିଲେ ଉଭୟ ପଦର ମାତ୍ରା ଠିକ୍‌ଅଛି କିନ୍ତୁ ଅକ୍ଷର ଦିଗରୁ ତାହା ଠିକ୍ ନାହିଁ । ତା'ପରେ ସେ କହିଥିଲେ ସଂସ୍କୃତରେ ଦୀର୍ଘ ସ୍ୱରବର୍ଣ୍ଣ ଆ, ଇ, ଉ ଏସବୁ ଦୁଇମାତ୍ରା କିନ୍ତୁ ଓଡ଼ିଆରେ ଏସବୁ ମାତ୍ରାବୃତ୍ତ ବ୍ୟବହାର ହୁଏନାହିଁ । 'ଜନଗଣମନ' ଜାତୀୟ ସଙ୍ଗୀତଟି ହେଉଛି ସଂସ୍କୃତ ଗୁରୁଲଘୁ ଛନ୍ଦରେ ରଚିତ । ଆଧୁନିକ କବି ପଢ଼ିଆରୀସାର୍ ଗୁରୁଲଘୁ ଛନ୍ଦ ବ୍ୟବହାର କରିନାହାନ୍ତି । ଇଂରାଜୀ କବିତାର ଛନ୍ଦ ବିଷୟରେ ମଧ୍ୟ ପଢ଼ିଆରୀସାର୍ ମୋତେ ଧାରଣା ଦେଇଥିଲେ । ଆଧୁନିକ କବିତାର ଛନ୍ଦକୁ ମୁଁ ପ୍ରଥମେ ଭାଙ୍ଗି ଦେଇଥିଲି । ପରେ ତାଙ୍କରି ପରାମର୍ଶ ଅନୁଯାୟୀ ସଂଶୋଧନ କରିଥିଲି ।

'ସହକାର' ନବପ୍ରସ୍ତ ପ୍ରଥମ ସଂଖ୍ୟାରେ ପଢ଼ିଆରୀସାର୍‌ଙ୍କ 'ରୋଜେଣା' ନାମକ ଏକ ଅନୁବାଦ ଗଳ୍ପଟି ପ୍ରକାଶ ପାଇଥିଲା । ମୁଁ ଏହା ଦେଖି ଖୁବ୍ ହତାସ ହୋଇପଡ଼ିଥିଲି । କାରଣ ମୁଁ ତାଙ୍କଠାରୁ ଭଲ କବିତା ପ୍ରକାଶ ହେବା ଆଶା କରିଥିଲି । ପରେ ଜାଣିଲି ସାର୍ ଉଭୟ କବିତା ଓ ଗଳ୍ପ ଲେଖୁଥିଲେ ବୋଲି । ସାର୍‌ଙ୍କ ବିଷୟରେ ମୋ ମନରେ ସୃଷ୍ଟି ହୋଇଥିବା ଭୁଲ୍ ଧାରଣା ଦୂରହେଲା । ପୂଜାଛୁଟିରେ ସାର୍ ଘରକୁ ଯାଇ ଆଉ ଫେରିନଥିଲେ । ଛୁଟି ଖୋଲିଲା ପରେ ସ୍କୁଲ୍‌କୁ ଯାଇ ଦେଖିଲି ସେ ବ୍ଲାକ୍‌ବୋର୍ଡ଼ରେ 'ବିଦାୟ' ଶୀର୍ଷକ ଗୋଟିଏ ପଦ କବିତାଟି ଲେଖିଦେଇଥିଲେ । ତାହା ପଢ଼ି ଖୁବ୍ କାନ୍ଦିଲି । କିନ୍ତୁ ସାର୍ ଘରକୁଯାଇ କର୍ମକ୍ଷେତ୍ରକୁ ଆଉ ଫେରିନଥିଲେ ।

୧୯୩୩ ମସିହାରେ ମୋର ନୂଆକବିତା 'ଅଶ୍ରୁର ଅର୍ଘ୍ୟ' ସହକାର ନବପ୍ରସ୍ତ ତୃତୀୟ ସଂଖ୍ୟାରେ ପ୍ରକାଶ ପାଇଥିଲା । କବି ରାଧାମୋହନ ଗଡ଼ନାୟକ ଉକ୍ତ କବିତାର ଏକ ଦୀର୍ଘ ସମାଲୋଚନା 'ନବୀନ' ପତ୍ରିକାରେ ପ୍ରକାଶ କରିଥିଲେ । ଅର୍ଥାତ୍ ଜଣେ କବିରୂପେ ସେତେବେଳେ ସହକାର ପତ୍ରିକାର ବଡ଼ବଡ଼ କବିମାନଙ୍କ ସହିତ ମୁଁ ମଧ୍ୟ ସ୍ୱୀକୃତି ପାଇଥିଲି । ସେତେବେଳେ 'ସହକାର'ରେ ମାୟାଧର ମାନସିଂହ, କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ଅନ୍ନଦାଶଙ୍କର

ରାୟ, ଶରତଚନ୍ଦ୍ର ମୁଖାର୍ଜୀ, ହରିଶ୍ଚନ୍ଦ୍ର ବଡ଼ାଲ, ସରଳାଦେବୀ, ବିଶିଷ୍ଟ ଲେଖକ ଲେଖିକାମାନେ ଲେଖାଲେଖି କରୁଥିଲେ ।

ସେତେବେଳେ ଇଂଲିସ୍ କବିତା ମାଧ୍ୟମରେ ସଚ୍ଚିରାଉତରାୟଙ୍କ ସହିତ ମୋର ମଧ୍ୟ ପରିଚୟ ହୋଇସାରିଥିଲା । କାରଣ ଦିଲ୍ଲୀରୁ ଉମା ନେହେରୁଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିବା Chilzdren's News ପତ୍ରିକାରେ ସଚ୍ଚିରାଉତରାୟଙ୍କ My Mother Land ଏବଂ ମୋର "The Girl and Cuckoo" କବିତା ଏକତ୍ର ପ୍ରକାଶିତ ହୋଇଥିଲା । ସେହି ପତ୍ରିକାରୁ ମୁଁ ସଚ୍ଚିରାଉତରାୟଙ୍କ ଠିକଣା ସଂଗ୍ରହକରି ତାଙ୍କ ସହିତ ପତ୍ରାଳାପ କଲି । ଫଳରେ ପରସ୍ପର ମଧ୍ୟରେ ବନ୍ଧୁତା ସ୍ଥାପନ ହୋଇଥିଲା । ଏହି ସମ୍ପର୍କ ବିଷୟଟି କାବ୍ୟିକ ରୂପରେ ସଚ୍ଚିରାଉତରାୟ ତାଙ୍କ 'ଭାନୁମତୀର ଦେଶେ' କବିତା ପୁସ୍ତକରେ ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି ।

୧୯୫୩ ମସିହାରେ ମୁଁ ରାଜକନିକା ଯାଇଥିବା ଅବସରରେ ଗନ୍ଧବାଲିରେ ଓହ୍ଲାଇ ପଡ଼ିଆରୀସାର୍‌ଙ୍କୁ ସାକ୍ଷାତ କରିବାକୁ ଚେଷ୍ଟା କରିଥିଲି । କିନ୍ତୁ ତାଙ୍କ ସହିତ ମୋର ଭେଟ ହୋଇପାରିନଥିଲା । ଏହା ମଧ୍ୟ ମୋ ପାଇଁ ଖୁବ୍ ଦୁଃଖଦାୟକ ଥିଲା । ୧୯୬୮ ମସିହାରେ ଯେତେବେଳେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସମ୍ପାଦକ ହେଲି, ସାର୍‌ଙ୍କୁ ଉପାୟନ ଦେବା କଥା ମନେକରି ତାଙ୍କୁ ପତ୍ର ଲେଖିଲି । ସେ ଚିଠିପାଇ ଆସି ମୋତେ ଅଫିସ୍‌ରେ ଦେଖା କରିଥିଲେ । କିନ୍ତୁ, ଯେତେବେଳେ ଜାଣିଲି, ତାଙ୍କର ପ୍ରକାଶିତ ପୁସ୍ତକ କିଛି ନାହିଁ ବୋଲି, ତାଙ୍କୁ ଆଉ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ବୟୋଜ୍ୟେଷ୍ଠ ସାରସ୍ୱତ ସାଧକ ଭାବରେ ଉପାୟନ (ସମ୍ମାନ) ଦେଇପାରିଲି ନାହିଁ । ଅଥଚ ବାଳକୃଷ୍ଣ କର, ଶରତଚନ୍ଦ୍ର ଭଞ୍ଜଦେଓ ଇତ୍ୟାଦି ମୋ ପୂର୍ବ ବୟୋଜ୍ୟେଷ୍ଠ କବିମାନଙ୍କୁ ଉପାୟନ ଦେଇପାରିଥିଲି । କିନ୍ତୁ ମୋ ମନ ମଧ୍ୟରେ ବିରାଟ ଦୁଃଖ ରହିଗଲା ଯେ, ମୋର ପ୍ରଥମ କାବ୍ୟଗୁରୁଙ୍କୁ ଏଭଳି ସମ୍ମାନ ଟିକକ ଦେଇପାରିଲି ନାହିଁ । ତାଙ୍କର ସ୍ୱାସ୍ଥ୍ୟ ସେତେବେଳେ ଭଲଥିଲା ତା'ପରେ ତାଙ୍କ ସହିତ ଆଉ ସାକ୍ଷାତ୍ ଘଟି ନଥିଲା । କିନ୍ତୁ ଗନ୍ଧବାଲି ଅଞ୍ଚଳର ଲୋକଙ୍କ ସହିତ ସାକ୍ଷାତ୍ ହେଲେ ତାଙ୍କ କଥା ପଚାରି ବୁଝୁଥିଲି । କଦବା କେମିତି ପତ୍ରାଳାପ ଘଟୁଥିଲା । ପରେ ତାଙ୍କର ଦେହାନ୍ତ ଖବର ମୋତେ ଦାରୁଣ ଆଘାତ ଦେଇଥିଲା । ମୁଁ ମାନସିକ ଭାବରେ ଜଣେ ଅପରାଧୀ ଭଳି ଭାଙ୍ଗି ପଡ଼ିଥିଲି ।

ତା'ପରେ ଡ.ଅରବିନ୍ଦ ଗିରିଙ୍କ ସହିତ ମୋର ସାକ୍ଷାତ୍ ହେଲା । ସେ ତାଙ୍କର ଲେଖାସବୁ ସଂଗ୍ରହ କରୁଥିବା କଥା ଶୁଣି ଖୁବ୍ ଖୁସିହେଲି । ମୋ ଗୁରୁଦେବଙ୍କ ଏହି କାର୍ଯ୍ୟ କରିବାକୁ ତାଙ୍କୁ ଅନେକ ଉତ୍ସାହ ଓ ପ୍ରେରଣା ଦେଇଥିଲି । ଆଜି ମୁଁ ଯଦି କିଞ୍ଚିତ୍ କବି ଜୀବନର ସାର୍ଥକତା ଅର୍ଜନ କରିପାରିଛି, ଏହା ତାଙ୍କର ଆଶୀର୍ବାଦ ଓ ପ୍ରେରଣାର ଫଳ ସ୍ୱରୂପ । ସେ ଯେ କାହିଁକି ପରବର୍ତ୍ତୀକାଳରେ ଆଉ ଲେଖାଲେଖି କଲେନାହିଁ, ତାହା ଜାଣିପାରିଲି ନାହିଁ । ଅଥଚ ମାୟାଧର ମାନସିଂହଙ୍କ କବି ପ୍ରତିଭାକୁ ଅତିକ୍ରମ କଲାଭଳି ତାଙ୍କର ପ୍ରତିଭା ଥିଲା ।

ଆଜି (ଡ.ଗିରି)ସୁଦୂର ବାଲେଶ୍ୱରରୁ ବହୁ କଷ୍ଟସ୍ୱୀକାର କରି ଏଠାକୁ ଆସି ମୋତେ ସାକ୍ଷାତ୍ କରିନଥିଲେ, ହୁଏତ ମୁଁ ମୋର କୈଶୋର ଜୀବନର କାବ୍ୟଗୁରୁଙ୍କ ପ୍ରତି ଦୁଇପଦ ହୃଦୟଖୋଲା ମନୋଭାବ ପ୍ରକାଶକରି ତାଙ୍କପ୍ରତି ସାମାନ୍ୟ କର୍ତ୍ତବ୍ୟ ସମ୍ପାଦନ କରିପାରି ନଥାନ୍ତି । ତାଙ୍କ ଗ୍ରନ୍ଥାବଳୀ ପ୍ରକାଶ ପାଇଁ (ଡ.ଗିରି) ପ୍ରଚେଷ୍ଟା ଓ ତାଙ୍କ ସୁଯୋଗ୍ୟପୁତ୍ର ଓ କନ୍ୟାଙ୍କ ସାହାଯ୍ୟ ଓ ସହାନୁଭୂତି ମୋ ପାଇଁ ଖୁବ୍ ଆନନ୍ଦର ବିଷୟ ।

ଆଜିର ଏହି ରଥଯାତ୍ରା ଭଳି ପବିତ୍ର ଦିବସରେ ମୋର କେଇଟୋପା ଅଶ୍ରୁତର୍ପଣ ହିଁ ତାଙ୍କପ୍ରତି ମୋ ହୃଦୟର ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ।

ଗ୍ରାମ / ପୋ. - ସାହସପୁର
ଭାୟା - ଲଇକେରା — *ବିନୋଦ ଚନ୍ଦ୍ର ନାୟକ*
ଜିଲ୍ଲା - ଝାରସୁଗୁଡ଼ା — ତା.୧୨.୦୭.୨୦୦୨ମସିହା, ରବିବାର
ପିନ୍ - ୭୬୮୨୧୫




ବି.ଦ୍ର. : ଜଗନ୍ନାଥ ବାବୁ ତାଙ୍କ କୌଳିକ ସାଙ୍ଗିଆ 'ପଢ଼ିଆରୀ' ଲେଖୁଥିଲେ ।
ମାତ୍ର ତାଙ୍କ ପୁଅ 'ପଢ଼ିହାରୀ' ଲେଖନ୍ତି ।

# ଜୀବନ କୁସୁମ

ସ୍ୱର୍ଗତ ଜଗନ୍ନାଥ ପଡ଼ିଆରୀ ୧୯୦୮ ମସିହା ଜାନୁଆରୀ ମାସ ୬ ତାରିଖରେ ଚାନ୍ଦବାଲି ବନ୍ଦର ସନ୍ନିକଟବର୍ତ୍ତୀ ଗୋଲାଡ଼ିଆ ଗ୍ରାମରେ ପିତା କୃପାସିନ୍ଧୁ ଓ ମାତା ସରସ୍ୱତୀ ଦେବୀଙ୍କ ପ୍ରଥମ ସନ୍ତାନ ଭାବରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ବାଲ୍ୟଜୀବନ ଖୁବ୍ ଆନନ୍ଦ ଓ ଉଲ୍ଲାସରେ କଟିଥିଲା । ବୈତରଣୀ ନଦୀର ରୂପଶଯ୍ୟା, ନଦୀପଠାରେ ହଂସ ହଂସରାଳିମାନଙ୍କ ମଧୁର କଳରବଧ୍ୱନି, ନଦୀ ଆରପାରି ଅନତିଦୂର କନିକା ରାଜବାଟୀ ରାସ୍ତାପାର୍ଶ୍ୱସ୍ଥ ନାରିକେଳ ବୃକ୍ଷରାଜିର ସବୁଜ ଶ୍ରୀ ଶୋଭା, ସକାଳ ଓ ସନ୍ଧ୍ୟାରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ କାଳୀନ ଦୃଶ୍ୟାବଳୀ, ଗାଁ ପାର୍ଶ୍ୱବର୍ତ୍ତୀ ରାଇସ୍‌ମିଲ୍ ଓ ବନ୍ଦରର ଚଳଚଞ୍ଚଳ ଜୀବନଧାରା ତଥା ସାଂଗସାଥୀ ମେଳରେ ଖେଳମଉଜ ତାଙ୍କର ବାଲ୍ୟଜୀବନକୁ ବହୁ ଭାବରେ ପ୍ରଭାବିତ କରିଥିଲା । ତାଙ୍କର ମାତା ଥିଲେ ସର୍ବଗୁଣାସଂପନ୍ନା । ନିଜର ସରଳ, ନିଷ୍କପଟ, ପରୋପକାରୀ ଓ ଦୟାଶୀଳା ଗୁଣ ଯୋଗୁଁ ସମସ୍ତଙ୍କ ଶ୍ରଦ୍ଧା ଓ ଆଦରର ପାତ୍ର ହୋଇପାରିଥିଲେ । ମାତ୍ର ଜଗନ୍ନାଥଙ୍କୁ ଯେତେବେଳେ ଦଶବର୍ଷ ବୟସ, ସେତେବେଳେ ତାଙ୍କର ମାତୃ ବିୟୋଗ ଘଟିଥିଲା । ଫଳରେ ମାତୃସ୍ନେହ ମମତାରେ ପାଳିତ ହେବାର ସୌଭାଗ୍ୟରୁ ସେ ପୂର୍ଣ୍ଣ ବଞ୍ଚିତ ହୋଇଥିଲେ । ପରବର୍ତ୍ତୀକାଳରେ ତାଙ୍କର ଲାଳନପାଳନ ଦାୟିତ୍ୱ ତାଙ୍କ ପିତାଙ୍କ ଉପରେ ପଡ଼ିଥିଲା । ବଡ଼ଭଉଣୀଙ୍କ ସ୍ନେହ ମମତା ତାଙ୍କ ଜୀବନଧାରାକୁ ସୁଗଠିତ କରିଥିଲା । ମାତ୍ର, ତାଙ୍କର ଅକାଳ ବିୟୋଗ କିଶୋର ଜଗନ୍ନାଥଙ୍କ ମନରେ ଦାରୁଣ ଆଘାତ ଦେଇଥିଲା । ପିତା କୃପାସିନ୍ଧୁ ପଡ଼ିଆରୀ ଥିଲେ ଜଣେ ଧର୍ମପ୍ରାଣ, ନିଃସ୍ୱାର୍ଥପର ଓ ପରୋପକାରୀ ବ୍ୟକ୍ତି । ସେଥିପାଇଁ ଗାଁରେ ତାଙ୍କୁ ମୁଖିଆଭାବରେ ଗଣ୍ୟ କରୁଥିଲେ । ତାଙ୍କର ସଙ୍କୋଚପଣିଆ, ସ୍ପଷ୍ଟବାଦିତା, ନିର୍ଲୋଭ ଓ ସତ୍ୟବାଦିତା ନୀତି ହିଁ ତାଙ୍କୁ ଅନେକ ସମୟରେ ଅର୍ଥସଂକଟ ତଥା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ କରାଉଥିଲା । ଜଣେ ନିର୍ଭୀକ୍, ସତ୍ୟନିଷ୍ଠ ବ୍ୟକ୍ତିଭାବରେ ଯେ କୌଣସି ପରିସ୍ଥିତିକୁ ଦକ୍ଷତାର ସହିତ

ମୁକାବିଲା କରି ସୁସମାଧାନ କରୁଥିଲେ । ତାଙ୍କ ପିତୃଦେବଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ ତାଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା ।

କୃପାସିନ୍ଧୁ କୌଣସି ସରକାରୀ କି ବେସରକାରୀ ଚାକିରି ମଧ୍ୟ ସେ କରିନଥିଲେ । ଫଳରେ ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା । ପୈତୃକ ପାଞ୍ଚ ଛଅମାଣ ଚାଷଜମି ଉପରେ ସଂପୂର୍ଣ୍ଣ ପରିବାରର ଭରଣ ପୋଷଣ ନିର୍ଭର କରୁଥିଲା ।

ଜଗନ୍ନାଥ ଗାଁ ଚାହାଳିରୁ ପ୍ରାଥମିକଶିକ୍ଷା ଶେଷକରି ଚାନ୍ଦବାଲି ଟାଉନ୍‌ରେ ଥିବା ଗୋଲାମ ମହମ୍ମଦ ଏମ୍.ଇ.ସ୍କୁଲରେ ନାମ ଲେଖାଇଥିଲେ । ସେତେବେଳେ ଉକ୍ତ ସ୍କୁଲର କୃତୀ ଶିକ୍ଷକ ଥିଲେ କୃଷ୍ଣଚନ୍ଦ୍ର ପଣ୍ଡା ଓ ଅନ୍ୟ କେତେଜଣ ।

ଜଣେ ମେଧାବୀ ଛାତ୍ର ଭାବରେ ଶ୍ରେଣୀରେ ସେ ସର୍ବଦା ପ୍ରଥମ ସ୍ଥାନ ଅଧିକାର କରୁଥିଲେ । କେବଳ ସେତିକି ନୁହେଁ, ନିଜର ଅଧ୍ୟବସାୟ, ଧୀର, ନମ୍ର, ନିରହଂକାର, ସରଳ ଓ ମେଳାପି ସ୍ୱଭାବ ପାଇଁ ଉଭୟ ଶିକ୍ଷକ ଓ ଛାତ୍ରମାନଙ୍କର ସ୍ନେହ, ପ୍ରୀତିଭାଜନ ହୋଇପାରିଥିଲେ । ଫୁଟବଲ୍ ଖେଳପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା । ଜଣେ ଦକ୍ଷ ଖେଳାଳୀ ଭାବରେ ସେ ଯେଉଁଳି ସୁନାମ ଅର୍ଜନ କରିଥିଲେ, ଖେଳ ବିଷୟରେ ମଧ୍ୟ ଅନୁଭୂତି ଓ ଅଭିଜ୍ଞତା ହାସଲ କରିଥିଲେ ।

**ନିର୍ବନ୍ଧ ଓ ହାଇସ୍କୁଲ ଶିକ୍ଷା :** ମଧ୍ୟ ଇଂରାଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ହାଇସ୍କୁଲରେ ପଢ଼ିବା ଭଳି ତାଙ୍କର ଆର୍ଥିକ ଅବସ୍ଥା ନଥିଲା । ହଠାତ୍ ଏକ ସୁଯୋଗ ଯୁଟିଲା । ସେତେବେଳେ ସମାଜରେ ବାଲ୍ୟବିବାହ ପ୍ରଥା ପ୍ରଚଳିତ ଥିଲା । ମାତୃହରା ବାଳକର ଯତ୍ନନେବା ତଥା ପରିବାରର ଦାୟିତ୍ୱବହନ୍ କରିବାର ଆବଶ୍ୟକତା ହେତୁ ପିତା ପୁତ୍ରର ବିବାହ କରାଇବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଫଳରେ ଜଗନ୍ନାଥଙ୍କର ମାଇନର କ୍ଲାସ୍‌ର ଶେଷବର୍ଷ ପରୀକ୍ଷା ପରେ ପରେ ବିବାହ ନିର୍ବନ୍ଧ କାର୍ଯ୍ୟ ଶେଷ ହୋଇଥିଲା । ସାମାଜିକ ବିଧିବିଧାନ ଅନୁଯାୟୀ ସେତେବେଳେ ଧୋତି, ସୁନାମୁଦି ଓ ଶଙ୍ଖାଶାଢ଼ୀ, ସିନ୍ଦୂରର ବିନିମୟ ହୋଇଥିଲା । କନ୍ୟାଘର ଥିଲା କଟକ ଛଦେଶ ଗାଁରେ । କନ୍ୟାପିତା ଶ୍ରୀ ଶମ୍ଭୁନାଥ ବାରିକ କିନ୍ତୁ ସୁନ୍ଦରଗଡ଼ ସହରରେ ସପରିବାର ରହୁଥିଲେ । ସେ ଥିଲେ ସୁନ୍ଦରଗଡ଼ ରାଜାଙ୍କର ଦେୱାନ୍ । ତାଙ୍କର ମଧ୍ୟ ସେଠାରେ ଏକ ଜମିଦାରୀ ଥିଲା । ଜଣେ ସଚ୍ଚୋଟ ଓ ସାହାଯ୍ୟ ପରାୟଣ

ରାଜକର୍ମଚାରୀ ଭାବରେ ତାଙ୍କର ସୁନାମ ଥିଲା । ତାଙ୍କ କନ୍ୟା ସତ୍ୟବତୀଙ୍କ ନିର୍ବନ୍ଧ ଧରିବା ପରେ ସେ ଜ୍ୱାଇଁଙ୍କୁ ସୁନ୍ଦରଗଡ଼ ନେଇଥିଲେ । ସେଠାରେ ଥିବା ହାଇସ୍କୁଲରେ ତାଙ୍କର ପାଠପଢ଼ାର ସୁବ୍ୟବସ୍ଥା କରିଥିଲେ । ମାତ୍ର ଜଗନ୍ନାଥ ସେଠାରେ ରହି ପାଠ ପଢ଼ିବାକୁ ଅନିଚ୍ଛା ପ୍ରକାଶ କଲେ । ସେତେବେଳେ କଟକ ପ୍ୟାରୀମୋହନ ଏକାଡେମୀର ସୁନାମ ଚାରିଆଡ଼େ ବ୍ୟାପିଥିଲା । ସେଠାରେ ରହି ପଢ଼ିବାପାଇଁ ସେ ଆଗ୍ରହ ପ୍ରକାଶ କରିଥିଲେ । ଜ୍ୱାଇଁଙ୍କର ଆଗ୍ରହ ଶୁଣି ଶଶୁର ଶମ୍ଭୁନାଥ ଖୁସି ହୋଇଥିଲେ ଏବଂ ଉକ୍ତ ସ୍କୁଲରେ ନାମ ଲେଖାର ପାଠପଢ଼ିବାର ସମସ୍ତ ଦାୟିତ୍ୱ ବହନ କରିଥିଲେ । ସ୍କୁଲ ଜୀବନରେ ସହପାଠୀମାନଙ୍କ ସହିତ ତାଙ୍କର ଉତ୍ତମ ସଂପର୍କ ଗଢ଼ିଉଠିଥିଲା । ତାଙ୍କର ସରଳତା, ସାଧୁତା ଓ ସାହାଯ୍ୟ ପରାୟଣ ସ୍ୱଭାବ ପାଇଁ ସହପାଠୀ ମାନଙ୍କର ଖୁବ୍ ପ୍ରିୟପାତ୍ର ହୋଇପାରିଥିଲେ । ଉତ୍ତମ ଆଚରଣ, ସମୟାନୁବର୍ତ୍ତିତା, ସମ୍ମାନବୋଧ, ଶୃଙ୍ଖଳାପ୍ରିୟ ତଥା ଅଧ୍ୟବସାୟ ନିଷ୍ଠାପାଇଁ ଶିକ୍ଷକମାନଙ୍କର ମଧ୍ୟ ତାଙ୍କ ପ୍ରତି ସର୍ବଦା ସ୍ନେହ ଶ୍ରଦ୍ଧା ଥିଲା । ତାଙ୍କ ମୁଖରୁ କେହି କେବେ ଅଶାଳୀନ ବା ଆଘାତପୂର୍ଣ୍ଣ କଠୋର ବାକ୍ୟ ଶୁଣିନଥିଲେ । ୧୯୨୬ ମସିହା ବିହାର ଓଡ଼ିଶା ମାଧ୍ୟମିକ ଶିକ୍ଷାବୋର୍ଡ଼ ଅଧୀନରେ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ ।

**ଭାଗ୍ୟର ବିଡ଼ମ୍ବନା :** ଏଣ୍ଟ୍ରାନ୍ସ ପାସ୍ ପରେ କଲେଜରେ ପଢ଼ିବାପାଇଁ ତାଙ୍କର ପ୍ରବଳ ଇଚ୍ଛା ଥିଲା । ହଠାତ୍ ଶଶୁରଙ୍କ ବିୟୋଗ ତାଙ୍କ ଉଚ୍ଚଶିକ୍ଷା ସ୍ୱପ୍ନକୁ ଧୂଳିସାତ୍ କରିଦେଲା । ନିଜ ଭାଗ୍ୟର ବିଡ଼ମ୍ବନା ପାଇଁ ଅନ୍ୟକୁ ଦୋଷ ନଦେଇ ନୀରବ ରହିଲେ ଏବଂ ଅନ୍ୟ କୌଣସି କର୍ମପନ୍ଥା ଅବଲମ୍ବନ କରିବାର ଯୋଜନା ନେଲେ । ସୁନ୍ଦରଗଡ଼ରେ ବେଶ୍ କିଛିମାସ ରହିଥିଲେ । ସୁନ୍ଦରଗଡ଼ ହାଇସ୍କୁଲର ହଷ୍ଟେଲ ପିଲାମାନଙ୍କୁ ମଧ୍ୟ ଟିଉସନ୍ କରି ସାମାନ୍ୟ ଅର୍ଥ ରୋଜଗାର କଲେ । ଯେଉଁ କେତେଜଣ ଛାତ୍ରଙ୍କୁ ସେ ସେତେବେଳେ ଶିକ୍ଷାଦାନ ଦେଇଥିଲେ, ସେମାନଙ୍କ ମଧ୍ୟରେ ଓଡ଼ିଶାର ଜଣେ ଖ୍ୟାତନାମା, କୃତବିଦ୍ୟ କବି ଶ୍ରୀ ବିନୋଦ ଚନ୍ଦ୍ର ନାୟକ ଅନ୍ୟତମ । ତା'ପରେ ସେ ସ୍ୱଜନ୍ମମାଟିକୁ ଫେରି ଆସିଥିଲେ । ବାଲେଶ୍ୱରରେ କିରାଣୀ ଚାକିରିରେ ଯୋଗ ଦେଇଥିଲେ ।

**ଘରୋଇ ଜାହାଜ କମ୍ପାନୀରେ ଚାକିରି :** ସରକାରୀ କିରାଣୀ ଚାକିରି କରିବା ତାଙ୍କ ଇଚ୍ଛା ବିରୁଦ୍ଧ ଥିଲା । ଏହା ତାଙ୍କୁ ମାନସିକ ଶାନ୍ତି ଦେଇନଥିଲା । ସେ

ସମୟରେ ସାଧାରଣତଃ ବ୍ରିଟିଶ ବିରୋଧୀ ମନୋଭାବ ଦେଶବାସୀଙ୍କ ମଧ୍ୟରେ ସୃଷ୍ଟି ହୋଇଥିଲା । ଗାନ୍ଧିଜୀଙ୍କ ନେତୃତ୍ୱ ଭାରତବାସୀଙ୍କୁ ସ୍ୱାଧୀନତାର ନୂତନ ପ୍ରେରଣା ଓ ଉନ୍ମାଦନା ଯୋଗାଇଥିଲା । ତେଣୁ ସେ ଭାରତୀୟ କଂଗ୍ରେସ ପାର୍ଟିର ପ୍ରଭାବରେ ସରକାରୀ ଚାକିରି ନ କରିବାକୁ ମାନସିକ ସ୍ତରରେ ନିଷ୍ପତ୍ତି ଗ୍ରହଣ କରିଥିଲେ । ଚାନ୍ଦବାଲି ସେତେବେଳେ ନଦୀବନ୍ଦର ଭାବରେ ଓଡ଼ିଶା ତଥା ବାହାର ଦେଶରେ ଖ୍ୟାତିଲାଭ କରିଥିଲା । କଲିକତା ତଥା ବାହାର ଦେଶକୁ ଗମନାଗମନ କରିବାର ଏକମାତ୍ର ଜଳପଥ ଥିଲା । ଉକ୍ତ ବନ୍ଦରର ପ୍ରକୃତ ନାମ ଥିଲା ରେଭେନ୍ସା ପୋର୍ଟ । ଓଡ଼ିଶାର ତତ୍କାଳୀନ କମିଶନର ରେଭେନ୍ସା ସାହେବ ୧୮୮୧ ମସିହା ମାର୍ଚ୍ଚମାସ ୨୮ ତାରିଖରେ ଚାନ୍ଦବାଲି ବନ୍ଦରକୁ ଆନୁଷ୍ଠାନିକ ଭାବରେ ଉଦ୍‌ଘାଟନ କରିଥିଲେ । ଯଦିଓ ଧାମରା ବନ୍ଦର ୧୮୫୮ ମସିହା ମାର୍ଚ୍ଚମାସ ୧୮ ତାରିଖରେ ଉଦ୍‌ଘାଟିତ ହୋଇ କାର୍ଯ୍ୟକ୍ଷମ ହୋଇଥିଲା । ଦୀର୍ଘ ତେଇଶ ବର୍ଷପରେ ଚାନ୍ଦବାଲି ବନ୍ଦର ପରିକଳ୍ପିତ ହୋଇ କାର୍ଯ୍ୟକାରୀ ପାଇଁ ଶୁଭାରମ୍ଭ ହୋଇଥିଲା । ବାରମ୍ବାର ସାମୁଦ୍ରିକ ଜଳପ୍ଲାବନ, ନଦୀମୁହାଣରେ ଏକାଧିକ ବାଲିଚଡ଼ା ସୃଷ୍ଟିହେବାଦ୍ୱାରା ଜାହାଜ ଚଳାଚଳର ଅସୁବିଧା ତଥା ବନ୍ଦରରେ ଜାହାଜ ଗୁଡ଼ିକ ସୁରକ୍ଷିତ ରହିବାପ୍ରତି ବିପଦ ଦୃଷ୍ଟିରୁ ଚାନ୍ଦବାଲିକୁ ବନ୍ଦର ସ୍ଥାନାନ୍ତର ପାଇଁ ଉପଯୁକ୍ତ ସ୍ଥାନ ବୋଲି ବଛାଯାଇ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯-୪୫) ମସିହା ମଧ୍ୟରେ ଚାନ୍ଦବାଲି ବନ୍ଦରକୁ ଯାତାୟାତ କରୁଥିବା ଜାହାଜଗୁଡ଼ିକ ମଧ୍ୟରେ ସୟଦ୍, ଧାମରା, ଚାନ୍ଦବାଲି ଥିଲା ଅନ୍ୟତମ । କିନ୍ତୁ ୧୯୪୩ରୁ ୧୯୪୬ମସିହା ମଧ୍ୟରେ ଉକ୍ତ ବନ୍ଦରକୁ କୌଣସି ଜାହାଜ ଆସିନଥିଲା । ଯୁଦ୍ଧକାଳୀନ ପରିସ୍ଥିତିବେଳେ ବିଭିନ୍ନ ଆବଶ୍ୟକତା ମେଣ୍ଟାଇବା ପାଇଁ ଜାହାଜ ଗୁଡ଼ିକୁ ସରକାର ଅନ୍ୟତ୍ର ନାନା କାର୍ଯ୍ୟରେ ବ୍ୟବହାର କରିଥିଲେ ।

ଯୁଦ୍ଧର ଅବସାନ ପରେ ପରେ ବେଙ୍ଗଲ ଓଡ଼ିଶା ଟ୍ରେଡିଙ୍ଗ କମ୍ପାନୀ, କଲିକତା, ଇଣ୍ଡିଆନ୍ ନେଭିଗେସନ୍ କମ୍ପାନୀ, କଲିକତା, ଚାନ୍ଦବାଲି ଷ୍ଟିମର ସର୍ଭିସ୍ କମ୍ପାନୀର ଜାହାଜ ଗୁଡ଼ିକ ଚାନ୍ଦବାଲି ବନ୍ଦରକୁ ଆସୁଥିଲା । ବିଭିନ୍ନ ଅତ୍ୟାବଶ୍ୟକ ପଣ୍ୟଦ୍ରବ୍ୟ ବାହାରୁ ଏଠାକୁ ଆମଦାନି ଏବଂ ଏ ଅଞ୍ଚଳର ଉତ୍ପନ୍ନ ଦ୍ରବ୍ୟ ବାହାରକୁ ରପ୍ତାନୀ ହେବା ସହିତ ଯାତ୍ରୀମାନେ ମଧ୍ୟ କଲିକତା, କଟକ ଆଦି ଦୂରସ୍ଥାନକୁ ଯାତାୟାତ କରୁଥିଲେ । ବାହାରୁ ଉକ୍ତ ବନ୍ଦରକୁ ଆସୁଥିବା ପଣ୍ୟଦ୍ରବ୍ୟ ମଧ୍ୟରେ ଆସାମରୁ ଚ଼’, ଗୁଆ, ନଡ଼ିଆ,

ପଶ୍ଚିମବଂଗରୁ ଅଖା, ଝୋଟ, ଲୁଣ, ନଡ଼ିଆତେଲ, ସୋରିଷତେଲ, କିରାସିନି, ମସଲାଜାତୀୟ ଓ ଡାଲି ଜାତୀୟ ଦ୍ରବ୍ୟ ଏବଂ ଚାନ୍ଦବାଲି ବନ୍ଦରରୁ ମୁଖ୍ୟତଃ ଧାନ, ଚାଉଳ, ଘିଅ, ମହୁ, ଝୁଣା, ଶିଙ୍ଗ ଓ ଚମଡ଼ା, ଶୁଖୁଆ ଆଦି ଦ୍ରବ୍ୟ ବାହାର ଦେଶକୁ ରପ୍ତାନୀ ହେଉଥିଲା ।

ଜଗନ୍ନାଥବାବୁ ୧୯୨୮ ମସିହାରେ ପ୍ରାଇଭେଟ୍ ଜାହାଜ କମ୍ପାନୀର କାର୍ଯ୍ୟରେ ଯୋଗଦେଲେ । ଘରୋଇ ଆର୍ଥିକ ଦୁଃସ୍ଥିତି ତଥା ଉପସ୍ଥିତି ଦୃଷ୍ଟିରୁ ଚାନ୍ଦବାଲି ତାଙ୍କ ଜନ୍ମସ୍ଥାନ ଜୀବନୀ-ଜୀବିକା ଉପାର୍ଜନ ପାଇଁ ଉପଯୁକ୍ତ ଓ ଅନୁକୂଳ ଥିଲା । ଦୀର୍ଘ ୨୮ ବର୍ଷ ଧରି ସେ ଏହି କମ୍ପାନୀରେ କାର୍ଯ୍ୟନିର୍ବାହ କରି ନିଜର ସାଧୁତା ଓ କର୍ମଦକ୍ଷତାର ପରିଚୟ ଦେଇଥିଲେ । ତାଙ୍କର ପାରିବାରିକ ଆର୍ଥିକ ଅବସ୍ଥାର ବେଶ୍ ଉନ୍ନତି ଘଟିଥିଲା । ୧୯୫୪ ମସିହାବେଳକୁ ଉକ୍ତ ଘରୋଇ ଜାହାଜ କମ୍ପାନୀ ଚାନ୍ଦବାଲିରେ ବାଣିଜ୍ୟ କାରବାର ବନ୍ଦ କରିବା ଫଳରେ ଜଗନ୍ନାଥବାବୁ କର୍ମରୁ ଅବସର ଗ୍ରହଣ କରିଥିଲେ । ଧାମରା ମୁହାଣରେ ସୃଷ୍ଟି ହୋଇଥିବା ଏକାଧିକ ବାଲିଚଡ଼ା ଜାହାଜ ଚଳାଚଳ ପାଇଁ ପ୍ରତିବନ୍ଧକ ସୃଷ୍ଟିକଲା । ଜାହାଜ ଆସିବା ଯିବା ନାଳ ବାଲିରେ ପୋତିହେବା ଫଳରେ ଜାହାଜ ପାଇଁ ବହୁ ବିପଦ ସୃଷ୍ଟିହେଲା । କମ୍ପାନୀଗୁଡ଼ିକର ଜାହାଜ ଚଳାଚଳ ବନ୍ଦ ହେବା ଫଳରେ କମ୍ପାନୀ ଅଧୀନରେ ବିଭିନ୍ନ କାର୍ଯ୍ୟରତ କର୍ମଚାରୀମାନଙ୍କର ଚାକିରି ଜୀବନର ମଧ୍ୟ ଅବସାନ ଘଟିଥିଲା । ଇତ୍ୟବସରରେ ଚାନ୍ଦବାଲି ଅଞ୍ଚଳରେ ତାଙ୍କର ଖାତିର୍ ବା ଲୋକପ୍ରିୟତା ଖୁବ୍ ବଢ଼ିଯାଇଥିଲା । ତାଙ୍କର ସତ୍ୟବାଦିତା ଓ ନ୍ୟାୟପରାୟଣତା ଗୁଣପାଇଁ ସେ ସମସ୍ତଙ୍କର ଆଦର ଓ ସମ୍ମାନର ପାତ୍ର ହୋଇପାରିଥିଲେ ।

**ସକ୍ରିୟ ରାଜନୀତି ଓ ସମାଜସେବାରେ ଯୋଗଦାନ :** ଜାହାଜ କମ୍ପାନୀରୁ ବିଦାୟ ନେବାପରେ ତାଙ୍କର କିଛି ଶୁଭେଚ୍ଛୁ, ବନ୍ଧୁବାନ୍ଧବ ଅନ୍ୟତ୍ର ଚାକିରି କରିବାପାଇଁ ତାଙ୍କୁ ପ୍ରବର୍ତ୍ତାଉଥିଲେ । କିନ୍ତୁ ଏଥିରେ ସେ ସମ୍ମତି ପ୍ରକାଶ କରିନଥିଲେ । ବରଂ ନିଜ ଅଞ୍ଚଳର କିଛି ଜନହିତକର କାର୍ଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ବାଲିଗାଁ ଗ୍ରାମପଞ୍ଚାୟତର ସରପଞ୍ଚ ପ୍ରାର୍ଥୀ ଭାବରେ ନିର୍ବାଚନରେ ଭାଗ ନେବାପାଇଁ ଉକ୍ତ ଅଞ୍ଚଳର କେତେକ ମାନ୍ୟଗନ୍ୟ ମୁଖ୍ୟବ୍ୟକ୍ତି ତାଙ୍କୁ ଅନୁରୋଧ କରିଥିଲେ । ଫଳରେ

୧୯୫୫ ମସିହା ବାଲିଗାଁ ନିର୍ବାଚନମଣ୍ଡଳୀରୁ ସରପଞ୍ଚ ଭାବରେ ନିର୍ବାଚିତ ହୋଇଥିଲେ । ସରପଞ୍ଚ ଭାବରେ ସେ ଦୁଇଦୁଇଥର ସ୍ୱୀୟ ପଞ୍ଚାୟତରୁ ନିର୍ବାଚିତ ହୋଇଥିଲେ । ନିଜ ଅଞ୍ଚଳରେ ତଥା ଲୋକମାନଙ୍କର କିଛି ମଂଗଳ ଓ ଜନହିତକର କାର୍ଯ୍ୟକରିବାପାଇଁ ତାଙ୍କୁ ଅପୂର୍ବ ସୁଯୋଗ ମିଳିଥିଲା । ନିଜେ ପଞ୍ଚାୟତର ବିଭିନ୍ନ ଗ୍ରାମ ବୁଲିବୁଲି କେଉଁଠି ରାସ୍ତାନାହିଁ, ବର୍ଷାଦିନେ କେଉଁଠି ପାଣି ଜମିଯିବାରୁ ଯିବା ଆସିବାକୁ ଅସୁବିଧା ହେଉଛି ସବୁକଥା ତଦାରଖ କରୁଥିଲେ ଏବଂ ରାସ୍ତା ଉପରେ କଲଭଟ ଓ ହୋମ୍‌ପାଇପ୍ ପୋଲ ଅନେକ ନିର୍ମାଣକରି ଯାତାୟାତର ସୁବନ୍ଦୋବସ୍ତ କରିଥିଲେ । ବାଲିଗାଁ ପଞ୍ଚାୟତର ବହୁ ଜମିରେ ପ୍ରତିବର୍ଷ ଲୁଣାପାଣି ମାଡ଼ି ଯାଉଥିଲା । ଫଳରେ ଲୋକମାନେ ବର୍ଷେବର୍ଷେ ଉକ୍ତ ଜମିରୁ ମୁଠାଏ ବି ଧାନ ଅମଳ କରିପାରୁ ନଥିଲେ । ନିଜେ ଚାଷୀହୋଇ ଚାଷ ନଷ୍ଟ ହେବାର ଦୁଃଖ ଅନୁଭବ କରିଥିଲେ ଏବଂ ଏହାର ସ୍ଥାୟୀ ପ୍ରତିକାର ପାଇଁ ନଦୀକୂଳରେ ସୁଉଚ୍ଚ ରିଙ୍ଗବନ୍ଧ ନିର୍ମାଣ କରାଇ ଚାଷୀକୂଳର ଅଶେଷ ହିତସାଧନ କରିଥିଲେ । ଏବେବି ଏହିସବୁ ଘେରି ଜମିରୁ ଚାଷୀମାନେ ପ୍ରଚୁର ଶସ୍ୟ ଉତ୍ପନ୍ନ କରୁଛନ୍ତି ।

ବାଲିଗାଁ ପଞ୍ଚାୟତରେ ଥିବା ପ୍ରାଥମିକ ଶିକ୍ଷାର ବିକାଶ ପାଇଁ ତାଙ୍କର ଅବଦାନ ଥିଲା ଯଥେଷ୍ଟ । ପାଖାପାଖି ଦୁଇତିନୋଟି ଗାଁରେ କୌଣସି ପ୍ରାଥମିକସ୍କୁଲ ନଥିବାବେଳେ ସେଠାରେ ଲୋକମାନଙ୍କୁ ସଚେତନ କରାଇ ନୂଆସ୍କୁଲ ଖୋଲିଥିଲେ । ଏହି ସ୍କୁଲ ଗୁଡ଼ିକରେ ଶିକ୍ଷାଦାନର ସୁବିଧା ପାଇଁ ସ୍କୁଲଗୃହ ନିର୍ମାଣ, ଅସ୍ଥାୟୀ ଶିକ୍ଷକ ନିଯୁକ୍ତି ବିଷୟରେ ସମସ୍ତ ଦାୟିତ୍ୱ ବୁଝୁଥିଲେ । ଏପରିକି ଅନେକ କ୍ଷେତ୍ରରେ ସେ ପଞ୍ଚାୟତରୁ ଆର୍ଥିକ ସହାୟତା ମଧ୍ୟ ଯୋଗାଇ ଦେଉଥିଲେ । ତାଙ୍କ ପଞ୍ଚାୟତ ତଥା ପାଖ ଅନ୍ୟ ପଞ୍ଚାୟତର ଗ୍ରାମବାସୀମାନଙ୍କ ମଧ୍ୟରେ କୌଣସି ବିବାଦ ଉପୁଜିଲେ କୌଣସି ପକ୍ଷ ତାଙ୍କର ସୁପରାମର୍ଶ ନେଲେ, ସେ ତାଙ୍କୁ କୋର୍ଟକଚେରିକୁ ମାଲିମକଦ୍ଦମା ନେଇ ଅଯଥା ଖର୍ଚ୍ଚାନ୍ତ ହେବାକୁ ମନା କରୁଥିଲେ ଏବଂ ଉଭୟ ପକ୍ଷକୁ ଡାକି ଆପୋଷ ସମାଧାନ କରି ଦେଉଥିଲେ । ଉଭୟ ପକ୍ଷ ତାଙ୍କ ନିରପେକ୍ଷ ନିଷ୍ପତ୍ତିକୁ ସାଦରେ ଗ୍ରହଣ କରିନେଉଥିଲେ । ସରପଞ୍ଚ ଦାୟିତ୍ୱରେ ନଥାଇ ମଧ୍ୟ ଗ୍ରାମ ନିଶାପକୁ ବରାବର ତାଙ୍କୁ ଡକାଯାଉଥିଲା ଏବଂ ବିଚାର ବୈଠକରେ ଉପସ୍ଥିତ ରହି ନିଜର ସ୍ୱାଧୀନ ନିରପେକ୍ଷ ମନ୍ତବ୍ୟ ଦେଇ ଉପୁଜିଥିବା ସମସ୍ୟାର ସମାଧାନ କରୁଥିଲେ ।

ଜଗନ୍ନାଥବାବୁଙ୍କ ସାଧୁତା ଓ ସଚ୍ଚୋଟପଣ ତାଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ନିଦର୍ଶନ । ସମାଜର ହିତସାଧନ ପାଇଁ ତାଙ୍କ ଜୀବଦ୍ଦଶା ମଧ୍ୟରେ ସେ ବହୁମୁଖୀ କାର୍ଯ୍ୟ ସଂପାଦନ କରିଥିଲେ । କୃଷକମାନଙ୍କୁ ଉନ୍ନତଧରଣର କୃଷିପାଇଁ ପ୍ରବର୍ତ୍ତାଇବା, ସମାଜରୁ ଜାତିଭେଦ ଉଠାଇବା, ଦରିଦ୍ର ଛାତ୍ରମାନଙ୍କୁ ଯଥାଶକ୍ତି ଆର୍ଥିକ ସାହାଯ୍ୟ କରିବା, ସମାଜର ଦୁଃସ୍ଥ ଓ ଗରିବ ଲୋକଙ୍କୁ ମାଗଣାରେ ଔଷଧପତ୍ର ବାଣ୍ଟିବା ଏବଂ ଗାଁମାନଙ୍କରେ ନାରୀମଂଗଳ ସମିତି ଗଠନକରି ସେମାନଙ୍କୁ ଆର୍ଥିକ ସ୍ୱାବଲମ୍ବିନୀ କରିବାପାଇଁ ବିବିଧ ହସ୍ତକର୍ମ ଯୋଜନା ତଥା ନାରୀ ସ୍ୱାଧୀନତା ଓ ସମ୍ଭ୍ରମତା ବିଷୟରେ ସଚେତନ କରାଇବାର ଦାୟିତ୍ୱ ବହନ କରିଥିଲେ ।

**ଚାନ୍ଦବାଲି ବାଳିକା ସ୍କୁଲ ପ୍ରତିଷ୍ଠା :** ଚାନ୍ଦବାଲି ଅଞ୍ଚଳରେ ନାରୀଶିକ୍ଷାର ପ୍ରସାର ପାଇଁ ଏକ ବାଳିକାସ୍କୁଲ ପ୍ରତିଷ୍ଠା କରିବାର ସଂକଳ୍ପ ସେ ନେଇଥିଲେ । ଏଥିପାଇଁ ଚାନ୍ଦବାଲିର କେତେକ ଉଦୀୟମାନ ବ୍ୟକ୍ତିଙ୍କୁ ସାମିଲ୍ କରି ୧୯୬୧ ମସିହାରେ ପ୍ରଥମେ ବାଳିକା ଏମ୍.ଇ.ସ୍କୁଲର ଶୁଭାରମ୍ଭ କରିଥିଲେ । ପ୍ରଥମବର୍ଷ ଷଷ୍ଠଶ୍ରେଣୀ ଏବଂ ଦ୍ୱିତୀୟବର୍ଷ ସପ୍ତମ ଶ୍ରେଣୀ ଖୋଲିଥିଲା । ଉଚ୍ଚ ପ୍ରାଥମିକ ଶ୍ରେଣୀରୁ ପାସ୍‌କରି କେତେକ ଛାତ୍ରୀ ଉକ୍ତ ସ୍କୁଲରେ ନାମ ଲେଖାଇଥିଲେ । ସେତେବେଳେ ବାଳିକାସ୍କୁଲ ନିମନ୍ତେ ଶିକ୍ଷୟିତ୍ରୀ ମିଳିବା ବଡ଼ ସମସ୍ୟା ଥିଲା । ଏ ଅଞ୍ଚଳରେ ଉଚ୍ଚଶିକ୍ଷିତା ଝିଅ ଶିକ୍ଷୟିତ୍ରୀ ହେବାପାଇଁ ନଥିଲେ କହିଲେ ଚଳେ । ବହୁଚେଷ୍ଟାରେ ଶ୍ରୀମତୀ ତପସ୍ୱିନୀ ବେହେରା ଓ ତୃପ୍ତି ଦେ ଦୁଇଜଣ ଶିକ୍ଷୟିତ୍ରୀ ମିଳିଲେ । ଏମାନଙ୍କୁ ନେଇ ପ୍ରଥମେ କ୍ଲାସ୍ ଆରମ୍ଭ ହେଲା । ନିଜେ ଜଗନ୍ନାଥବାବୁ ଉକ୍ତସ୍କୁଲର ସେକ୍ରେଟାରୀ ଥିଲେ ଏବଂ ଅବୈତନିକ ଶିକ୍ଷକ ଭାବରେ ମଧ୍ୟ କାର୍ଯ୍ୟ ତୁଲାଇଥିଲେ । ସ୍କୁଲର ପ୍ରତ୍ୟେକଟି ସମସ୍ୟାକୁ ସେ ଅତ୍ୟନ୍ତ ଗୁରୁତ୍ୱ ସହିତ ଗ୍ରହଣ କରୁଥିଲେ ଏବଂ ଏହାର ସମାଧାନ ପାଇଁ ଆପ୍ରାଣ ଉଦ୍ୟମ ଜାରି ରଖୁଥିଲେ । ପ୍ରଥମେ ଏମ୍.ଇ. ସ୍କୁଲଟି ସ୍ଥାନୀୟ ପ୍ରାଇମେରୀ ସ୍କୁଲରେ ଆରମ୍ଭ ହୋଇଥିଲା । ସ୍କୁଲର ଶିକ୍ଷାଦାନ ବ୍ୟବସ୍ଥାର ଉନ୍ନତି ଘଟିବାଫଳରେ ଛାତ୍ରୀ, ସଂଖ୍ୟାର ମଧ୍ୟ ଅଭିବୃଦ୍ଧି ଘଟିଲା । ବହୁ ଶୀଘ୍ର ଏମ୍.ଇ. ସ୍କୁଲ ସରକାରୀ ସ୍ୱୀକୃତି ଲାଭ କଲା । ସ୍ଥାନୀୟ ଅଧିବାସୀ ତଥା ଅଭିଭାବକଙ୍କ ମଧ୍ୟରେ ଉତ୍ସାହ ଓ ଆନନ୍ଦ ସୃଷ୍ଟିହେଲା ।

ସମସ୍ତଙ୍କ ସହଯୋଗ, ଆର୍ଥିକ ଅନୁଦାନ ଓ ଶ୍ରମଦାନ ଫଳରେ ସ୍କୁଲର ଶ୍ରେଣୀଗୃହ ଛାତ୍ରୀନିବାସ ଓ ଶିକ୍ଷୟିତ୍ରୀମାନଙ୍କ ରହିବା କ୍ୱାଟର୍ସ ନିର୍ମିତ ହେଲା । ଯଦ୍ୱାରା

ଜଗନ୍ନାଥବାବୁଙ୍କ ମନରେ ଗଭୀର ଆଶା ସଂଚାର ହେଲା ଏବଂ ମଧ୍ୟ ଇଂରାଜୀ ବାଳିକା ବିଦ୍ୟାଳୟକୁ ଏକ ପୂର୍ଣ୍ଣାଙ୍ଗ ହାଇସ୍କୁଲରେ ପରିଣତ କରିବାପାଇଁ ସେ ସ୍ଥାନୀୟ ବାସିନ୍ଦା ତଥା ଅଭିଭାବକମାନଙ୍କ ସମର୍ଥନରେ ସଂକଳ୍ପବଦ୍ଧ ହେଲେ । କୌଣସି ସତ ଓ ସାଧୁ ଉଦ୍ୟମ ବ୍ୟର୍ଥ ନହେଲା ଭଳି ତାଙ୍କ ସ୍ୱପ୍ନକୁ ସାକାର କରିବାପାଇଁ ସମସ୍ତଙ୍କ ଅକୁଣ୍ଠିତ ସହଯୋଗ ଲାଭକଲେ ।

ନିଜର ପ୍ରବଳ ଇଚ୍ଛାଶକ୍ତି ଏବଂ ଦୃଢ଼ ଆତ୍ମବିଶ୍ୱାସ ବଳରେ ଏମ୍.ଇ. ସ୍କୁଲର ହଷ୍ଟେଲ ଗୃହରେ ହାଇସ୍କୁଲର ଅଷ୍ଟମଶ୍ରେଣୀର ଶୁଭାରମ୍ଭ କଲେ । ପ୍ରତିବର୍ଷ ନୂତନ ଶ୍ରେଣୀ ଖୋଲିବାରେ ଲାଗିଲା । ସେତେବେଳେ ସମାଜରେ ଏକ ନୂତନ ସମସ୍ୟା ମଧ୍ୟ ଦେଖାଯାଇଥିଲା । ଏମ୍.ଇ. ସ୍କୁଲ ପାସ୍‌କଲା ପରେ ଅଧିକାଂଶ ଛାତ୍ରୀମାନଙ୍କୁ ହାଇସ୍କୁଲରେ ପଢ଼ାଇବାକୁ ସେମାନଙ୍କ ଅଭିଭାବକମାନେ ରାଜି ହେଉନଥିଲେ । ଜଗନ୍ନାଥବାବୁ ଉକ୍ତ ଛାତ୍ରୀମାନଙ୍କ ଅଭିଭାବକମାନଙ୍କୁ ସାକ୍ଷାତ୍‌କରି, ସେମାନଙ୍କୁ ବୁଝାଇ ଶୁଝାଇ ସ୍କୁଲକୁ ଆଣିବାକୁ ଉଦ୍ୟମ ଜାରିରଖି କୃତକାର୍ଯ୍ୟ ହୋଇଥିଲେ । ନିଜେ ସ୍କୁଲରେ ଗଣିତ, ଇଂରାଜୀ, ଭୂଗୋଳ, ସାହିତ୍ୟ, ସ୍ୱାସ୍ଥ୍ୟରକ୍ଷା ବିଷୟ ବିଭିନ୍ନ କ୍ଲାସ୍‌ରେ ପଢ଼ାଉଥିଲେ୍ ଏବଂ ପିଲାମାନଙ୍କ ବୁଝିବାରେ ଅସୁବିଧା କଥା ଦୂର କରୁଥିଲେ । ଫଳରେ ପିଲାମାନଙ୍କର ମଧ୍ୟ ପାଠପଢ଼ା ପ୍ରତି ଆଗ୍ରହ ବୃଦ୍ଧି ଘଟିଥିଲା । ଅବୈତନିକ ଶିକ୍ଷାଦାନରେ ଜଗନ୍ନାଥବାବୁ ପରମ ଆତ୍ମତୃପ୍ତି ଲାଭ କରିଥିଲେ । ଯଦ୍ୱାରା ପାଠପଢ଼ା କ୍ଷେତ୍ରରେ ସ୍କୁଲର ସୁନାମ ବଢ଼ିଯାଇଥିଲା ଏବଂ ସ୍କୁଲର ଛାତ୍ରସଂଖ୍ୟାର ଅଭିବୃଦ୍ଧି ଘଟିଥିଲା ।

ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କ୍ଷେତ୍ରରେ ସେ ମଧ୍ୟ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ସବୁ ପରିସ୍ଥିତିକୁ ମୁକାବିଲା କରି ତାଙ୍କ ଉଦ୍ୟମକୁ ଆଗେଇ ନେଇଥିଲେ । ଏହା ତାଙ୍କର ଗଭୀର ଅନୁଷ୍ଠାନ ପ୍ରୀତି ଏବଂ ମହାନ୍ ବ୍ୟକ୍ତିତ୍ୱର ପରିଚୟ । ଜଣେ ଦୂରଦୃଷ୍ଟି ସଂପନ୍ନ ବ୍ୟକ୍ତିଭାବରେ ସେ ମର୍ମେମର୍ମେ ଅନୁଭବ କରିଥିଲେ, ସମାଜରେ ନାରୀଶିକ୍ଷାର ପ୍ରସାର ବିନା ସାମାଜିକ ବିକାଶ ସମ୍ଭବ ନୁହେଁ । ଏକ ସୁସ୍ଥ, ଉନ୍ନତ, ସଂସ୍କାରମୁକ୍ତ ଓ ସ୍ୱଚ୍ଛଳ ପାରିବାରିକ ଜୀବନ ନପାଇଲେ ଆମେ ଏକ ବିକାଶଶୀଳ ପ୍ରଗତିଶୀଳ ସମାଜ ବା ରାଷ୍ଟ୍ର ନିର୍ମାଣ କରିବା ସମ୍ଭବ ନୁହେଁ । ସେଥିପାଇଁ ନାରୀଜାତିକୁ ଆମେ ସମାଜର ମୁଖ୍ୟସ୍ରୋତରେ ସାମିଲ କରି ସେମାନଙ୍କୁ ସେବା, ଶିକ୍ଷା, ସ୍ୱାସ୍ଥ୍ୟ, ବିଜ୍ଞାନ, ପ୍ରତିରକ୍ଷା ସବୁକ୍ଷେତ୍ରରେ ଆଗୁଆ କରିବାକୁ ହେବ ।

ଏସବୁର ମୂଳରେ ହିଁ ନାରୀସମାଜ ଶିକ୍ଷିତା ହେବା ପ୍ରଥମ କର୍ତ୍ତବ୍ୟ । ସେମାନେ ଶିକ୍ଷିତା ହେଲେ, ସେମାନଙ୍କ ପରିବାରକୁ ଉପଯୁକ୍ତ ଶିକ୍ଷା ଓ ସ୍ୱାସ୍ଥ୍ୟ ପ୍ରଦାନ କରି ସମାଜରେ ଜଣେଜଣେ ଉତ୍ତମ ନାଗରିକ ପ୍ରତିଷ୍ଠା କରିପାରିବେ । ତେଣୁ ଯୁଗେଯୁଗେ ନାରୀ ହିଁ ସେବାମୟୀ, ତ୍ୟାଗମୟୀ, ସେ ପୁଣି ସଂହାରକାରିଣୀ । ସେ ଦୁହିତା, ବଧୂ ସେ ପୁଣି ଜାୟା ଓ ଜନନୀ ।

ଚାନ୍ଦବାଲିରେ ଏମ୍.ଇ.ସ୍କୁଲ ବାଳିକା ହଷ୍ଟେଲରେ ପ୍ରଥମେ ଉଚ୍ଚ ଇଂରାଜୀ ବାଳିକା ବିଦ୍ୟାଳୟ ଆରମ୍ଭ ହୋଇଥିଲା । ଉକ୍ତ ବାଳିକା ବିଦ୍ୟାଳୟ ପାଇଁ ମଧ୍ୟ ଏକ ପରିଚାଳନା କମିଟି ଗଠିତ ହୋଇଥିଲା । ଦୁର୍ଯ୍ୟୋଧନ ମିଶ୍ର ଥିଲେ ପ୍ରଥମ ସଭାପତି । ମହାବୀର ପ୍ରସାଦ ମୋର ଥିଲେ ସଂପାଦକ ଏବଂ ଯୋଗେନ୍ଦ୍ର ନାଥ ମହାନ୍ତି ଥିଲେ ସହ-ସଂପାଦକ । ସଭ୍ୟମାନଙ୍କ ମଧ୍ୟରୁ ଏସ୍.ଏମ୍.ଏ. କରିମ୍, ଯୋଗେଶ ଚନ୍ଦ୍ର ନାୟକ, କାଳିନ୍ଦୀ ଚରଣ ସାହୁ, ବିଷ୍ଣୁମୋହନ ପାଣି, ଅନ୍ନଦା ମହାନ୍ତି (ପ୍ରଧାନ ଶିକ୍ଷୟିତ୍ରୀ), ଜଗନ୍ନାଥ ପଢ଼ିଆରୀ (ଶିକ୍ଷକ ପ୍ରତିନିଧି) ରହିଥିଲେ ।

ଉକ୍ତ ଉଚ୍ଚ ଇଂରାଜୀ ବାଳିକା ବିଦ୍ୟାଳୟ ପରିଚାଳନା କମିଟିର ଏକ ବୈଠକ ତା.୨୯.୯.୬୯ ମସିହାରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ସହକାରୀ ଶିକ୍ଷୟିତ୍ରୀଙ୍କ ଇସ୍ତଫା, ନୂତନ ଶିକ୍ଷୟିତ୍ରୀ ନିଯୁକ୍ତି, ଶିକ୍ଷୟିତ୍ରୀ ମାନଙ୍କ ଚାକିରିର ସ୍ଥାୟିତ୍ୱ ଓ ନିରାପତ୍ତା ତଥା ଛାତ୍ର ଆନ୍ଦୋଳନ ବିଷୟରେ ଆଲୋଚନା କରାଯାଇ ବିହିତ ସିଦ୍ଧାନ୍ତମାନ ଗ୍ରହଣ କରାଯାଇଥିଲା । ଏଭଳି ସିଦ୍ଧାନ୍ତ ଗୁଡ଼ିକ କେତେ ଉପାଦେୟ ଏବଂ ସୁଚିନ୍ତିତ ଯାହାର ଅବିକଳ ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା -

* ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଶ୍ରୀମତୀ ଅଳିଭା ରାଉତ, ସରକାରୀ ଚାକିରି ପ୍ରାପ୍ତି ଉପଲକ୍ଷେ ଇସ୍ତଫା ଦେଲେ । ଦୁଃଖର ସହିତ ତାହାଙ୍କର ଇସ୍ତଫା ଗୃହୀତ ହେଲା ।

* ପ୍ରଧାନଶିକ୍ଷୟିତ୍ରୀଙ୍କ ସ୍ଥାନରେ ଜଣେ ନୂତନ ଶିକ୍ଷୟିତ୍ରୀ ନିଆଯିବାର ଆବଶ୍ୟକତା ଦୃଷ୍ଟିରୁ ପ୍ରଧାନ ଶିକ୍ଷୟିତ୍ରୀଙ୍କୁ ଅନୁରୋଧ କରାଗଲା ଯେ ପୂର୍ବରୁ ଦରଖାସ୍ତ କରିଥିବା ଶ୍ରୀମତୀ ମିନତୀ ଦାସ, ନିଳିଆବାଗ, ବାଲେଶ୍ୱରଙ୍କୁ ଲେଖନ୍ତୁ ଯେ ତାଙ୍କୁ ଯଦି ନିଯୁକ୍ତି ଦିଆଯାଏ ଏହି ସ୍କୁଲର ଶିକ୍ଷୟିତ୍ରୀ ରୂପେ ସେ ଯୋଗଦେବାକୁ ସମ୍ମତ

ହେବେକି ନା ଏବଂ ଯଦି ସମ୍ମତ ହୁଅନ୍ତି, କେତେ ତାରିଖ ସୁଦ୍ଧା କାର୍ଯ୍ୟରେ ଯୋଗଦେବେ ।

* ଶିକ୍ଷକ ଶିକ୍ଷୟିତ୍ରୀଙ୍କ ମନରେ ସେମାନଙ୍କ ସର୍ଭିସର ସ୍ଥାୟିତ୍ୱ ଓ ନିରାପତ୍ତା ଭାବ ଜନ୍ମାଇବା ପାଇଁ ପ୍ରସ୍ତାବ କରାଗଲା ଯେ ସର୍ଭିସ ସଂପର୍କୀୟ ବିଭାଗୀୟ ନିର୍ଦ୍ଦେଶ ନହେବା ପର୍ଯ୍ୟନ୍ତ ଏବଂ ଶିକ୍ଷକ ଶିକ୍ଷୟିତ୍ରୀମାନେ ତ୍ରୁଟିହୀନ ଭାବେ କାର୍ଯ୍ୟ କରୁଥିବା ପର୍ଯ୍ୟନ୍ତ ପରିଚାଳନା କମିଟି ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ କାର୍ଯ୍ୟରୁ ଅନ୍ତର କରିବେ ନାହିଁ ।

ବରଂ ଯଦି ସେପରି ବିଭାଗୀୟ ନିର୍ଦ୍ଦେଶନାମା ଆସେ, ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସର୍ଭିସର ସୁରକ୍ଷା ପାଇଁ ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ଲେଖି ଯଥାସମ୍ଭବ ସବୁକଥା ରେଗୁଲାରାଇଜ୍ କରିବାକୁ ପରିଚାଳନା କମିଟି ଯତ୍ନଶୀଳ ହେବ ।

* ଛାତ୍ର ଆନ୍ଦୋଳନ ଯୋଗୁଁ କୌଣସି ଛାତ୍ରୀ ସ୍କୁଲରେ ଯୋଗ ଦେଉନଥିବାରୁ ଏବଂ ସ୍ଥାନୀୟ ଦାଖା ହାଇସ୍କୁଲ ଏହି କାରଣରୁ ତା ୨୯.୯.୬୯ ପର୍ଯ୍ୟନ୍ତ ବନ୍ଦ ରଖାଯାଇଥିବାରୁ ସ୍କୁଲର ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ପରିଚାଳନା କମିଟିକୁ ବାଳିକା ବିଦ୍ୟାଳୟ ତା ୨୯.୬.୬୯ ପର୍ଯ୍ୟନ୍ତ ବନ୍ଦ ରଖାଯିବାପାଇଁ ଯେଉଁ ଦରଖାସ୍ତ କରିଥିଲେ ତାହା ବିଚାରକୁ ନିଆଯାଇ ପ୍ରଧାନ ଶିକ୍ଷୟିତ୍ରୀଙ୍କୁ ଅନୁରୋଧ କରାଗଲା ଯେ ଏ ବିଷୟରେ ସେ ବିଭାଗୀୟ ଇନସ୍‌ପେକ୍ଟରଙ୍କୁ ଜଣାଇ ଅନୁମତି ଗ୍ରହଣ କରନ୍ତୁ ।

ଉପରୋକ୍ତ ପ୍ରସ୍ତାବ ବା ନିଷ୍ପତ୍ତିଗୁଡ଼ିକ ଜଗନ୍ନାଥବାବୁଙ୍କ ସ୍ୱହସ୍ତଲିପି । ପରିଚାଳନା କମିଟିର ଏଭଳି ନିଷ୍ପତ୍ତି ଗ୍ରହଣ କ୍ଷେତ୍ରରେ ତାଙ୍କର ମଧ୍ୟ ପୂର୍ଣ୍ଣ ସମର୍ଥନ ଓ ସହଯୋଗ ରହିଥିଲା ଜଣେ ଶିକ୍ଷକ ପ୍ରତିନିଧି ଭାବରେ । ନିଜେ ଜଣେ ଆଦର୍ଶ ଶିକ୍ଷକ ହୋଇଥିବାରୁ ଶିକ୍ଷକ ଜାତିର ସମ୍ମାନ, ସ୍ୱାଭିମାନ ଓ ଚାକିରିର ସୁରକ୍ଷା ପାଇଁ ଏଭଳି ସିଦ୍ଧାନ୍ତ ଗୁଡ଼ିକ ଖୁବ୍ ସୁଚିନ୍ତିତ ପଦକ୍ଷେପ କହିଲେ ଭୁଲ୍ ହେବନାହିଁ ।

**ସପ୍ତତନ୍ତ୍ରୀ ସାଂସ୍କୃତିକ ସଂସ୍ଥା :** ଚାନ୍ଦବାଲିର କିଛି ସ୍ୱପ୍ନବିଭୋର ସାହିତ୍ୟ ସଂସ୍କୃତି ପ୍ରେମୀ ଯୁବମାନସକୁ ୧୯୬୪ ମସିହା ମାର୍ଚ୍ଚ ୩୧ତାରିଖରେ ଗଢ଼ିଥିଲେ 'ସପ୍ତତନ୍ତ୍ରୀ ସାଂସ୍କୃତିକ ସଂସ୍ଥା ।' ଏହି ତରୁଣ ଅରୁଣମାନଙ୍କ ମଧ୍ୟରେ ପ୍ରେରଣାର ମୁଖ୍ୟଥିଲେ ଜଗନ୍ନାଥ ପଢ଼ିଆରୀ । ସମସ୍ତ ପ୍ରକାର ଗୋଷ୍ଠୀ ଓ ବାଦବିବାଦର ଊର୍ଦ୍ଧ୍ୱରେ

ରହି ଏକପ୍ରାଣ ଏକଲକ୍ଷ୍ୟରେ ଏହି ଦୁର୍ବାର ଉଦ୍ୟମରେ ସଂକଳ୍ପବଦ୍ଧ ହୋଇଥିଲେ । ଅନୁଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ସାହିତ୍ୟର ଶ୍ରୀବୃଦ୍ଧି ଥିଲା ଅନ୍ୟତମ । ସପ୍ତତନ୍ତ୍ର ବା ସପ୍ତମନ୍ତ୍ର ଯଥା - ଶାନ୍ତି, ମୁକ୍ତି, ନୀତି, ପ୍ରୀତି, ମୈତ୍ରୀ, ସଂସ୍କୃତି ଓ ପ୍ରଗତି ଥିଲା ଏହାର ଆଦର୍ଶ । ଓଡ଼ିଆ ଭାଷା ସାହିତ୍ୟର ଶ୍ରୀବୃଦ୍ଧି ହିଁ ମୁଖ୍ୟ ଆଭିମୁଖ୍ୟ ଥିଲା । 'ଓଡ଼ିଆ ଚିନ୍ତା' ନାମରେ ଘୋଷଣା ଥିଲା -

ସର୍ବଦା ଓଡ଼ିଆ କହନ୍ତୁ ଏବଂ ଓଡ଼ିଆରେ ଲେଖନ୍ତୁ ।

ସମସ୍ତ କାଗଜପତ୍ର ଓଡ଼ିଆରେ କରନ୍ତୁ ।

ଭାଷା ତଥା ସାହିତ୍ୟ କ୍ଷେତ୍ରରେ ଉପସ୍ଥିତ ଯେକୌଣସି ପ୍ରକାର ସଂକଟରେ ସମ୍ମୁଖୀନ ହେବାପାଇଁ ଓ ସେଥିପାଇଁ ସମସ୍ତ ସ୍ୱାର୍ଥ ବିସର୍ଜନ କରିବାକୁ ପ୍ରତିଜ୍ଞାବଦ୍ଧ ହୁଅନ୍ତୁ ।

ଭାଷା ତଥା ସାହିତ୍ୟ ପ୍ରତି ଅବିଚାର ବିରୁଦ୍ଧରେ ଜନ ଜାଗରଣକୁ ସ୍ୱାଗତ କରନ୍ତୁ ।

ସାହିତ୍ୟ କ୍ଷେତ୍ରରେ ନୂତନ ପାଠକ ପାଠିକା ଓ ଲେଖକ ଲେଖିକା ସୃଷ୍ଟି କରିବା ସଂଗେସଂଗେ ଜୀବନର ପ୍ରକାଶଭଂଗୀକୁ ସାହିତ୍ୟ ସୃଷ୍ଟି ଦିଗରେ ପ୍ରଭାବିତ କରି ରୁଚିସଂପନ୍ନ ଆଭିମୁଖ୍ୟ ତଥା ପରିମାର୍ଜିତ ଚିନ୍ତାଧାରା ସୃଷ୍ଟି କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଉକ୍ତ ତରୁଣ ଗୋଷ୍ଠୀ ଏହି ଆଦର୍ଶକୁ ସତ୍ୟବାଦୀ ଓ ସବୁଜଗୋଷ୍ଠୀଙ୍କ ସଂକଳ୍ପତୁଲ୍ୟ ଗ୍ରହଣ କରି ନେଇଥିଲେ ଏବଂ ଅଦମ୍ୟ ଉତ୍ସାହର ସହିତ 'ତପ୍ତତନ୍ତ୍ରୀ ସାଂସ୍କୃତିକ ସଂସ୍ଥା' ତାର କର୍ମକ୍ଷେତ୍ରରେ ଆଗେଇ ଚାଲି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବୈପ୍ଳବିକ ବିକାଶ ସାଧନ କରିଥିଲେ । ଏଥିପାଇଁ ସାହିତ୍ୟ ସଂସ୍କୃତିପ୍ରେମୀ ଜଗନ୍ନାଥ ବାବୁଙ୍କର ଆନ୍ତରିକ ଇଚ୍ଛା ଓ ଉଦ୍ୟମକୁ କେବେ କେହି ଅସ୍ୱୀକାର କରିପାରିବେ ନାହିଁ ।

**'କଳ୍ପଲତା' ପତ୍ରିକା ସଂପାଦନା :** ଜଗନ୍ନାଥ ପଡ଼ିଆରୀଙ୍କ ସଂପାଦନାରେ ଚାନ୍ଦବାଲିରୁ 'କଳ୍ପଲତା' ନାମକ ଏକ ସାହିତ୍ୟ ପତ୍ରିକା ପ୍ରଥମେ ପ୍ରକାଶ ପାଇଥିଲା ୧୯୬୬ ମସିହାରେ । ଉକ୍ତ ପତ୍ରିକାଟି ଥିଲା 'ସପ୍ତତନ୍ତ୍ରୀ ସାଂସ୍କୃତିକ ସଂସ୍ଥା'ର ମୁଖପତ୍ର । ଭଦ୍ରକ ଗୋପୀନାଥ ପ୍ରେସରୁ ପତ୍ରିକାଟି ମୁଦ୍ରିତ ହୋଇଥିଲା । କଳେବର

ଦୃଷ୍ଟିରୁ ସତୁରୀ ପୃଷ୍ଠା ବିଶିଷ୍ଟ ଓ୍ୱାନ୍‌ଫୋର ସାଇଜ୍ ଥିଲା । ପତ୍ରିକା ବିଷୟରେ ସଂପାଦକଙ୍କ ସ୍ୱୀକାରୋକ୍ତି ହେଉଛି, ନବ ମୁକୁଳିତ ସାହିତ୍ୟାନୁରାଗୀମାନଙ୍କ ଆତ୍ମପ୍ରକାଶର ପରିପୁଷ୍ଟ ଭାବ ସଂକଳନ ନିମିତ୍ତ ହିଁ ସଂସଦର ମୁଖପତ୍ର 'କଳ୍ପଲତା'ର ପରିକଳ୍ପନା । ନାନା ଝଡ଼ଝଞ୍ଜାର ସମ୍ମୁଖୀନ ହୋଇଥିଲେ ମଧ୍ୟ ଏହାର ୧ମ ସଂଖ୍ୟା ହସ୍ତଲିପି ମାଧ୍ୟମରେ ରୂପ ପାଇଲା । ପୂର୍ବରୁ ଏହାର ତ୍ରୈମାସିକ ପ୍ରକାଶନର ପରିକଳ୍ପନା କରାଯାଇଥିଲେ ହେଁ ରୁଢ଼ ଅର୍ଥନୀତିର ଦାରୁଣ ଆଘାତ । ଉପଯୁକ୍ତ ବହିରୁତ୍ସାହର ଅନାଧିକ୍ୟ ଆଦି ବିଭିନ୍ନ କାରଣବଶତଃ ଏହାର ପ୍ରକାଶକାଳ ବାର୍ଷିକ ହେବ ବୋଲି ସିଦ୍ଧାନ୍ତ ଗ୍ରହଣ କରାଗଲା । ସମ୍ଭବତଃ ଦୁଇଟି କିମ୍ବା ତିନୋଟି ସଂଖ୍ୟା ପ୍ରକାଶ ପରେ ଏହା ବନ୍ଦ ହୋଇଯାଇଥିଲା । ଯେତେଦୂର ଦୃଢ଼ ବିଶ୍ୱାସ ଅର୍ଥସଂକଟ ହିଁ ଉକ୍ତ ପତ୍ରିକା ପ୍ରକାଶର ମୁଖ୍ୟ ପ୍ରତିବନ୍ଧକ ହୋଇଥିଲା ।

'କଳ୍ପଲତା'ର ଦ୍ୱିତୀୟ ସଂଖ୍ୟା (୧୮୮୮ ମସିହା) ପତ୍ରିକା ବିଷୟ କ୍ଷୋଭ ପ୍ରକାଶ କରି ଉଲ୍ଲେଖ କରିଛନ୍ତି, 'ସଂଖ୍ୟାତ୍ମକ ଦୃଷ୍ଟିରୁ ହୁଏତ ଆଜି ପତ୍ରପତ୍ରିକା ସନ୍ଦେହମୁକ୍ତ କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ଅଧିକାଂଶ ସମୟରେ ନିରାଶ ହେବାକୁ ପଡ଼େ । ଓଡ଼ିଶାର ମୁଷ୍ଟିମେୟ କେତୋଟି ପତ୍ରିକା ବ୍ୟତୀତ ଅନ୍ୟସବୁ ଯଥାର୍ଥ ସାହିତ୍ୟ ପରିବେଷଣ କରିବାକୁ ଅକ୍ଷମ ହୋଇ ପଡୁଛନ୍ତି । ଆର୍ଥିକ ଦୁର୍ଗତି, ପ୍ରିୟାପ୍ରୀତି ତୋଷଣ, ଉପଯୁକ୍ତ ସଂପାଦନାର ଅଭାବ, ଅସାହିତ୍ୟିକ ମାନଙ୍କର ବିନା ପରିଶ୍ରମ, ବିନା ଅଧ୍ୟୟନରେ ସାହିତ୍ୟିକ ହେବାକୁ ଏକାନ୍ତ ଆଗ୍ରହ - ଏଇସବୁ ପତ୍ରିକାର ଅବନତି ପାଇଁ ଅନେକାଂଶରେ ଦାୟୀ । ପୁଣି ଅନେକ ବ୍ୟବସାୟୀ ସଂପାଦକମାନଙ୍କର ରକ୍ଷଣଶୀଳ ମନୋବୃତ୍ତି ନାବଗତ ତରୁଣ ଲେଖକ, ଲେଖିକାମାନଙ୍କ ଲେଖା ପ୍ରକାଶ ପାଇଁ ଏକାନ୍ତ ଅନିଚ୍ଛା ସେହି ଲେଖକ ଲେଖିକାମାନଙ୍କ ପ୍ରତିଭା ବିପର୍ଯ୍ୟୟର ଅନ୍ୟତମ ହେତୁ । ଓଡ଼ିଶାର ପତ୍ରପତ୍ରିକାର ଇତିହାସ ପୃଷ୍ଠା ଖୋଲିଲେ ଯେଉଁ ସଂପାଦକମାନେ ସ୍ମରଣ ପଥକୁ ଆସନ୍ତି, ସେମାନେ କେବଳ ସଂପାଦକ ନଥିଲେ, ଉପରନ୍ତୁ ସେହିମାନଙ୍କ ହାତରେ ଗଢ଼ି ଉଠିଥିଲେ ବହୁ ଲେଖକ ଲେଖିକା । କୌଣସିମତେ ଲେଖାଟି ପଢ଼ିଦେଇ ପତ୍ରିକାରେ ଛାପିଦେବା ହୁଏତ ସଂପାଦନାର ଗୋଟିଏ ଦିଗ (ଯାହାହେବା ମଧ୍ୟ ଉଚିତ୍ ନୁହେଁ) ହୋଇପାରେ - ମାତ୍ର ସମସ୍ତ ଦିଗ ନୁହେଁ । ବର୍ତ୍ତମାନ ସଂପ୍ରାଦକଙ୍କ ସହ ବ୍ୟକ୍ତିଗତ ପରିଚୟ ନଥିଲେ ଲେଖା ପ୍ରକାଶ ପାଏନା - ସେ ଯେତେ ଉଚ୍ଚକୋଟିର ଲେଖା

ହେଉପଛେ । ଦୁଃଖର ସହିତ ଏକଥା ପ୍ରକାଶ ନକରି ଉପାୟ ନାହିଁ ।

ପୁଣି ସାହିତ୍ୟ କ୍ଷେତ୍ରରେ ଆଜି ନାନାପ୍ରକାର ଗୋଷ୍ଠୀ ତିଆରି ହେଉଛି । ଗୋଷ୍ଠୀର ମୁଖ୍ୟମାନେ ନିଜନିଜକୁ ପ୍ରତିଷ୍ଠିତ ଓ ପ୍ରଚାରିତ କରିବାପାଇଁ ନାମ ଉଦ୍ଦେଶ୍ୟପୂର୍ଣ୍ଣ ଘଟଣା ସାହିତ୍ୟ କ୍ଷେତ୍ରକୁ ପ୍ରବେଶ କରାଉଛନ୍ତି । ଫଳତଃ ସାହିତ୍ୟ ରାଜ୍ୟର ସମ୍ବାଦ ଆଜି ବିସମ୍ବାଦରେ ପରିଣତ ହେଉଛି । ଏ କ୍ଷେତ୍ରରେ ନବାଗତ ଲେଖକ ଲେଖିକାମାନେ ନିଜ ପଥରୁ ଓହରି ଆସିବାରେ ବୈଚିତ୍ର୍ୟ କିଛିନାହିଁ । ସଂପାଦକ ମହାଶୟଙ୍କ ଉପରୋକ୍ତ ମନ୍ତବ୍ୟଟି ଖୁବ୍ ବାସ୍ତବଧର୍ମୀ, ଯୁଗୋପଯୋଗୀ ତଥା ହୃଦୟସ୍ପର୍ଶୀ ।

ଓଡ଼ିଆ ପତ୍ରିକା ପ୍ରକାଶନର ଏଭଳି ସମସ୍ୟା ଶଙ୍କୁଳ ଅବସ୍ଥା ମଧ୍ୟରେ ଜନ୍ମ ନେଇଥିଲା 'କଳ୍ପଲତା' ପତ୍ରିକାଟି । ପ୍ରିୟା ପ୍ରୀତି ତୋଷଣ ଠାରୁ ମୁକ୍ତରହି ନବୀନ ଲେଖକ ଲେଖିକାମାନଙ୍କୁ ଅପୂର୍ବ ସୁଯୋଗ ଦେବାର ଆଭିମୁଖ୍ୟ ନେଇ ଆର୍ଥନୀତିକ ଦୁଃସ୍ଥିତି ମଧ୍ୟରେ ବଞ୍ଚିବାର ପ୍ରୟାସ କରିଥିଲା ।

'କଳ୍ପଲତା'ର ନିୟମାବଳୀ ମଧ୍ୟରେ ଘୋଷିତ ହୋଇଥିବା ବିଭିନ୍ନ ବିଭାଗ ମଧ୍ୟରେ କବିତା, ପ୍ରବନ୍ଧ, ଆଲୋଚନା, କ୍ଷୁଦ୍ରଗଳ୍ପ, ରମ୍ୟରଚନା, ହାସ୍ୟରସ, ଭ୍ରମଣ କାହାଣୀ, ଶିଶୁସାହିତ୍ୟ, ଏକାଙ୍କିକା ଓ ସଂଗ୍ରହାତ୍ମକ ଲେଖାଥିଲା ଅନ୍ୟତମ । କବିତା ବିଭାଗରେ ଅଧ୍ୟାପକ ସୁଧାଂଶୁ ଶେଖର ରାୟଙ୍କ 'ଦୀପାବଳି', ଭାଗୀରଥୀ କୁଅଁରଙ୍କ 'ନୂତନର ଇତିହାସ', ଲକ୍ଷ୍ମୀନାରାୟଣ ରାୟସିଂହଙ୍କ 'ପରାଶ', ଅଧ୍ୟାପକ କୃଷ୍ଣ ଚରଣ ବେହେରାଙ୍କ 'ଆଲୋକ ଦୀକ୍ଷା', ମନୋରମା ବିଶ୍ୱାଳଙ୍କ 'ମୁଁ ତା'ର ପ୍ରଣତି କରେ', ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ 'ଆମର ପୃଥିବୀ', ଗୋବିନ୍ଦ ଚନ୍ଦ୍ର ଦାସଙ୍କ 'ଦୁଇଟି ସଂଜ୍ଞା', ରାଜେନ୍ଦ୍ର କିଶୋର ପଣ୍ଡାଙ୍କ 'କିନ୍ତୁ ଆଗୋ ବୈଦେହିନୀ ମୋର !', ରମାକାନ୍ତ ବେହେରାଙ୍କ 'ପଥପ୍ରାନ୍ତେ', ରାଧାଶ୍ୟାମ ପଣ୍ଡାଙ୍କ 'ପ୍ରବଞ୍ଚନା', ଶିବଚରଣ ବାରିକଙ୍କ 'ଦୃଷ୍ଟିର ଡାଏରୀରୁ', ସନାତନ ନାୟକଙ୍କ 'ଆଶୀର୍ବାଦ', ପୃଥ୍ୱୀରାଜ ପଟ୍ଟନାୟକଙ୍କ 'ଅମୃତ ପୁରୀର ସନ୍ଧାନ' ଏବଂ ଅଧ୍ୟାପକ ପୀତାମ୍ବର ସ୍ୱାଇଁଙ୍କ 'ତୂର୍ଯ୍ୟନାଦ' କବିତା ପ୍ରକାଶ ପାଇଥିଲା । ପ୍ରବନ୍ଧ ଓ ଆଲୋଚନା ବିଭାଗରେ ପ୍ରଭାକର ସାହୁ (ଗୁରୁଛାତ୍ର)ଙ୍କର 'ଓଡ଼ିଆ ସାହିତ୍ୟ'ରେ କ୍ଷୁଦ୍ରଗଳ୍ପ ଓ ତହିଁରେ ନିତ୍ୟାନନ୍ଦ ବାବୁଙ୍କ 'ଅଦିନ ବଉଦ' ଏବଂ ଅଧ୍ୟାପକ ପ୍ରସନ୍ନ କୁମାର ମିଶ୍ରଙ୍କ 'ସମାଲୋଚନା (ଖଣ୍ଡିଏ ଚିଠି)' । ଗଳ୍ପ ବିଭାଗରେ

ବଳରାମ ଦାସଙ୍କ 'ମରୁପଥ ଅଭିସାରିକା', ମଂଗଳୁ ଚରଣ ବିଶ୍ୱାଳଙ୍କ 'ନଷ୍ଟ କେଦାର', ଭାସ୍କର ଚନ୍ଦ୍ର ସାମଲଙ୍କ 'ବିଭ୍ରାନ୍ତ', ଦିବାକର ସାହୁଙ୍କ 'ବଧୂପ୍ରାପ୍ତି', ମହାବୀର ପ୍ରତାପ ରାୟଙ୍କ 'କକ୍ଷଚ୍ୟୁତ', କୃଷ୍ଣଚନ୍ଦ୍ର ଭୂୟାଁଙ୍କ 'ପଥ ଓ ପାଥେୟ', ଏକାଦଶୀ ନାୟକଙ୍କ 'ଗପ ନୁହେଁ' । ଆଭାସ ଚିତ୍ରରେ ମଧୁସୂଦନ ସୂତାରଙ୍କ 'ପ୍ରତିଧ୍ୱନି', ହାସ୍ୟରସରେ ବ୍ରଜକିଶୋର ନାୟକଙ୍କ 'ପେଜୁଆ ଭାତ ଓ ମିଠେଇ', ଏକାଙ୍କିକାରେ ନିମାଇଁ ଚରଣ ମହାନ୍ତିଙ୍କ 'ବ୍ୟର୍ଥତୃଷ୍ଣା' ଏବଂ ବିଜ୍ଞାନବର୍ତ୍ତିକାରେ ବିଜ୍ଞାନ ସମ୍ବନ୍ଧୀୟ ବିବିଧ ଉପାଦେୟ କଥା ପ୍ରକାଶ ପାଇଥିଲା ।

ସୁଶୋଭିତ ରୁଚିପୂର୍ଣ୍ଣ ପ୍ରଚ୍ଛଦ ହୋଇନଥିଲେ ମଧ୍ୟ ବହୁ ତରୁଣ ଓ ଆଜିର ଯଶସ୍ୱୀ ଲେଖକମାନଙ୍କ ଉପାଦେୟ ରଚନାବଳୀକୁ ଆଧାର କରି ପତ୍ରିକାଟି ଆତ୍ମପ୍ରକାଶର ଜୟଯାତ୍ରାରେ ପାଦ ଥାପିଥିଲା । ଆଶ୍ଚର୍ଯ୍ୟର ବିଷୟ କେବଳ ଜଣେ ମାତ୍ର ଲେଖିକାଙ୍କୁ ଛାଡ଼ି ଅନ୍ୟ କୌଣସି ଲେଖିକାଙ୍କ ଲେଖା ଏଥିରେ ସ୍ଥାନିତ ହୋଇନଥିଲା । ଯାହା ବି ହେଉ ସାହିତ୍ୟ ପତ୍ରିକା ପ୍ରକାଶନ ଇତିହାସରେ 'କଳ୍ପଲତା' ଗୁଣ୍ଠୁଚିମୂଷାର ଅବଦାନ ଗ୍ରହଣ କରିଥିଲେ ମଧ୍ୟ ଗୁଣାତ୍ମକ ଦୃଷ୍ଟିରୁ ଏହା ଖୁବ୍ ଉଚ୍ଚକୋଟିର ହୋଇପାରିଥିଲା । ଜଗନ୍ନାଥ ପଢ଼ିଆରୀଙ୍କ ଭଳି ଜଣେ ଭାଷାନିପୁଣ ସାହିତ୍ୟିକଙ୍କ ସୁଦକ୍ଷ ନିରପେକ୍ଷ ସଂପାଦନା, ମୌଳିକ ଦୃଷ୍ଟିଭଂଗୀ ଫଳରେ ପତ୍ରିକାଟିର ଅଶେଷ ଶ୍ରୀବୃଦ୍ଧି ସାଧିତ ହୋଇଥିଲା ଏଥିରେ ନିଃସନ୍ଦେହ ।

**ଧାମରା (ଚାନ୍ଦବାଲି) ବନ୍ଦର ଉନ୍ନୟନ ସମ୍ମିଳନୀ :** ୧୯୬୦ ମସିହା ଜାନୁଆରୀ ୨୯ ତାରିଖ, ଶୁକ୍ରବାର, ଚାନ୍ଦବାଲିଠାରେ ଧାମରା (ଚାନ୍ଦବାଲି) ବନ୍ଦର ଉନ୍ନୟନ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀର ଅଭ୍ୟର୍ଥନା ସମିତିର ଉପସଭାପତି ଥିଲେ ଜଗନ୍ନାଥ ପଢ଼ିଆରୀ ମହୋଦୟ । ସଭାପତି ଥିଲେ ଦୟାନିଧି ବଳ, ସଂପାଦକ ଥିଲେ ମନ୍ଦରଧର ସେନାପତି, ଯୁଗ୍ମ ସଂପାଦକ ଥିଲେ କ୍ଷୀରୋଦ ଚନ୍ଦ୍ର ଦେବରାୟଙ୍କ କୋଷାଧ୍ୟକ୍ଷ ଥିଲେ କୃଷ୍ଣଚରଣ ବେହେରା । ସଭ୍ୟମାନଙ୍କ ମଧ୍ୟରେ ପ୍ରଭୁଦୟାଲ ଅଗ୍ରୱାଲା, ପଦ୍ମଚରଣ ମହାନ୍ତି, ଦର୍ପନାରାୟଣ ଜେନା, ଧନେଶ ଚନ୍ଦ୍ର ବେହୁରିଆ, ଅବଦୁଲ ଜଲିଲ, ଏମ୍ ଦାନିଏଲ୍, ରବିନାରାୟଣ ଜେନା (ବି.ଇଡି.), ଗିରିଶ ଚନ୍ଦ୍ର ରାୟ (ଏମ୍.ଏ.), ଗୋବିନ୍ଦ ଚନ୍ଦ୍ର ମହାନ୍ତି, ବୁଦ୍ଧିନାଥ ରଥ, ରାଧାଶ୍ୟାମ

ମହାପାତ୍ର, ରାଧାକିଶନ ମୋର, ଯୋଗେନ୍ଦ୍ର ନାଥ ମହାନ୍ତି, ପ୍ରହ୍ଲାଦ ରାୟ ଅଗ୍ରୱାଲ, ପାନ୍ନାଲାଲ ପନ୍‌ସାରି, ଦିଗଚାନ୍ଦ ରାୟ, ରାମରତନ ନିୟୋଗି, ଅବଦୁଲ କରିମ୍ ସାଲେ ମହମ୍ମଦ, ଶିବଚରଣ ତରାଇ, ଦିବ୍ୟସିଂହ ରାୟ, ଲକ୍ଷ୍ମୀଧର ସାହୁ, ନାରାୟଣ ଚନ୍ଦ୍ର ସାହୁ, ରାମଚନ୍ଦ୍ର ସୁତାର ତଥା ହିନ୍ଦୁସ୍ଥାନ ସିପିଙ୍ଗ୍ କମ୍ପାନୀର ମେନେଜିଙ୍ଗ ଡାଇରେକ୍ଟର ଓ ଅନ୍ୟମାନେ ।

ଉକ୍ତ ସମ୍ମିଳନୀରେ ଚାନ୍ଦବାଲି ତଥା ଆଖପାଖ ଅଞ୍ଚଳବାସୀ, ରାଜ୍ୟର ପ୍ରତିନିଧି ସ୍ଥାନୀୟ ବହୁ ବିଜ୍ଞ ବ୍ୟକ୍ତି ଓ ଅତିଥିବୃନ୍ଦ ଏବଂ ସ୍ଥାନୀୟ ଭଦ୍ରମଣ୍ଡଳୀ ଯୋଗ ଦେଇଥିଲେ । ଏହି ଅପୂର୍ବ ଜନ ସମାଗମରେ ସଭାପତି ଧାମରା (ଚାନ୍ଦବାଲି) ବନ୍ଦର ସଂପର୍କରେ କେତୋଟି ମୁଖ୍ୟ ସମସ୍ୟା ଉପସ୍ଥାପନ କରିଥିଲେ । ସମସ୍ୟାଗୁଡ଼ିକ ମଧ୍ୟରେ ଧାମରା ଚାନ୍ଦବାଲି ପ୍ରାକୃତିକ ବାଣିଜ୍ୟକେନ୍ଦ୍ରର ସଂପ୍ରସାରଣ ଜନିତ ସଂକଟ, ବନ୍ୟାପୀଡ଼ିତ ଅଞ୍ଚଳର ସୁରକ୍ଷା, ଉତ୍ପନ୍ନ ଦ୍ରବ୍ୟର ଗୋଦାମ ସଂରକ୍ଷଣ, ବନ୍ଦରର ସଂପ୍ରସାରଣ, ପଣ୍ୟଦ୍ରବ୍ୟ ରପ୍ତାନିର ସୁବିଧା, ଉପଯୁକ୍ତ ମୂଲ୍ୟରେ ଦ୍ରବ୍ୟର ବିକ୍ରୟ ବ୍ୟବସ୍ଥା, ଜାହାଜ ଚଳାଚଳର ସୁବିଧା, ଚାନ୍ଦବାଲି ନୌକା ନିର୍ମାଣ କାରଖାନା ଓ ପାଲ ପ୍ରସ୍ତୁତ କାରଖାନା ପ୍ରତିଷ୍ଠା, ନାବିକ ପ୍ରଶିକ୍ଷଣ ବିଦ୍ୟାଳୟ (ନେଭାଲ ଟ୍ରେନିଂ ସ୍କୁଲ) ପ୍ରତିଷ୍ଠା, ନଦୀ ଓ ନଦୀମୁହାଣ ସର୍ଭେ ତଥା ଧାମରାଠାରେ ବନ୍ଦରର ଅଭିବୃଦ୍ଧି ପ୍ରସ୍ତାବ ଆଗତ କରାଯାଇଥିଲା । ଯଦ୍ୱାରା ଚାନ୍ଦବାଲି ଧାମରା ବନ୍ଦର ସହିତ ଭାରତବର୍ଷର କଲିକତା ଓ ମାନ୍ଦ୍ରାଜ ସହିତ ପୂର୍ଣ୍ଣ ବାଣିଜ୍ୟିକ ସଂପର୍କ ପ୍ରତିଷ୍ଠା ହେବା ସଂଗେସଂଗେ ଧାମରା (ଚାନ୍ଦବାଲି) ବନ୍ଦରର ବାଣିଜ୍ୟିକ ସମୃଦ୍ଧି ଘଟି ନୌବାଣିଜ୍ୟ କ୍ଷେତ୍ରରେ ଓଡ଼ିଶାର ଗୌରବ ପ୍ରତିଷ୍ଠା କରିବ । ଉକ୍ତ ସମ୍ମିଳନୀର 'ସ୍ୱାଗତ ସଂଗୀତ'ଟି ରଚନା କରିଥିଲେ କବି ଭଗବାନ ନାୟକ ବର୍ମା । ଏହା ଯେଭଳି ପ୍ରାଣସ୍ପର୍ଶୀ ସେଭଳି ଜାତୀୟତାଧର୍ମୀ । ଯଥା -

ଆସ ବାଞ୍ଛିତ ଆସ......

ଘେନ ହେ ଆମର ସଂଚିତ ସୁମନାସ.....

ଆସ ବାଞ୍ଛିତ ଆସ ।

ଚାନ୍ଦବାଲିର ଆକାଶରୁ ଆଜି
ଚାନ୍ଦ ଲୁଚିଛି; ଖାଲି ବାଲିରାଜି
ବୈତରଣୀର ଛନ୍ଦ ହଜିଛି
ଧାମରାରେ ଅଣଚାଶ.... ।୧।
ଆସ ଆଜି ତୁମେ ହେ ପ୍ରିୟ ଅତିଥି
ଖୋଲ ପୁଣି ଏବେ ଏ ମାଟିର ପୋଥି
ଅନ୍ଧାର ତଳୁ ଉଦ୍ଧାର କର
ଏ ଜାତିର ଇତିହାସ..... ।୨।
ଏ ମହାଜାତି ନୂତନ ଜାତକ
ଲେଖିଦିଅ ପୁଣି ହେ ମହାଗଣକ
ଦିଅ ଏ ମାଟିର ଲିଭିଲା ପ୍ରଦୀପେ
ଜଳିବାର ଆଶ୍ୱାସ..... ।୩।
ପୁଣି ଏ ଜାତିର ଆଗୁଆ ବୋଇତ
ସାତ ସମୁଦର କରୁ ନିନାଦିତ
ହେଉ ପୁଣି ଏଥି ବଣିଜଲକ୍ଷ୍ମୀ
ଅର୍ଚ୍ଚନା ଅଧିବାସ...... ।୪।

ଆନନ୍ଦର କଥା ଚାନ୍ଦବାଲିଠାରେ ଆୟୋଜିତ ଉକ୍ତ ସମ୍ମିଳନୀରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ଜଗନ୍ନାଥ ପଡ଼ିଆରୀ ମହୋଦୟ । ଏପରିକି ସଭାପତି ଯେଉଁ ଅଭିଭାଷଣଟି ପାଠ କରିଥିଲେ ତାହା ମଧ୍ୟ ଜଗନ୍ନାଥବାବୁଙ୍କ ଦ୍ୱାରା ସୁଚିନ୍ତିତ ଭାବରେ ପ୍ରସ୍ତୁତ ହୋଇଥିଲା । ଜଣେ ଗୁଣୀ ଓ ବୟୋଜ୍ୟେଷ୍ଠ ବ୍ୟକ୍ତି ଭାବରେ ଦୟାନିଧି ବଳ ସମ୍ମିଳନୀର ସଭାପତି ଆସନ ଅଳଙ୍କୃତ କରି ସମ୍ମିଳନୀକୁ ସଫଳ କରିଥିଲେ ।

ସାହିତ୍ୟ ସାଧନା : ଜଗନ୍ନାଥବାବୁ ଥିଲେ ସାହିତ୍ୟପ୍ରାଣ ବ୍ୟକ୍ତି । ପିଲାଟି ଦିନରୁ ମାତୃଭୂମି ଓ ମାତୃଭାଷା ପ୍ରତି ତାଙ୍କର ଗଭୀର ଅନୁରାଗ ସୃଷ୍ଟି ହୋଇଥିଲା । ତାଙ୍କ ଜନ୍ମମାଟି 'ଗୋଲାଡ଼ିଆ' ବୈତରଣୀର ଅବବାହିକାରେ ଅବସ୍ଥିତ । ବୈତରଣୀର ସର୍ପିଳ ଅବବାହିକାରେ କେତକୀ ଓ ନଳବଣର ପ୍ରାକୃତିକ ଶ୍ରୀଶୋଭା, ବର୍ଷାକାଳୀନ ଶୁଆପକ୍ଷିଆ ସବୁଜକ୍ଷେତର ଲହଲହକା ଶିରାଳ ପବନ, ସକାଳ ଓ ସନ୍ଧ୍ୟାର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ମନୋରମ ଦୃଶ୍ୟାବଳୀ ସନ୍ଧ୍ୟାରେ ନୀଡ଼ବାହୁଡ଼ା ପକ୍ଷୀମାନଙ୍କର କଳରବଧ୍ୱନି ମୁଖରିତ ଏକତ୍ର ସମାବେଶ ତଥା କୁଳୁକୁଳୁ ନାଦିନୀ ଚିରସ୍ରୋତା ନଦୀର ସଂଗୀତ ମୂର୍ଚ୍ଛନା ତାଙ୍କ ଶୈଶବ ଜୀବନକୁ ସୌନ୍ଦର୍ଯ୍ୟ ଚେତନାରେ ମୁଗ୍ଧ କରିଥିଲା । ସେଦିନର ସେହି ଆନମନା କିଶୋରଟି ନୂତନ ସାରସ୍ୱତ ସୃଜନ ପାଇଁ କଲମ ଧରିବାର ଆତ୍ମପ୍ରେରଣା ପାଇ ବିଭିନ୍ନ ଲେଖାଲେଖି କାର୍ଯ୍ୟରେ ନିଜକୁ ଅଭିନିବେଶ କରିଥିଲେ । ଅବଶ୍ୟ ତାଙ୍କର ପ୍ରତିକୂଳ ଆର୍ଥିକ ଅବସ୍ଥା ଏଥିପାଇଁ ଅନ୍ତରାୟ ସୃଷ୍ଟି କରିଥିଲେ ମଧ୍ୟ ସଂପୂର୍ଣ୍ଣ ପ୍ରତିବନ୍ଧକ କରିପାରି ନଥିଲା ।

ତାଙ୍କର କିଶୋର ବେଳାର ସ୍ୱହସ୍ତ ଲିଖିତ ବହୁ କବିତା, ଗଳ୍ପ, ପ୍ରବନ୍ଧ, ଅନୁବାଦ ତଥା ସମାଜ ଓ ସମସ୍ୟାଧର୍ମୀ ବିବିଧ କ୍ଷୁଦ୍ର ରଚନା ଯାହାର ପ୍ରକୃତ ଦୃଷ୍ଟାନ୍ତ । ୧୯୮୨ ମସିହା ପ୍ରଳୟଙ୍କରୀ ବାତ୍ୟା ଓ ବର୍ଷାଜନିତ ଛଣଛପର ଘର ନଷ୍ଟ ହୋଇଯାଇଥିଲା । ଧ୍ୱଂସମୁଖରୁ ଯାହା ବି ଉଦ୍ଧାର କରାଯାଇଛି ସେସବୁ ବିଭିନ୍ନ ରଚନାର ଅଂଶବିଶେଷ । ଯାହାକୁ ଏକତ୍ର ପ୍ରକାଶ କରିବା ମଧ୍ୟ ସମ୍ଭବ ନୁହେଁ । ଜଗନ୍ନାଥବାବୁ ମଧ୍ୟ ଜୀବଦ୍ଦଶାରେ ପୁସ୍ତକ ଆକାରରେ କୌଣସି ରଚନା ପ୍ରକାଶ କରିନଥିଲେ । ହୁଏତ ତାଙ୍କର ଆର୍ଥିକ ଅବସ୍ଥା ଏ ଦିଗରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା କିମ୍ବା ସେ ନିଜକୁ ଜଣେ ଅକିଞ୍ଚନ ଲେଖକ ଭାବି ପ୍ରକାଶ ବିମୁଖ ମନୋଭାବ ପୋଷଣ କରି ଏଥିପ୍ରତି ଗୁରୁତ୍ୱ ଦେଇ ନଥିଲେ । ତାଙ୍କର ପରିବାରବର୍ଗ ମଧ୍ୟ ଏ ଦିଗରେ ଉଦାସୀନ ରହିଯିବା ଫଳରେ ତାଙ୍କଭଳି ସାରସ୍ୱତ ପ୍ରତିଭା ଆଜି ପର୍ଯ୍ୟନ୍ତ ଲୋକଲୋଚନର ଅନ୍ତରାଳରେ ରହିଗଲେ । ଅଥଚ ପତ୍ରପତ୍ରିକାରେ ଯେଉଁ କେତୋଟି ଗଳ୍ପ, କବିତା ଓ ପ୍ରବନ୍ଧାଦି ପ୍ରକାଶ ପାଇଥିଲା, ସେତେବେଳେ ପାଠକ ମହଲରେ ତାହା ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା । ଜଣେ ପ୍ରତିଭାଶାଳୀ ଗାଳ୍ପିକ ଭାବରେ ତାଙ୍କର ସୁନାମ ବ୍ୟାପି ଯାଇଥିଲା । ସମକାଳୀନ ସହକାର, ନବଭାରତ ଓ ସମସାମୟିକ ପତ୍ରପତ୍ରିକାରେ

ଯେଉଁ କେତୋଟି ଲେଖା ପ୍ରକାଶ ପାଇଥିଲା, ସେସବୁ ସଂଖ୍ୟା ଆଜି ବି ଦୁର୍ଲଭ । ଫଳରେ ତାଙ୍କ ସାରସ୍ୱତ ପ୍ରତିଭାକୁ ଅତୀତ ପୃଷ୍ଠାରୁ ସଂଗ୍ରହ କରିବା ଖୁବ୍ ଆୟାସସାଧ୍ୟ ହୋଇପଡ଼ିଛି । ଜଣେ ଗାଳ୍ପିକ ଭାବରେ ପଡ଼ିଆରୀବାବୁଙ୍କ ପ୍ରତିଷ୍ଠାକୁ ଏବଂ ତାଙ୍କ ରଚିତ 'ଭୁଲ୍' ଗଳ୍ପକୁ ଔପନ୍ୟାସିକ, ଗାଳ୍ପିକ ରାଜକିଶୋର ପଟ୍ଟନାୟକ ଖୁବ୍ ତାରିଫ୍ କରିଥିଲେ । ଗାଳ୍ପିକ ପଟ୍ଟନାୟକ ତାଙ୍କ 'ଶାଳଗ୍ରାମ' ଗଳ୍ପ ପୁସ୍ତକରେ ଜଗନ୍ନାଥ ପଡ଼ିଆରୀଙ୍କ ନାମକୁ ସର୍ବାଗ୍ର ଏବଂ ସମକାଳୀନ ଲେଖକ ଓ ସେମାନଙ୍କ ରଚନା ବିଷୟରେ ଉଲ୍ଲେଖ କରିଥିଲେ -

ଶ୍ରୀଯୁକ୍ତ ଜଗନ୍ନାଥ ପଡ଼ିଆରୀ

ଶ୍ରୀଯୁକ୍ତ ନରସିଂହ ଚରଣ ଦାସ

ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦ

ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମୁଖାର୍ଜୀ

ଶ୍ରୀଯୁକ୍ତ ସଦାଶିବ ମିଶ୍ର

ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଲ

ଶ୍ରୀଯୁକ୍ତ ହରିହର ମିଶ୍ର

ମାନନୀୟେଷୁ

କିଏ ବଡ଼ କିଏ ସାନ ? ମୁଁ କହିପାରିବି ନାହିଁ । ଆପଣମାନଙ୍କର କ୍ଷୁଦ୍ରଗଳ୍ପ ଏବେବି ଏଇ ଅକିଞ୍ଚନର ମନରେ ଅଲିଭା ଅକ୍ଷରରେ ଛାପି ହୋଇରହିଛି । ଭୁଲ୍, ଝଡ଼, ହୃଦୟର ବନ୍ଧନ, ଘରିଅଙ୍କ, ବାଘ ଓ ମାୟା ଆଦି ଗଳ୍ପ ଗୋଟିଏ ଲେଖିପାରିଲେ ନିଜକୁ ଧନ୍ୟ ମନେକରନ୍ତି ।

ଗତ ପଚିଶବର୍ଷ ଭିତରେ ଆପଣମାନେ ଗଳ୍ପ-ସାହିତ୍ୟ ପ୍ରତି ମନଦେଇ ନାହାଁନ୍ତି । ଅଳ୍ପସ୍ୱଳ୍ପ ଯାହା କରି ଯାଇଥିଲେ ସେତକ ଏବେଯାଏ ବି ନିଶାଣ ଚିହ୍ନପରି ରହିଛି । ଏହି ବର୍ଣ୍ଣାନୁକ୍ରମ ତାଲିକାକୁ ସତରେ କ'ଣ ଆଜିର ପ୍ରବନ୍ଧ ଓ ପ୍ରତାପୀ ଗଳ୍ପ ଲେଖକ ଚିହ୍ନି ପାରିବ ?

ଆପଣମାନଙ୍କର ପାଦତଳେ ଏହି 'ଶାଳଗ୍ରାମ'ଟିକୁ ରଖି ପ୍ରଣାମ ଜଣାଉଛି ।

ଶାନ୍ତିନିବାସ

ରାଜକିଶୋର ପଟ୍ଟନାୟକ

ପୁରୀଘାଟ, କଟକ, ତା୧୦।୪।୫୮

**ସାରସ୍ୱତ ସାହଚର୍ଯ୍ୟ :** ଅବସର ଜୀବନରେ ସେ ପ୍ରାୟ ଉପରଓଳି ଚାନ୍ଦବାଲି ବଜାର ଆସୁଥିଲେ । ତାଙ୍କର ସାହିତ୍ୟିକ ଆଡ୍ଡାସ୍ଥଳୀ ଥିଲା ବଡ଼ବଜାର ଉପେନ୍ଦ୍ର ସାମଲଙ୍କ ଘରେ । ଜଗନ୍ନାଥବାବୁ ଥିଲେ ଉପେନ୍ଦ୍ର ସାମଲଙ୍କ ଘରୋଇ ଶିକ୍ଷକ । ତା'ଛଡ଼ା ଉପେନ୍ଦ୍ରବାବୁ ଥିଲେ ଜଣେ ସାହିତ୍ୟିକ । କଟକରୁ ପ୍ରକାଶିତ 'ଆରତି' (୧୯୪୧) ପତ୍ରିକାର ମଧ ସେ ସମ୍ପାଦନା ଦାୟିତ୍ୱ ବହନ କରିଥିଲେ । 'ଆରତି' ପତ୍ରିକାଟି ଓଡ଼ିଶାରେ ବେଶ୍ ପାଠକୀୟ ଆଦୃତି ଲାଭ କରିପାରିଥିଲା । ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, କିଶୋରୀ ଚରଣ ଦାସ, ମନମୋହନ ମିଶ୍ର, ବୈକୁଣ୍ଠନାଥ ପଟ୍ଟନାୟକ, ହେମଲତା ମାନସିଂହ, ଜ୍ଞାନୀନ୍ଦ୍ର ବର୍ମା, ସଚ୍ଚିଦାନନ୍ଦ ରାଉତରାୟ, ବିଦ୍ୟାଧର ବର୍ମା, କାଳିନ୍ଦୀ ପାଣିଗ୍ରାହୀ, କ୍ଷିତୀଶ ଚନ୍ଦ୍ର ଦେ, ବିପିନ ବିହାରୀ ରାୟ, ଗୋଦାବରୀଶ ମହାପାତ୍ର, ପ୍ରାଣବନ୍ଧୁ କର, ବିନୋଦ ଚନ୍ଦ୍ର ନାୟକ, ରଘୁ ଦାସ, ହୁମାୟନ କବୀର ପ୍ରଭୃତି ଲେଖକମାନଙ୍କ ଦ୍ୱାରା ପତ୍ରିକାର ଶ୍ରୀବୃଦ୍ଧି ହୋଇଥିଲା । 'ଆରତି' ପତ୍ରିକାର ପ୍ରଥମବର୍ଷ ସଂଖ୍ୟାଗୁଡ଼ିକରେ କିଶୋରୀ ଚରଣ ଦାସଙ୍କ ବାସିଫୁଲ ଗଳ୍ପ, ସଚ୍ଚିଦାନନ୍ଦ ରାଉତରାୟଙ୍କ 'ମଶାଣିଫୁଲ', 'ମଲାକଇଁ', 'ଅନ୍ଧାରୁଆ', 'ମାଟିର ତାଜ', 'ଗୋଧୂଳିର ଆତ୍ମା', 'ଅମାବାସ୍ୟାର ଅର୍ଘ୍ୟ', 'ହାତ', 'ସହସ୍ର ଶଯ୍ୟାର ନାୟିକା ଗଳ୍ପ', କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ଧୂଳି', 'ପାହାଡ଼ତଳେ' ଗଳ୍ପ ଓ ଓଡ଼ିଶାର ମହାଯୁଦ୍ଧ ପ୍ରବନ୍ଧ, ପୁଲିନ୍ ବିହାରୀ ରାୟଙ୍କ 'କଇଁ ମହାତ୍ମ୍ୟ' ଗଳ୍ପ ଓ 'ମା' ପ୍ରବନ୍ଧ, ଗୋଦାବରୀଶ ମହାପାତ୍ରଙ୍କ 'ଜଡ଼ା କୁରୁପାର ପ୍ରେମ' ଗଳ୍ପ, ପ୍ରାଣବନ୍ଧୁ କରଙ୍କ 'ଝଡ଼' 'ଶେଷ ବସନ୍ତ' ଗଳ୍ପ, ହେମଲତା ମାନସିଂହଙ୍କର 'କଖାରୁ ଗଛ' ଗଳ୍ପ, ମାୟାଧର ମାନସିଂହଙ୍କ 'ଏ ଦୂର-ଦେଶୀ', 'ବୋଇତ ବନ୍ଦାଣ', 'ତିରସ୍କାରିଣୀ', 'ଦାନ', 'ଜେମା' କବିତା ଏବଂ 'ୟୁରୋପରେ ଭାରତୀୟ ଚିନ୍ତାଧାରା', 'ଶ୍ରୀକୃଷ୍ଣ' ଓ 'କଲେଜ ଛାତ୍ର', କୁନ୍ତଳାକୁମାରୀ ପ୍ରବନ୍ଧ, ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ବାସ୍ତବପ୍ରୀତି', 'ପ୍ରଣୟିନୀର ଆତ୍ମପ୍ରକାଶ', 'ଗାୟକ ଓ କବି', 'ବାସନସଜ୍ଜା', 'ସ୍ମରଣ', 'ପଥ ସଂଗୀତ', 'ହରିଜନ'(କଥାଗୀତି) 'ଶ୍ୱାନସୃଷ୍ଟି' କବିତା, ଜ୍ଞାନୀନ୍ଦ୍ର

ବର୍ମାଙ୍କ ଅତିହୀନ ଗତି ଚିହ୍ନରାଶି ଓ ମାମଲତକାର ପ୍ରବନ୍ଧ, କ୍ଷିତୀଶଚନ୍ଦ୍ର ଦେଙ୍କ ମାନସୀ, କବି ଓ କବିତା, ଜାଗରଣୀ, କଳା ଓ ନୀତି, ପ୍ରବନ୍ଧ, ବିନୋଦ ଚନ୍ଦ୍ର ନାୟକଙ୍କ 'ମାନୀ', 'ଅଗ୍ରଦୂତ' କବିତା, ରଘୁଦାସଙ୍କ 'କୁହୁକିନୀ' କବିତା, ଅଧ୍ୟାପକ ହୁମାୟୁନ କବୀରଙ୍କ ବିପ୍ଳବ କବିତା, ବିଦ୍ୟାଧର ବର୍ମାଙ୍କ 'ଶିଳ୍ପରେ ନଗ୍ନତା', 'ଚିତ୍ରଶିଳ୍ପର ଆଦର୍ଶ', ପ୍ରବନ୍ଧ ପ୍ରକାଶ ପାଇଥିଲା । ଉପରୋକ୍ତ ଲେଖକମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ମଧ୍ୟରେ ପ୍ରାଣକୃଷ୍ଣ ସାମଲ, ରାଜରାଣୀ ଦେବୀ, ଚାରୁଲତା ଦେବୀ, ବସନ୍ତ କୁମାର ବେହୁରା, କୁମାର ଲକ୍ଷ୍ମୀନାରାୟଣ ମହାନ୍ତି, କୃଷ୍ଣମୋହନ ମହାନ୍ତି, ଜୈନେନ୍ଦ୍ର କୁମାର, ସୀତାଦେବୀ, ବୀରେନ୍ଦ୍ର ମୋହନ ପଟ୍ଟନାୟକ, ହରିଶଚନ୍ଦ୍ର ରାୟ, କୁଳମଣି ମିଶ୍ର, ତପତୀ ରାୟ, ନିକୁଞ୍ଜ କିଶୋର ଦାସ, ବସନ୍ତ କୁମାର ମହାନ୍ତି, ଯୁବନାଶ୍ୱ, ମନମୋହନ ମିଶ୍ର, ସୁପ୍ରଭା କର, କହ୍ନାଇ ଚରଣ ସାମଲଙ୍କ ଗଳ୍ପ, କବିତା, ପ୍ରବନ୍ଧ ଓ ଏକାଙ୍କିକା ଦ୍ୱାରା ପତ୍ରିକାଟି 'ସମୃଦ୍ଧ ହୋଇଥିଲା ।

ଉକ୍ତ ପତ୍ରିକାରେ ଉପେନ୍ଦ୍ର ସାମଲଙ୍କର 'ଛନ୍ଦ', 'ବିଦାୟ ଗୌରବ' କବିତା ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ ବାଲେଶ୍ୱର ଟାଉନ୍ ପ୍ରେସ୍ ପ୍ରକାଶିତ ଏବଂ ମିହିର କୁମାର ଆଚାର୍ଯ୍ୟଙ୍କ ସମ୍ପାଦିତ 'ସମ୍ବାଦ ବାହିକା' (ନୂତନପ୍ରସ୍ଥ - ୧୯୭୦)ରେ ଉପେନ୍ଦ୍ର ବାବୁଙ୍କ 'ଚାନ୍ଦବାଲିର ଅତୀତ ବର୍ତ୍ତମାନ ଓ ଭବିଷ୍ୟତ', 'ଚାନ୍ଦବାଲି ଖାସମାହାଲ ନିୟମର ପରିବର୍ତ୍ତନ ହେଉ', 'କଉଡ଼ିଆ ପୋଲ' ଆଦି ଆଞ୍ଚଳିକ ସମସ୍ୟାଧର୍ମୀ ଲେଖାମାନ ପ୍ରକାଶ ପାଇଥିଲା । ଉପେନ୍ଦ୍ରବାବୁଙ୍କ ଓଡ଼ିଆଭାଷା ସାହିତ୍ୟ ପ୍ରତି ଅନୁରାଗ ଶିକ୍ଷକ ଜଗନ୍ନାଥବାବୁଙ୍କୁ ଖୁବ୍ ଆନନ୍ଦ ଦେଇଥିଲା । ସାମଲବାବୁ କଟକରେ ଅଧ୍ୟୟନ ଓ ଅବସ୍ଥାନ କାଳରେ 'ଆରତି' ପତ୍ରିକା ସମ୍ପାଦନା ଦାୟିତ୍ୱ ବହନ କରିଥିଲେ । ଉପେନ୍ଦ୍ର ସାମଲଙ୍କ ଭଳି ଜଣେ ଗୁରୁଭକ୍ତ ବିନୟୀ ଛାତ୍ରଙ୍କର ଏଭଳି ଦାୟିତ୍ୱ ଗ୍ରହଣ ଜଗନ୍ନାଥବାବୁଙ୍କ ମନରେ ଗର୍ବ ଓ ଗୌରବ ସଞ୍ଚାର କରିଥିଲା । 'ଆରତି' ପତ୍ରିକା ସମ୍ପାଦନା ଦାୟିତ୍ୱ ବହନ ଏବଂ ସୁସମ୍ପାଦନା ପାଇଁ ମାୟାଧର ମାନସିଂହ ତାଙ୍କୁ ଖୁବ୍ ପ୍ରଶଂସା କରି ଲେଖିଥିଲେ, "କିଏ ସେହି ଚାନ୍ଦବାଲିର ଧନୀଯୁବକ ଉପେନ୍ଦ୍ର ସାମଲ ? ଯାହାଙ୍କ ଉଦ୍ୟମ ଓ ସୁସମ୍ପାଦନାରେ 'ଆରତି' ପତ୍ରିକାର ଶ୍ରୀବୃଦ୍ଧି ସାଧିତ ହୋଇଥିଲା । ଓଡ଼ିଶାବାସୀଙ୍କ ଠାରେ ସେ ମଧ୍ୟ ଧନ୍ୟବାଦର ପାତ୍ର ।" ଇତ୍ୟବସରରେ ଗୁରୁଭକ୍ତ ଛାତ୍ର, ଉପେନ୍ଦ୍ର ସାମଲଙ୍କ ମୃତ୍ୟୁ (୧୯୮୫ ମସିହା, ଅକ୍ଟୋବର ୧୭ ତାରିଖ) ଖବର ଜଗନ୍ନାଥବାବୁଙ୍କ ପ୍ରାଣରେ ବଡ଼ ଆଘାତ ଦେଇଥିଲା । ପରସ୍ପର ସାରସ୍ୱତ

ବନ୍ଧନର ଚିର ଅବସାନ ଘଟିଥିଲା । ଉପେନ୍ଦ୍ରବାବୁ କଟକରେ ଅବସ୍ଥାନ କାଳରେ ଜଗନ୍ନାଥ ସାର୍‌ଙ୍କ ସହିତ ସେ ବରାବର ଚିଠିପତ୍ରର ସଂପର୍କ ରଖୁଥିଲେ ଏବଂ ବିଭିନ୍ନ କ୍ଷେତ୍ରରେ ସତ୍ ପରାମର୍ଶ ଲୋଡୁଥିଲେ ।

'ଆରତି' ପତ୍ରିକାର ପ୍ରକାଶ ବନ୍ଦହେବା ଫଳରେ ଉପେନ୍ଦ୍ରବାବୁ ଜନ୍ମମାଟି ଚାନ୍ଦବାଲିକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଚାନ୍ଦବାଲି ବନ୍ଦର ତଥା ଏ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତିମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଚାନ୍ଦବାଲି ଠାରେ ସର୍ବପ୍ରଥମେ କଲେଜ ପ୍ରତିଷ୍ଠା କରିବା କ୍ଷେତ୍ରରେ ତାଙ୍କର ବିଶେଷ ଭୂମିକା ଥିଲା । ଉକ୍ତ କଲେଜଟି ପ୍ରାଥମିକ ଅବସ୍ଥାରେ କିଛିବର୍ଷ ଚାଲି ବନ୍ଦ ହୋଇଯାଇଥିଲା । ମାତ୍ର ଆଜିର ଚାନ୍ଦବାଲି କଲେଜ ପରବର୍ତ୍ତୀ ଉଦ୍ୟମର ପ୍ରତୀକ ।

ପଡ଼ିଆରୀବାବୁ ଉପେନ୍ଦ୍ର ସାମଲଙ୍କ ଘରକୁ ପ୍ରାୟ ନିୟମିତ ଉପରଓଳି ଆସୁଥିଲେ । ପାଖ ଗାଁରୁ ଚାଲିଚାଲି ଆସି ବଡ଼ବଜାରରେ ଅବସ୍ଥିତ ଉପେନ୍ଦ୍ର ବାବୁଙ୍କ ଘରେ ପହଞ୍ଚୁଥିଲେ । ସାମଲବାବୁ ମଧ୍ୟ ଗୁରୁଙ୍କୁ ଉପଯୁକ୍ତ ସମ୍ମାନ ଓ ଭକ୍ତି କରୁଥିଲେ । ଦୁହେଁ ବହୁ ସମୟଧରି ସାହିତ୍ୟ ବିଷୟରେ ନାନାକଥା ଆଲୋଚନା କରୁଥିଲେ । ଏଥିସହିତ ଚାନ୍ଦବାଲି ଅଞ୍ଚଳର ବିବିଧ ସମସ୍ୟା କଥା ବିଚାରକରି ସମାଧାନମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରୁଥିଲେ । ଉଭୟ ଗୁରୁ ଛାତ୍ରଙ୍କର ମହାମିଳନ ମଣିକାଞ୍ଚନର ସଂଯୋଗ ଭଳି ଚାନ୍ଦବାଲି ଅଞ୍ଚଳର ବହୁ ହିତସାଧନ କରିଥିଲା । ଉପେନ୍ଦ୍ରବାବୁ ଜଗନ୍ନାଥବାବୁଙ୍କ କଥାକୁ ଗୁରୁଙ୍କର ଉପଦେଶ ଓ ସତ୍ ପରାମର୍ଶ ଭଳି ଆନ୍ତରିକତାର ସହିତ ଗ୍ରହଣ କରୁଥିଲେ । ସେମାନଙ୍କ ପବିତ୍ର ବନ୍ଧନ ଜୀବଦଶା ପର୍ଯ୍ୟନ୍ତ ଅତୁଟ ରହିଥିଲା ।

**ଅବସର ଜୀବନ :** ୧୯୭୩ ମସିହାରେ ସେ ବାଳିକା ହାଇସ୍କୁଲରୁ ଅବସର ନେଇ ସ୍ଥାନୀୟ ଆର.ସି.ଏମ୍.ଏସ୍.ର ମେନେଜର ଭାବରେ ନିଯୁକ୍ତି ପାଇଥିଲେ । ଏଥିରେ ଦୀର୍ଘ ପାଞ୍ଚବର୍ଷ କାଳ ସୁଚାରୁରୂପେ କାର୍ଯ୍ୟ ସଂପାଦନ କରି ୧୯୮୦ ମସିହାରେ ଶାରୀରିକ ଅସୁସ୍ଥତା ପାଇଁ କର୍ମ ତ୍ୟାଗ କରିଥିଲେ । ଦୈନନ୍ଦିନ କର୍ମସୂଚୀ ବିଷୟରେ ତାଙ୍କ ସ୍ୱହସ୍ତ ଲିଖିତ ଏକ କାଗଜରେ ଉଲ୍ଲେଖ ଅଛି –

"ଶଯ୍ୟାତ୍ୟାଗ – ସକାଳ ୬ଟା, ଗୋରୁଗାଈଙ୍କ ଖବର, ବାଡ଼ିବଗିଚା କାମ, ଦାନ୍ତଘଷା ଝାଡ଼ା ଝପଟ, ଜଳଖିଆ ୯ଟା ମଧ୍ୟରେ, ଲେଖାପଢ଼ା ୧୨ଟା ପର୍ଯ୍ୟନ୍ତ,

ସ୍ନାନ ଓ ଠାକୁରପୂଜା, ମଧ୍ୟାହ୍ନ ଭୋଜନ ୧ଟା ମଧ୍ୟରେ, ଖବରକାଗଜ ଓ ବିଶ୍ରାମ ୩ଟା ପର୍ଯ୍ୟନ୍ତ, ବାଡ଼ିବଗିଚା କାମ ବା ଚନ୍ଦବାଲି ଯିବା ଓ ବାହାର କାମ ୬ଟା ପର୍ଯ୍ୟନ୍ତ, ୭ଟାରୁ ୧୦ଟା ଲେଖାପଢ଼ା ।”

ଏଥିରୁ ସ୍ପଷ୍ଟ ଜଣାଯାଏ, ତାଙ୍କର ଅବସର ଜୀବନ ମଧ୍ୟ ନିୟମ ନିର୍ଘଣ୍ଟ ମଧ୍ୟରେ ଶୃଙ୍ଖଳିତ ଥିଲା । ବାଡ଼ିବଗିଚାର କର୍ମ ସେ ପ୍ରାୟ ଦୁଇଓଳି କରୁଥିଲେ । ନିଜେ ସର୍ବାଗ୍ରେ ଗାଈଗୋରୁଙ୍କ ଖବର ବୁଝୁଥିଲେ । ଦୁଃଖର ବିଷୟ, ତାଙ୍କର ‘ଦିନଲିପି’ (ଡାଏରୀ) ଓ ଅନ୍ୟାନ୍ୟ ସ୍ୱହସ୍ତ ଲିଖିତ ସମସ୍ତ ପାଣ୍ଡୁଲିପି ୧୯୮୨ ମସିହା ପ୍ରଳୟ ବାତ୍ୟାରେ ନଷ୍ଟ ହୋଇଯାଇଥିଲା । ଯେଉଁଥିରୁ ତାଙ୍କ ଜୀବନର ଅନେକ କଥା ତଥା ବିଭିନ୍ନ ଘଟଣା ଜଣା ପଡ଼ିଥାନ୍ତା । ସେହି ନଷ୍ଟଭ୍ରଷ୍ଟ ‘ଦିନଲିପି’ର କିଛିକିଛି ଅଂଶ ରହିଛି । ସେସବୁ ମଧ୍ୟ ସଯତ୍ନ ସଂରକ୍ଷଣ ଅଭାବରୁ ନଷ୍ଟ ହୋଇଯାଇଛି । କାରଣ ସେ ଦିନ ୯ଟାରୁ ୧୨ଟା ଏବଂ ରାତ୍ରି ୭ଟାରୁ ୧୦ଟା ଦିନକୁ ପ୍ରାୟ ୬ଘଣ୍ଟା କାଳ ଲେଖାଲେଖି ଓ ପଢ଼ାପଢ଼ିରେ ଅଭିନିବିଷ୍ଟ ଥିଲେ । ଶେଷପର୍ଯ୍ୟନ୍ତ ତାଙ୍କର କଲମ ଧରିବାର ଶକ୍ତିଥିଲା ଏବଂ ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତି ମଧ୍ୟ ଅତୁଟ ରହିଥିଲା ।

ଓଡ଼ିଆ ଭାଷାକୋଷ” ପ୍ରସଙ୍ଗ :

ଜଗନ୍ନାଥବାବୁ ୧୯୬୮ ମସିହାରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସମ୍ପାଦିତ ‘ଓଡ଼ିଆ ଭାଷାକୋଷ’ର ପୂର୍ଣ୍ଣାଙ୍ଗ ସେଟ୍‌ଟି କ୍ରୟ କରିଥିଲେ । ଜଣେ ଲେଖକ ତଥା ଓଡ଼ିଆ ମାତୃଭାଷା ସାହିତ୍ୟପ୍ରେମୀ ଭାବରେ ଏଭଳି ଉପାଦେୟ ପୁସ୍ତକଟିକୁ ସଂଗ୍ରହ କରିବାକୁ ଗଭୀର ଆନ୍ତରିକତା ପ୍ରକାଶ କରିଥିଲେ । ମାତ୍ର ଚାକିରିରୁ ଅବସର ତଥା ପିଲାମାନଙ୍କ ଉଚ୍ଚଶିକ୍ଷା ପାଇଁ ଆର୍ଥିକ ପ୍ରତିକୂଳତା ମଧ୍ୟରେ ଗତି କରୁଥିଲେ । ଶେଷରେ ନିଷ୍ପତ୍ତି ନେଇଥିଲେ ଭାଷାକୋଷ ସେଟ୍‌ଟିକୁ ବିକ୍ରି କରିଦେବା ପାଇଁ । ଅନ୍ତତଃ କିଛି ଅର୍ଥ ତାଙ୍କ ଅଭାବ ପୂରଣରେ ସହାୟକ ହୋଇପାରିବ । ଏଥିପାଇଁ ଜଗନ୍ନାଥବାବୁ ତାଙ୍କର ପ୍ରିୟ ପରିଚିତ ତଥା ଅଞ୍ଚଳବାସୀ ଦୈନିକ ‘ସମାଜ’ର ମୁଖ୍ୟ ପରିଚାଳକ ଫକୀର ଚରଣ ଦାସଙ୍କୁ ଏ ବିଷୟ ଜଣାଇଥିଲେ । ଫକୀରବାବୁ କେତେକ ପୁସ୍ତକ ବିକ୍ରେତାଙ୍କୁ ଭାଷାକୋଷ ବିକ୍ରୟ ବାବଦରେ ଜଣାଇଥିଲେ ମାତ୍ର କାହାରିଠାରୁ ସନ୍ତୋଷଜନକ ଉତ୍ତର ପାଇନଥିଲେ । ଏମିତିକି ଏକହଜାର ଟଙ୍କାରେ ପୂର୍ଣ୍ଣାଙ୍ଗ ସେଟ୍‌ଟିକୁ ବିକ୍ରି କରିଦେବାକୁ ମଧ୍ୟ ରାଜି ହୋଇଥିଲେ । ଏ ବିଷୟରେ ସେ

ଜଗନ୍ନାଥବାବୁଙ୍କୁ ତା.୨୫.୧୦.୧୯୬୯ରେ ପତ୍ରାଳାପ କରିଥିଲେ । ଯଦି ଗ୍ରାହକ ନ ମିଳନ୍ତି ତା'ହେଲେ ଟ.୨୦ଙ୍କା ଖର୍ଚ୍ଚକରି ସମାଜରେ ବିଜ୍ଞାପନ ଦେବାକୁ ମଧ୍ୟ ପ୍ରସ୍ତାବ ଦେଇଥିଲେ ।

ଏକଥା ଶ୍ରୀଯୁକ୍ତ ପଞ୍ଚାନନ ପଲାଇ ତତ୍କାଳୀନ ପ୍ରଧାନଶିକ୍ଷକ ମତୋହାଇସ୍କୁଲ୍‌ର ଜାଣିପାରିଲେ କୌଣସି ସୂତ୍ରରୁ । ପଞ୍ଚାନନବାବୁ ଜଗନ୍ନାଥବାବୁଙ୍କର ଅନ୍ତରଙ୍ଗ ବନ୍ଧୁ ତଥା ଆତ୍ମୀୟ ଥିଲେ । ସ୍କୁଲ୍ ଲାଇବ୍ରେରୀ ପାଇଁ ଉପାଦେୟ ପୁସ୍ତକସବୁ କ୍ରୟ କରିବା ତାଙ୍କର ବଡ଼ ସଉକ ଥିଲା । ନିଜେ ମଧ୍ୟ ଜଣେ ଅଭିନିବିଷ୍ଟ ପାଠକ ଥିଲେ । ପଢ଼ିଆରୀବାବୁଙ୍କୁ ସାକ୍ଷାତ୍ କରି ମତୋ ସ୍କୁଲ୍ ପାଇଁ 'ଭାଷାକୋଷ' ସେଟ୍‌ଟି ଏକହଜାର ଟଙ୍କାରେ କିଣିବେ ବୋଲି ଜଣାଇବାରୁ ଜଗନ୍ନାଥବାବୁ ଆଗ୍ରହ ସହିତ ସମ୍ମତି ପ୍ରକାଶ କଲେ । ଏ ପ୍ରସଙ୍ଗରେ ସେ ପ୍ରଧାନଶିକ୍ଷକ ପଲେଇବାବୁଙ୍କ ସହିତ ଏକାଧିକ ପତ୍ରାଳାପ ମଧ୍ୟ କରିଥିଲେ । 'ଭାଷାକୋଷ' ସେଟ୍‌ଟି ଭୁବନେଶ୍ୱରରେ ତାଙ୍କର କେହି ବିଶ୍ୱସ୍ତଙ୍କ ପାଖରେ ରଖିଥିଲେ । ପଢ଼ିଆରୀବାବୁ ପ୍ରଧାନଶିକ୍ଷକ ପଞ୍ଚାନନ ପଲାଇଙ୍କୁ ତା'.୨୪.୦୭.୭୨ରେ ଚାନ୍ଦବାଲିରୁ ଯେଉଁ ପତ୍ରଟି ଲେଖିଥିଲେ, ସେଥିରେ ଉଲ୍ଲେଖ ଥିଲା, Dear Panchanan Babu, Asfinalised between you and me. I am leaving for Bhubaneswar very shortly with a determination to get back the 'Bhashakosh' for you school. ପୁନଶ୍ଚ ଏ ସଂକ୍ରାନ୍ତରେ ସେ ପଲାଇ ବାବୁଙ୍କୁ ତା.୦୨.୦୮.୭୨, ୧୭.୦୮.୭୨ ଏବଂ ୧୯.୦୯.୭୨ରେ ତିନିଖଣ୍ଡ ଚିଠି ମଧ୍ୟ ଲେଖିଛନ୍ତି । ତା.୦୨/୮ ଚିଠିରେ କାର୍ଯ୍ୟବଂଶତ ଭୁବନେଶ୍ୱର ନ ଯାଇପାରିବା କଥା ଉଲ୍ଲେଖ କରିଥିଲେ । ମାତ୍ର ତା.୧୭.୦୮.୭୨ରିଖ ଚିଠିରେ 'ଭାଷାକୋଷ' ଚାନ୍ଦବାଲିରେ ଆଣି ରଖିବା ବିଷୟ ଉଲ୍ଲେଖ କରି ଲେଖିଥିଲେ, You will be glard to learn that I have brought back the 'Bhasakos'. It is now with me at chandabali. Please arrange to take delivery of the same at your earliest convenience." ପୁନଶ୍ଚ ତା.୧୯.୦୯.୭୨ ଚିଠିରେ ସେ ପ୍ରଧାନଶିକ୍ଷକଙ୍କୁ ଲେଖିଥିଲେ, Received your card dt. 18.09.72 I am starting for Bhubaneswar on 21.09.72 with Bishnupriya to get her admitted into the training college there for B.Ed. I shall

comeback by the 24th or 25th. Be not troubled, please arrange payment towards the first week of the next month."

ଏ ବିଷୟରେ ଅବସରପ୍ରାପ୍ତ ମତୋ ଉଚ୍ଚବିଦ୍ୟାଳୟର ତତ୍‌କାଳୀନ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ପଞ୍ଚାନନ ପଲାଇ କହନ୍ତି, "ଜଗନ୍ନାଥବାବୁ ଦାରିଦ୍ର୍ୟର କଷାଘାତରେ ଜର୍ଜ୍ଜରିତ ହୋଇ ନିଜେ କିଣିଥିବା ଭାଷାକୋଷ ବିକ୍ରିକରି କିଛି ଅର୍ଥ ପାଇବା ଆଶାରେ ତାଙ୍କର ପ୍ରିୟ ଛାତ୍ର କବି ବିନୋଦ ନାୟକ ଓ 'ସମାଜ'ର ମୁଖ୍ୟ ପରିଚାଳକ ଶ୍ରୀ ଫକୀର ଚରଣ ଦାସଙ୍କ ନିକଟକୁ ଚିଠି ଲେଖିଛନ୍ତି । ଭାଷାକୋଷର ପଞ୍ଚମଖଣ୍ଡ ଉଈଙ୍କ ଦ୍ୱାରା ନଷ୍ଟ ହୋଇଯାଇଥିବାରୁ ସେ ଖଣ୍ଡକ ବଦଳାଇ ଦେଲେ ଟ.୧୫୦୦ଙ୍କା ନଚେତ ଟ.୧୨୦୦ଙ୍କା ପାଇବାର ଖବର ବୋଧହୁଏ ନାୟକବାବୁଙ୍କ ଠାରୁ ପାଇଛନ୍ତି । କିନ୍ତୁ ଦୃଢ଼ମନା ପଢ଼ିଆରୀବାବୁ ସ୍ଥିରକଲେ ଯେ ତାଙ୍କ ଅଞ୍ଚଳରେ ଯେକୌଣସି ଉଚ୍ଚବିଦ୍ୟାଳୟ ଯଦି ଟ.୧୦୦୦ଙ୍କା ଦିଏ, ସେ ଭାଷାକୋଷ ସେହି ବିଦ୍ୟାଳୟକୁ ଦେଇଦେବେ । ଏହିଭଳି ଏକ ଖବର ପାଇବା ପରେ ମୁଁ ତାଙ୍କ ନିକଟରେ ପହଞ୍ଚି ଟ.୧୦୦୦ଙ୍କା ଦେଇ ଆମ ବିଦ୍ୟାଳୟକୁ ଆଣିବା ପାଇଁ ସମ୍ମତି ଜଣାଇଲି । ଭୁବନେଶ୍ୱରରୁ ଆଣି ମୋତେ ଦେଇଦେବା ପରେ ପ୍ରାପ୍ୟ ପାଇବା ପାଇଁ ପତ୍ରାଳାପ କରିବାରୁ ଯଥାସମୟରେ ପ୍ରାପ୍ୟ ଦେଇଦେଲି । ଏତିକିରୁ ସେ କି ଧରଣର ଲୋକ ଏବଂ ନିଜ ଅଞ୍ଚଳ ପ୍ରତି ତାଙ୍କର କିଭଳି ମମତା ଥିଲା ତାହା ବେଶ୍ ଜଣାପଡ଼େ । ଏଭଳି ଆଦର୍ଶ ଚରିତ୍ରର ଶିକ୍ଷାପ୍ରେମୀ ସମାଜରେ ବିରଳ ।" ଏହା ଜଗନ୍ନାଥବାବୁଙ୍କ ବ୍ୟକ୍ତିତ୍ୱର ମହାନତା ପ୍ରମାଣିତ କରେ । ଅପେକ୍ଷାକୃତ କମ୍ ଅର୍ଥ ପାଇଲେ ମଧ ଏଭଳି ଦୁର୍ଲଭ 'ଭାଷାକୋଷ' ସେଟ୍‌ଟି ତାଙ୍କରି ଅଞ୍ଚଳରେ ରହୁ, ସେ କଥା ସେ ଚାହୁଁଥିଲେ । ଏହାଦ୍ୱାରା ଶିକ୍ଷିତ ଅଞ୍ଚଳବାସୀଙ୍କ ଉପକାରରେ ଲାଗିବ । ପରକ୍ଷଣରେ ଏହା ତାଙ୍କ ଦୂରଦୃଷ୍ଟିସମ୍ପନ୍ନ ଜନ୍ମମାଟି ପ୍ରୀତିର ନିଦର୍ଶନ ।

**ଗୋଧୂଳି ଲଗ୍ନ :** ଜୀବନ ଗୋଧୂଳିର ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସେ ପ୍ରାୟ କର୍ମଚଞ୍ଚଳ ଥିଲେ । ବାର୍ଦ୍ଧକ୍ୟ ଶାରୀରିକ ଅକ୍ଷମତା ପାଇଁ ଆଉ ବିଶେଷ ଚଲବୁଲ୍ କରିପାରୁ ନଥିଲେ । ଚାନ୍ଦବାଲି ବଜାର ଯିବା ଏକ ପ୍ରକାର ବନ୍ଦ ହୋଇ ଯାଇଥିଲା । ତଥାପି ଜନସେବା ଯେହେତୁ ତାଙ୍କ ଜୀବନର ଏକ ପୁଣ୍ୟକର୍ମ ଥିଲା । ଶେଷପର୍ଯ୍ୟନ୍ତ ସେ ସମାଜର ହିତସାଧନ ପାଇଁ ଅନ୍ୟକୁ ସତ୍ ପରାମର୍ଶ ଦେଉଥିଲେ । ଜଣେ ଆଦର୍ଶ,

ଚରିତ୍ରବାନ୍ ଓ କର୍ମନିଷ୍ଠ ଶିକ୍ଷକ ଭାବରେ ନିଜର ମହତ୍ତ୍ୱକୁ ସେ ଆଜୀବନ ଅକ୍ଷୁଣ୍ଣ ରଖିଥିଲେ । ସେ ଥିଲେ ଖୁବ୍ ଭଗବତ୍ ବିଶ୍ୱାସୀ । ଜୀବନର ପ୍ରତ୍ୟେକଟି ଅସହାୟ ଦୁଃଖଦ ପରିସ୍ଥିତିକୁ ମୁକାବିଲା କରିବାର ମହାମନ୍ତ୍ର ସ୍ୱରୂପ ଈଶ୍ୱରବିଶ୍ୱାସକୁ ପାଥେୟ କରିଥିଲେ । ସ୍ୱଗୃହରେ ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ପୂଜାର୍ଚ୍ଚନା, ଧର୍ମପୁସ୍ତକ ତଥା ଭାଗବତ ପାଠରେ ଅଧିକାଂଶ ସମୟ ଅତିବାହିତ କରୁଥିଲେ । ଘରେ ପିଲାମାନଙ୍କ ସୁବିଧା ଅସୁବିଧା କଥା ବୁଝିବା ଏବଂ ସେମାନଙ୍କ ଗହଣରେ ଶେଷଜୀବନ ପର୍ଯ୍ୟନ୍ତ ହସଖୁସିରେ ରହି ପ୍ରାୟ ୭୯ବର୍ଷ ବୟସରେ ଜାନୁଆରୀ ୧୯ ତାରିଖ (ସୋମବାର ସକାଳ ୯ଟା ସମୟ) ୧୯୮୭ ମସିହାରେ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ବିୟୋଗବାର୍ତ୍ତା ଚନ୍ଦବାଲି ଅଞ୍ଚଳରେ ତଥା ତାଙ୍କ ଛାତ୍ର, ଆତ୍ମୀୟ ଓ ବନ୍ଧୁମହଲରେ ଶୋକର ଛାୟା ଖେଳି ଯାଇଥିଲା । ପୁଣ୍ୟ ବୈତରଣୀ ଅବବାହିକାର ସେହି ସାରସ୍ୱତ, ସାଧନାନିଷ୍ଠ, ତ୍ୟାଗପୂତ ଓ ସମର୍ପିତ ସାଧକଙ୍କ ମରଶରୀରଟି ସେଦିନ ପୁଣ୍ୟମାଟିର ପଞ୍ଚଭୂତରେ ସବୁଦିନ ପାଇଁ ମିଶି ଯାଇଥିଲା ।

କବିବର ରାଧାନାଥ ରାୟଙ୍କ ଉକ୍ତିରେ – 'ତୁମ ମାଟି ଦେହ ଗ୍ରାସିଛି ଶ୍ମଶାନ ମାତ୍ର ଯଶ ଦେହେ ତୁମେ ଆୟୁଷମାନ !' ସେହିଭଳି କବି ବ୍ରଜନାଥ ରଥଙ୍କ ଭାବନାରେ କବି ବା ସ୍ରଷ୍ଟାର କେବେବି ମୃତ୍ୟୁ ହୁଏନାହିଁ । ବରଂ ସେ ଏହି ସୁନ୍ଦର ପୃଥିବୀକୁ ବାରମ୍ବାର ଫେରିଆସେ ବହୁବିଧ ରୂପ ସମ୍ଭାରରେ ।

କବିଙ୍କ ନିଜସ୍ୱ ଉକ୍ତିରେ –

ମୁଁ ଏଠାରୁ ଚାଲିଯିବା ପରେ
ଦିନେ ପୁଣି ଆସିବି ମୁଁ ଫେରି,
ପ୍ରଭାତୀ ତାରାର ହସେ
ନୀଳ – ପଦ୍ମନୟନ – ବିଳାସେ
ଶିଶୁର ଲଳିତ – କଣ୍ଠେ
ଚଉଦିଗ ମୁଖରିତ କରି ।

'ମୁଁ ଚାଲିଯିବା ପରେ' (ମନର ମାନଚିତ୍ର)



# ପ୍ରାଗ୍‌ଭାଷ

**କବିତା :**

ସମକାଳୀନ କବିମାନଙ୍କ ମଧ୍ୟରେ ଜଗନ୍ନାଥ ପଡ଼ିଆରୀ ବେଶ୍ ପରିଚିତ ଥିଲେ । ଛନ୍ଦବଦ୍ଧ କବିତା ରଚନା କ୍ଷେତ୍ରରେ ତାଙ୍କର ଦକ୍ଷତା ଥିଲା । ତାଙ୍କ ସାହିତ୍ୟ ପ୍ରତି ଏକ ନିର୍ଦ୍ଦିଷ୍ଟ ପାଠକଗୋଷ୍ଠୀଙ୍କ ଅନୁରକ୍ତି ସୃଷ୍ଟି ହୋଇଥିଲା । ତତ୍‌କାଳୀନ ସାହିତ୍ୟପତ୍ରିକା ମଧ୍ୟରେ ପଲ୍ଲୀମଙ୍ଗଳ, ବିଶ୍ୱଶିଶୁ, ଜହ୍ନମାମୁଁ, ସହକାର, ନବଭାରତ, କଳ୍ପଲତାରେ ଲେଖାମାନ ପ୍ରକାଶ କରୁଥିଲେ । କିଶୋର ମନକୁ ଆକୃଷ୍ଟ କଲାଭଳି ବିଷୟବସ୍ତୁ ନିର୍ବାଚନ, ଶବ୍ଦ ସଂଯୋଜନା, ପଦ ଲାଳିତ୍ୟ, ବିଷୟ ଉପସ୍ଥାପନା ତଥା ନୀତିଶିକ୍ଷା ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ସରଳ ସାବଲିଳ ଭାଷାବିନ୍ୟାସ ଓ ମଧୁର ପ୍ରକାଶଭଙ୍ଗୀ, ସହଜ ଭାବ ପ୍ରକାଶ ପାଠକ ଅନ୍ତରକୁ ସର୍ବଦା ଆକୃଷ୍ଟ କରୁଥିଲା ।

ଆଲୋଚ୍ୟ କବିତା ବିଭାଗରେ ତେଇଶଟି କବିତା ସ୍ଥାନ ପାଇଛି । ଏଥିମଧ୍ୟରୁ ଅଧିକାଂଶ କବିତା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ମୂଳ ବଙ୍ଗଳା, ଇଂରାଜୀ, ହିନ୍ଦୀ ଆଦି କବିତାରୁ ମଧ୍ୟ ଅନେକ କବିତା ଅନୁବାଦ କରିଛନ୍ତି । ତାଙ୍କ ରଚିତ କେତୋଟି କବିତାର ରଚନାକାଳ ଏବଂ ସ୍ଥାନ ବିଶେଷର ନାମୋଲ୍ଲେଖ ଅଛି । କବିଗୁରୁ ରବୀନ୍ଦ୍ରନାଥଙ୍କ କବିତାକୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି । ଏଥିରୁ ସ୍ପଷ୍ଟ ଯେ, ସେ ରବୀନ୍ଦ୍ର ସାହିତ୍ୟ ଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଥିଲେ । ଅନ୍ୟ କବିତାଗୁଡ଼ିକ ତାଙ୍କର ମୌଳିକ ରଚନା ।

'ପଲ୍ଲୀବଧୂର ପତ୍ର' ପଲ୍ଲୀମଙ୍ଗଳ ଦଶମଭାଗ / ୬ଷ୍ଠ ସଂଖ୍ୟା ଜୁନ୍ ୧୯୧୩ରେ । 'ମେଘ' କବିତାଟି ବିଶ୍ୱଶିଶୁ ୧ମବର୍ଷ / ତୃତୀୟସଂଖ୍ୟା ୧୯୭୧ରେ, 'ଶୁଆର ଦୁଃଖ' ଜହ୍ନମାମୁଁ / ୨ୟବର୍ଷ ୨ୟଖଣ୍ଡ, 'ଷୋଡ଼ଶୀ' ସହକାର ଦଶମବର୍ଷ ପଞ୍ଚମ ସଂଖ୍ୟା, 'କୃଷ୍ଣା' ସହକାର ୧୨ମ ଭାଗ / ୫ମ ସଂଖ୍ୟା, 'ଚାତକ' ସହକାର ୧୨ଶଭାଗ / ୧୧ଶ ସଂଖ୍ୟା, 'ଆଷାଢ଼' ସହକାର / ୧୩ଭାଗ / ୩ୟ ସଂଖ୍ୟାରେ

ପ୍ରକାଶ ପାଇଥିଲା । 'ଜୀବନସଂଗୀତ' କବିତା H.W. Longfellowଙ୍କ 'A Pslam of life' କବିତାରୁ ଅନୂଦିତ ।

'ହରିରାମ' କବିତାଟି ମଧ୍ୟ 'ହିନ୍ଦୀ' କବିତାରୁ ଅନୂଦିତ । ସମାନ ନାମକରଣରେ ରବିନ୍ଦ୍ରନାଥଙ୍କ ରଚିତ 'ଉର୍ବଶୀ', 'ଦେବତାର ଗ୍ରାସ' କବିତାଦିର ଓଡ଼ିଆ ଭାଷାନ୍ତର କରିଛନ୍ତି ।

'ପଲ୍ଲୀବଧୂର ପତ୍ର' କବିତାଟି ପଲ୍ଲୀମଙ୍ଗଳ - ୧୦ମଭାଗ - ୬ଷ୍ଠ ସଂଖ୍ୟାରେ, ଜ୍ୟେଷ୍ଠ-ଜୁନ୍ ୧୯୩୩ରେ ପ୍ରକାଶ ପାଇଥିଲା । ଉକ୍ତ କବିତାରେ କବି 'ପଲ୍ଲୀବଧୂର' ପ୍ରିୟତମ ବିଚ୍ଛେଦ ଜନିତ ମନୋବେଦନାକୁ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । ପ୍ରିୟତମ ତା'ର ଦୂରବିଦେଶକୁ ଗଲାବେଳେ ଛାତିରେ ଆଉଜି ତାକୁ କେତେ ଆଶା ଦେଇଯାଇଥିଲେ, ଆସନ୍ତା ଆଷାଢ଼ରେ ଫେରିଆସିବେ ବୋଲି । ଆହୁରି ଦେହ ଛୁଇଁ ମଧ୍ୟ କହିଯାଇଥିଲେ ପ୍ରତି ସପ୍ତାହରେ ଭଲମନ୍ଦ ଖବର ଲେଖି ଚିଠି ଦେବେ ବୋଲି । କିନ୍ତୁ ସବୁ ଆଶା ବିଶ୍ୱାସ ତା'ର ମଉଳି ଯାଉଛି । ସେ ପ୍ରିୟତମର ବିରହବେଦନାର ଅତ୍ୟନ୍ତ ଅଧୀରା ହୋଇପଡ଼ିଛି । ବାରମାସ ଓ ଷଡ଼ଋତୁର ପ୍ରକୃତି ଓ ପର୍ବପର୍ବାଣୀ ମଧ୍ୟରେ ପ୍ରିୟତମର ସ୍ମୃତି ତା' ମନକୁ ଅଥୟ କରିଛି । ମେଘ ମେଦୁର ବିଦ୍ୟୁତ୍ ଚମକ ଭୟାର୍ତ୍ତ ବର୍ଷାରାତିର ନିସଙ୍ଗତା, ଓଷାବ୍ରତ ଓ ପୂଜାପାର୍ବଣର ପିଠାପଣା ମଧ୍ୟରେ ଶରତର ନିରାନନ୍ଦ ଜୀବନ, ପୋଖରୀ ଭର୍ତ୍ତି କଇଁଫୁଲ ଦଳରେ ଚକୁଆ ଚକୋଇ ଦମ୍ପତିଙ୍କ ପ୍ରେମାଲିଙ୍ଗନ । ହେମନ୍ତ କ୍ଷେତ୍ରରେ ମଥା ନୁଆଣିଆ ପାଚିଲା ଧାନଶସ୍ୟ ଓ ନଦୀପଠାର ସୁନା ସୋରିଷଫୁଲର ଶ୍ରୀଶୋଭାକୁ ପ୍ରଥମାଷ୍ଟମୀର ନୂଆଲୁଗା ପିନ୍ଧାରେ ଜନନୀ ଆଖିର ଲୁହ, ଶୀତରାତିର ପ୍ରିୟତମକୁ ସ୍ୱପ୍ନ ଦେଖି ଏକାକିନୀ ଅଶ୍ରୁଜଳରେ ଶେଯକୁ ତିନ୍ତାଇଦେବା, ଫଗୁଣର ଫଗୁଖେଳ ଓ ଦୋଳଉତ୍ସବର ଫିକା ମଉଜ, ଗୀଷ୍ମଋତୁର ପ୍ରଚଣ୍ଡଖରା ଓ ଗୁଳୁଗୁଳି କଷ୍ଟକୁ ଧୂମାଳି ପବନର ତାଣ୍ଡବଲୀଳା ମଧ୍ୟରେ ପ୍ରିୟତମର ବିଚ୍ଛେଦ ଜନିତ ସ୍ମୃତିକୁ ନେଇ ଜୀବନ ଧାରଣ କରିଛି । ତଥାପି ସେ ଖୁବ୍ ଆଶାବାଦୀ ହୋଇଛି ନିଶ୍ଚୟ ତା'ର ପ୍ରାଣର ମଣିଷ ଫେରିଆସିବ ବୋଲି । ସେଥିପାଇଁ ସେ ଶୋଷାର୍ତ୍ତ ଚାତକ ସଦୃଶ ତାଙ୍କ ଫେରିବା ପଥକୁ ଚାହିଁ ବସିଛି । କବିଙ୍କ ବର୍ଣ୍ଣନାରେ:

'ତୁମେ ସଖା ନିଜେ ଆସିବ' ଆଶାରେ ରହିଛି ଜୀବନଧରି,
ଆତୁରା ଚାତକୀ ସାଗର ସେପାରି ବାଦଲରେ ରହିଛି ଚାହିଁ,

ଆସିବେନି ସଖା ? ପିଆସାରେ ଯେ ମୋ ଫାଟିଯିବ ମୋର ବୁକୁ,

ସେ ଆଶା ଲିଭିଲେ ମୋ ଜୀବନ ଦୀପ ଲିଭିଯିବ ତୁମପାଇଁ ?'

'ମେଘ' କବିତାଟି କବିଙ୍କ ଏକ ଅନୁପମ ସୃଷ୍ଟି । କବି ଜିଜ୍ଞାସୁ ମନରେ ମେଘକୁ ପଚାରିଛନ୍ତି, କଳାମେଘ ! କେଉଁ ରାଇଜରେ ତୋର ଘର ? କେଉଁ ପାହାଡ଼ ଶିଖରେ ତୁ ବାସକରୁ ? କାଳ ନିଦାଘର ପ୍ରବଳ ଅତ୍ୟାଚାର ଦେଖି ସଦର୍ପରେ ଧରାବକ୍ଷକୁ ସୈନ୍ୟସାମନ୍ତ ଧରି ସଦଳ ବଳେ ଆଷାଢ଼ରେ ଆସିଥାଉ । ତୋର ସୈନ୍ୟସାମନ୍ତଙ୍କ ଥାଟ ଦେଖି ସରଗ ମଧ୍ୟ ଥରହର ହୋଇଥାଏ । ବାଜା ବାଜେ, ପବନରେ ନିଶାଣ ଉଡ଼େ । ଆଷାଢ଼ର କଳାହାଣ୍ଡିଆ ମେଘମାଳାର ଘଡ଼ଘଡ଼ିଶବ୍ଦ ସାଙ୍ଗକୁ ବିଦ୍ୟୁତ୍‌ର ସ୍ଫୁଲିଙ୍ଗ ଓ ପ୍ରବଳ ତୋଫାନର ବେଗକୁ କବି ଏହିଭଳି ଏକ ଚିତ୍ରକଳ୍ପ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ।

କବି କହିଛନ୍ତି, ବଜ୍ରନିନାଦ ଶବ୍ଦକରି ପୃଥିବୀବାସୀଙ୍କୁ ଅଭୟବାଣୀ ଶୁଣାଉ ଥାଉ ଏବଂ ବର୍ଷା ରୂପକ ତୀରାଘାତରେ ନିଦାଘକୁ ବିନାଶକରୁ । ଫଳରେ ନଈ, ପୋଖରୀ ପାଣିରେ ଉଛୁଳିପଡ଼େ । ଧରଣୀରାଣୀ ସବୁଜଘାସର ବସନ ପିନ୍ଧି ଶ୍ରୀ ଶୋଭା ଧାରଣକରେ । ନିଦାଘର ରୌଦ୍ର ତାପରେ ଲୁଚିଯାଇଥିବା ଗୁଳ୍ମଲତାଦି ତୋର ସ୍ନେହବାରି ସିଞ୍ଚନରେ ଭୂମିରୁ ମୁଣ୍ଡ କାଢ଼ିଥାନ୍ତି । ଶୂନ୍ୟକ୍ଷେତ ସବୁଜଶସ୍ୟରେ ଭରପୂର ହୋଇ ଚହଟସୁନ୍ଦର ହୋଇଉଠେ । କୃଷକର ମନ ଆନନ୍ଦରେ ପୂରିଉଠେ । ଗାଈ ବାଛୁରୀ ସବୁଜ ଘାସପତ୍ର ଖାଇ ଥାକୁଲ୍ ଥୁକୁଲ୍ ହୋଇଯାଏ । ବଗବଗୁଲୀର ଆହାର ଜନିତ ଆନନ୍ଦ, ଡାହୁକର ଉଲ୍ଲସିତ ଡାକ, ବେଙ୍ଗବେଙ୍ଗୁଲିର କେଁ କଟର ହୁଳହୁଳି ଶବ୍ଦରେ ଧରା ପ୍ରତିଧ୍ୱନିତ ହୁଏ । ତା' ସହିତ ଅବିରାମ ଗତିରେ ପବନ ବହୁଥାଏ ।

କବି କଳ୍ପନାରେ ମେଘ ମଉଜ କରି ଚତୁର୍ଦ୍ଦିଗ ଅନ୍ଧାରହୋଇ ଘୋଟିଯାଇ ଅବିରାମ ଧାରାରେ ବର୍ଷାକରେ । ପିଢ଼ା ଉପରେ ମାଡିଥିବା କଖାରୁ ପତ୍ରରେ ବର୍ଷାପାଣିର ଟୁପୁର ଟାପୁର ଶବ୍ଦ ରାତ୍ରିରେ ଶୋଇଥିଲାବେଳେ ମନରେ ଡର ସଞ୍ଚାରକରେ । ବର୍ଷାଋତୁରେ ଅସଂଖ୍ୟ କେତକୀ, ହରଗୌରା, କଇଁ, ଟଗରଫୁଲ ଫୁଟିଥାଏ । ଡାଳଭର୍ତ୍ତି କଦମ୍ବଫୁଲର ଶୋଭାକୁ ଭୂଇଁରେ ଲୋଟିଥିବା ମୁଠାମୁଠା କାମିନୀଫୁଲର ଦୃଶ୍ୟ ମନରୁ କେବେ ଲିଭିନଥାଏ । ଥରେଥରେ ମେଘ ପାଗଳ ହୋଇ ପ୍ରବଳ ବର୍ଷା କରାଏ

ଫଳରେ ନଦୀ ପୂର୍ଣ୍ଣଗର୍ଭା ହୋଇ ଦୁଇକୂଳ ଲଘିଁ କ୍ଷେତବାଡ଼ି ଏବଂ ଜନପଦକୁ ମାଡ଼ିଆସି ବହୁକ୍ଷତି ଘଟାଇଥାଏ । କବି ମେଘର ଏହି ଧ୍ୱଂସକାରୀ ରୂପକୁ ଦେଖି ମୁରବିତୁଲ୍ୟ ଉପଦେଷ୍ଟା ହୋଇ କହିଛନ୍ତି, "ଛି ଛି ତୁ ଆଉ ଏପରି କେବେ କରିବୁ ନାହିଁ । ଦେଖିରହିଁ ପାଳନ କରିବୁ, ଯେଉଁଥିରେ ରାଜ୍ୟ ସୁନା ହୋଇଯିବ ।" ଏହା କବିଙ୍କର ନିଜସ୍ୱ ଶୈଳୀ, ଯାହା କୋମଳମତି କିଶୋର ମନକୁ ଗଭୀର ଭାବରେ ସ୍ପର୍ଶ କରିଥାଏ ।

ତାଙ୍କର ଦ୍ୱିତୀୟ 'ପ୍ରଣୟୀ' କବିତାଟି ଏକ ସୁନ୍ଦର ରୋମାଣ୍ଟିକ୍ ପରିକଳ୍ପନା । କବିଙ୍କ 'ପ୍ରଣୟୀ' ସରଗର ତାରକାତୁଲ୍ୟା ଚିତ୍ତଚୋରା କିଶୋରୀଟିଏ । ଯାହାଙ୍କ ରଙ୍ଗା ଚରଣରେଖା ଛାପରେ ସରଣୀ ଆରକ୍ତବର୍ଣ୍ଣ ପୁଷ୍ପର ଶୋଭା ଧାରଣକରେ । ମନ୍ଦ ସମୀରଣରେ ସେହି ଲଜ୍ଜାବତୀର ଋରୁ ଚିକୁର ଫୁରଫୁର ଉଡୁଥିବାବେଳେ ତାଙ୍କ ଅଧରରୁ ବନ୍ଧୂଲିଫୁଲର ଲାବଣ୍ୟ ଚହଟୁଥାଏ । ସେହି ତରୁଣୀର ଝିନବାସ ତଳେ ଶୋଭାପାଉଛି ଆଲୋଳିତ କୁଞ୍ଚିତ ଘନ କଳା କବରୀ ଏବଂ ଚଞ୍ଚଳ ଚରଣ ଯୁଗଳରେ ଶୋଭିତ ନୂପୁରର ରୁଣୁଝୁଣୁ ଶବ୍ଦ ଚତୁର୍ଦ୍ଦିଗକୁ ମୁଖରିତକରି ତୋଳୁଛି । କଜ୍ଜଳ ପିନ୍ଧା ନୟନରେ ଯେତେବେଳେ ଅଥୟ ହୋଇ ଋଲିଯାଅ ଏବଂ ପଛକୁ ଫେରି ଋହଁ, ସେତେବେଳେ ମୋ ପ୍ରାଣରେ ସିହରଣ ସୃଷ୍ଟିହୁଏ ଏବଂ ତୁମର କଟାକ୍ଷପାତରେ ମୋର ପ୍ରାଣ ହାଣି ହୋଇଯାଏ । ଛଳନାମୟୀ ମରୀଚିକା ସଦୃଶ ପଥିକକୁ ଜଳଦାନ କରିବାର ଭରସା ଦେଖାଇ, ବହୁ ଦୂରକୁ ନେଇ ତାଙ୍କୁ ନିରାଶ କରି ଛାଡ଼ିଦିଅ । ଚତୁରୀ ପ୍ରେମିକା ଆଶା ଦେଇ ଯେପରି ଛଳିଦିଏ, ସେଥିରେ ପ୍ରେମିକ ଜୀବନଧାରଣ କରିବ ବା କେମିତି ? ବରଂ ଆଖିପାଣି ଜୀବନରେ ତା'ର ସାରହୁଏ । ତୁମ ମନରେ ଯଦି ଏତେକଥା ଥିଲା, କାହିଁକି ଆଖିକୋଣରେ ସମ୍ମତି ଦେଇଥିଲ ? ତୁମ ପ୍ରତୀକ୍ଷାରେ ସାରା ରାତ୍ରି ଉଜାଗରରେ ମୋର ବିତିଯାଇଥିଲା । ଯଦି ଭଲ ନଲାଗେ ତେବେ ଆଡ଼ ନୟନରେ ଫେରି ଋହଁ ଓ ଲାଜରେ ହସି ବାସତଳେ ଶରୀର ଲୁଋଇଥାଅ କାହିଁକି ? ଆଜିଠାରୁ ତୁମ ପାଦତଳେ ମିନତି କରୁଛି ଆଡ଼ ନୟନରେ ମୋତେ ଆଉ କେବେ ଋହିଁବ ନାହିଁ କି ବନ୍ଧୁଲି ଓଠରେ ନ ହସି ସରମରେ ମୋତେ ଦେଖି କେବେ ଥରିବ ନାହିଁ । ଆଉକେବେ ଚରଣକମଳରେ ଅଳତା ନାଇବ ନାହିଁ କି ମେଘୁଆ ରାତ୍ରିରେ ଯୂଇଫୁଲର ହାର ମଧ ପିନ୍ଧିବ ନାହିଁ । ଭ୍ରୁଲତା ଯୁଗଳରେ କଜ୍ଜଳର ତିଳକ କେବେ

ଘେନିବ ନାହିଁ କି ମୃଦୁ ମନ୍ଦ ସମୀରରେ ତୁମ ଚୂର୍ଣ୍ଣଅଳକପଂକ୍ତି କେବେବି ଉଡୁନଥିବ, ସେଥିପ୍ରତି ସତର୍କ ରହିଥିବ । ମତୁଆଲା ଚଇତାଳି ପବନରେ ତୁମର ଘନ କବରୀ ଆଉଦିନେ ମେଲାଇବ ନାହିଁ କି ତୁମ ଯଉବନ ଉଚ୍ଛଳା ଶରୀରକୁ କେବେ ବି ଗୋଲାପୀ ଝିନବସନରେ ଆବରଣ କରିବନାହିଁ ।

କବି ନାୟିକାର ଶରୀର ରୂପଶୋଭା, ତା'ର ଚଳଚଞ୍ଚଳ ଗତିଧାରା, ପରିଧାନ, ପ୍ରସାଧନ, ଠାଣି-ଚହାଁଣୀକୁ ଅପୂର୍ବ କାବ୍ୟରୀତି ଓ ଭାଷାବିନ୍ୟାସରେ ବର୍ଣ୍ଣନା କରିଛନ୍ତି । ସତେ ଯେପରି କାବ୍ୟନାୟିକା କବିଙ୍କ ପ୍ରାଣର ପ୍ରିୟତମା । କବିତାର ଛନ୍ଦ ଓ ଶବ୍ଦ ସଂଯୋଜନାର ଲାଳିତ୍ୟ ପାଠକ ଅନ୍ତରକୁ ଗଭୀର ଭାବରେ ଆକୃଷ୍ଟ କରିଥାଏ ।

'ଚାତକ' କବିତାଟି ସହକାର ୧୨ଶ ଭାଗ / ୧୧ମ ସଂଖ୍ୟାରେ ପ୍ରକାଶ ପାଇଥିଲା । ଚାତକ ଏକ କ୍ଷୁଦ୍ରକାୟ ପକ୍ଷୀ ବିଶେଷ । ଲୋକ ଉକ୍ତି କହେ ଆଦ୍ୟ ଆଷାଢ଼ର ନବ ବାରିପାତକୁ ସେ ପାଟି ମେଲାକରି ଆକାଶକୁ ଚାହିଁ ବସିଥାଏ । ପାଟିରେ ପତିତ ନବ ବାରିଧାରାକୁ ଆକଣ୍ଠ ପାନକରି ସେ ସାରାବର୍ଷର ତୃଷା ନିବାରଣ କରିଥାଏ । କବି ଏକ ଚମତ୍କାର ଭାବ ବିନ୍ୟାସରେ ଚାତକର ଚରିତ୍ରକୁ ଉପସ୍ଥାପନ କରିଛନ୍ତି । ତାଙ୍କ ଭାବନାରେ ସେ ସ୍ୱର୍ଗର ଦେବତା ବିଶେଷ, ଅଭିଶାପଗ୍ରସ୍ତ ହୋଇ ମର୍ତ୍ତ୍ୟଭୂମିକୁ ତାଙ୍କର ଆଗମନ ଘଟିଛି । ଯାହାର ବିଚରଣ ସ୍ଥାନ ଥିଲା ସ୍ୱର୍ଗର ନନ୍ଦନକାନନ ଏବଂ ପାନୀୟ ଥିଲା ସ୍ୱର୍ଗ-ମନ୍ଦାକିନୀର ସ୍ୱଚ୍ଛପୂତ ନୀରଧାରା । ଫଳରେ ସେ ମର୍ତ୍ତ୍ୟର ଅପବିତ୍ର ଜଳଧାରାକୁ ସ୍ପର୍ଶ କରେନାହିଁ, ତୃଷାରେ ଯେତେ ବି ଆତୁର ହେଲେ ମଧ୍ୟ ।

କବି ଚାତକକୁ କହିଛନ୍ତି, ମର୍ତ୍ତ୍ୟକୁ ଆସି ମଧ୍ୟ ଦେବତାର ସ୍ୱାଭିମାନ ମନରୁ ତୋର ଯାଇନାହିଁ । ଦେବତାର ଆଭିଜାତ୍ୟକୁ ହୃଦୟରେ ଧରି ଏଠାରେ ବା ଚଳିବୁ କିପରି ? ସ୍ୱର୍ଗପୁରୀର ଅତୀତ କଥା ତୁ ଭୁଲିଯା' । ତା' ନହେଲେ ତୋ ପ୍ରାଣରେ ଦାରୁଣ ଆଘାତ ଲାଗିବ । ସେଇଥିପାଇଁ ବୋଧେ ଚୈତ୍ର ସନ୍ଧ୍ୟାର ଚଇତାଳି ମେଘମାଳା ଦୂରଆକାଶରେ ଯେତେବେଳେ ଖଣ୍ଡଖଣ୍ଡ ହୋଇ ଭାସି ବୁଲୁଥାଏ, ସେତେବେଳେ ବୁକୁଫଟା ବିଳାପ କରି କାହାପାଇଁ ଅଶ୍ରୁ ଝରାଉଥାଉ ? ତୋ ହୃଦୟବିଦାରକ କାନ୍ଦଣା ଶୁଣି, ତୋର ଅନାଥ ଶ୍ରୀହୀନ ଅବସ୍ଥା ଦେଖି ସନ୍ଧ୍ୟା ବଉଦର ଅନ୍ତରାଳରେ ପ୍ରତ୍ୟହ

ଥାଇ ଦେବବାଳା ତୋରିପାଇଁ ଅଶ୍ରୁ ଝରାଇ ଧରଣୀର ବକ୍ଷକୁ ସିକ୍ତ କରିଥାଏ ।

କବି ପ୍ରଶ୍ନବାଚୀ ମନରେ ଚାତକକୁ ପଚାରିଛନ୍ତି କାହାପାଇଁ ଏତେ ବିକଳ ଆର୍ତ୍ତନାଦରେ ଝୁରୁଥାଉ ଆକାଶରୁ ତୁଙ୍ଗ ତରୁ ଶିଖର ପର୍ଯ୍ୟନ୍ତ ? ତେବେ ଏ ସୁନ୍ଦର ଧରଣୀକୁ ତ୍ୟାଗକରି ତୁ ଅପୂର୍ବ ସୌନ୍ଦର୍ଯ୍ୟପୁରୀ ସ୍ୱର୍ଗଧାମକୁ ଉଡ଼ିଯିବୁ କି ? ସେଠାରେ ସବୁଜକାନ୍ତ ଗିରିମାଳା ଅଛିକି ? ଗିରି ପାଦଦେଶରେ କଳକଳ ନାଦିନୀ ଝରଣା ବହୁଛି କି ? ଯେଉଁ ନଦୀକୂଳ ତରୁଶାଖାରେ ଫୁଲଫୁଟା ମଞ୍ଜୁଳ ଲତିକା ଶୋଭାପାଉଛି କି ? ଶରତର କାଶତଣ୍ଡି ସେଠି ଫୁଟିଛି କି ? ବସନ୍ତର ଚୂତ ଡାଳେ ସୁବାସିତ ବଉଳ ମଞ୍ଜରୁଛି କି ? ହେମନ୍ତରେ ତମାଳ ପୁଷ୍ପର ବାସ ମହକୁଛି କି ?

କବି ମର୍ତ୍ତ୍ୟଭୁବନର ପ୍ରାକୃତିକ ଶୋଭାସମ୍ପଦରେ ଆତ୍ମବିଭୋର ହୋଇଯାଇ ସ୍ୱର୍ଗର ନନ୍ଦନକାନନ ସୁଷମାକୁ ତୁଚ୍ଛ ମଣିଛନ୍ତି । ମର୍ତ୍ତ୍ୟର ଗିରିଝର, ବନଉପବନର ଶୋଭାକୁ ଶ୍ରେୟ ମଣିଛନ୍ତି । ପୁନଶ୍ଚ ଚାତକର ଦୁଃଖ ପ୍ରତି ସମବେଦନଶୀଳ ହୋଇ କହିଛନ୍ତି, ଚାତକ ! ତୋର ପ୍ରକୃତ ଅନ୍ତରବେଦନା ବୁଝିପାରିଛି । ସ୍ୱର୍ଗର ଗଙ୍ଗାନଦୀ ତୀରରେ ନନ୍ଦନକାନନର ପାରିଜାତମାଳା ଦେଇ ତୋତେ ଯେ ପତିରୂପେ ବରଣ କରିଥିଲା, ଆଜି ସେହି ପ୍ରିୟତମା କଥା ତୋର ମନେପଡ଼ିଛି । ମନେପଡ଼ିଛି ସେହି ନବୀନ ଯୌବନର ବାସର ଶେଯରେ ଯୁଗଳପ୍ରାଣୀ ହୋଇ ପରସ୍ପରକୁ ସାକ୍ଷୀକରି କିପରି ହୃଦୟକୁ ସମର୍ପଣ କରିଥିଲ । ଆହୁରି ମନେପଡ଼ିଛି ନୀଳ ଘନକେଶ ବିନ୍ୟାସ ନୀଳପଦ୍ମ ପରି ନିଦ୍ରା ନିମୀଳିତ ନୟନଯୁଗଳର ରୂପକାନ୍ତି ଯାହାର ବାହୁବନ୍ଧନରେ ଆବଦ୍ଧ ଏ ଗ୍ରୀବା ତା'ର ମଧୁର ମୁଖର ସୌନ୍ଦର୍ଯ୍ୟ ପାନରେ ପାଗଳ ହୋଇଯାଇଥିଲା । ମାତ୍ର ବିଦାୟ ଦିନର ସେହି କରୁଣ ଚାହାଣି ବାରିଧାରା ପରି ନୟନ ଯୁଗଳରୁ ଅଶ୍ରୁ-ଧାରାରେ ପରିଣତ ହୋଇଥିଲା । ବାରମ୍ବାର ପୋଛିଦେଲେ ମଧ୍ୟ ଅମାନିଆ ଉଚ୍ଛୁଳା ଅଶ୍ରୁଧାରାରେ ଗଣ୍ଡଦେଶ ସିକ୍ତ ହେଉଥିଲା । ବାସ୍ତବିକ୍ କବି ଚାତକ ଦୁଃଖକୁ ସ୍ୱୀୟ ହୃଦୟର ଭାଷାରେ ଖୁବ୍ ନିଖୁଣ ଓ ସଫଳ ଭାବରେ ପ୍ରକାଶ କରିବା ମଧ୍ୟରେ ପାର୍ଥିବ ଜଗତର ପତି-ପତ୍ନୀଙ୍କ ଦାମ୍ପତ୍ୟ ଜୀବନର ଆଦ୍ୟ ପ୍ରେମପ୍ରଣୟ ଓ ବିଚ୍ଛେଦର ବାସ୍ତବଚିତ୍ର ଅଙ୍କନ କରିଛନ୍ତି । ପରକ୍ଷଣରେ ଚାତକ ପ୍ରତି ସ୍ୱୀୟ ସମବେଦନଶୀଳ ଭାବନା ପ୍ରକାଶ କରି କହିଛନ୍ତି -

"କିଏ ସେ ନାରକୀ, ଆହା, କେଉଁ ଅପରାଧେ
ଚିରଦିନ ପାଇଁ ତୋର ହାରିନେଲା ସୁଖ ?
ତୋର ଏ ବିକଳ ଦେଖି ପରାଣେ ପରାଣେ
କରୁଣା ଉଚ୍ଛୁଳିଉଠେ, ଉପୁଜଇ ଦୁଃଖ ।"
ତେଣୁ ତୁ ଶାପଭ୍ରଷ୍ଟ ଚିର ବିରହି ଦେବତା ।

ସେଥିପାଇଁ ପ୍ରାଣ ବିକଳରେ ମେଘତଳେ ତରୁ ଡାଳରେ ଏବଂ ତୁଙ୍ଗ ତରୁଶିଖରରେ ଦିବସ ରଜନୀ ବିଳାପ କରୁଅଛୁ । ବାସ୍ତବିକ୍ କବିଙ୍କର ଏହା ଏକ ରୋମାଣ୍ଟିକ୍ ପରିକଳ୍ପନା ।

'ଜୀବନ-ସଙ୍ଗୀତ' କବିତାଟି କବିଙ୍କ ଯଦିଓ ନିଜସ୍ୱ ମୌଳିକ ସୃଷ୍ଟିନୁହେଁ, ତଥାପି କବିଙ୍କ ଅନୁବାଦ ଦକ୍ଷତାର ପରିଚୟ ମିଳିଥାଏ । ବ୍ରିଟିଶ୍‌କବି H.W. Long fellowଙ୍କ 'A pslam of life' କବିତାର ମୌଳିକ ଅନୁବାଦ । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ଜୀବନସଙ୍ଗୀତ' କବିତାର ଭାବଧାରା ଖୁବ୍ ଉଚ୍ଚକୋଟୀର । ପାର୍ଥିବ ଜୀବନର ଦୁଃଖ-ଯନ୍ତ୍ରଣାକୁ ଅତିକ୍ରମ କରି ଏକ ଉର୍ଦ୍ଧ୍ୱତର ଅତିନ୍ଦ୍ରିୟ ଅସୀମ ଭାବ-ବ୍ୟାକୁଳତା ବେଶ୍ ଉପଲବ୍ଧ ହୁଏ । ବିଦଗ୍ଧ କବି ହୃଦୟର ଏଭଳି ବ୍ୟଥା-ମୂର୍ଚ୍ଛିତ ଆତ୍ମପ୍ରକାଶଟି ହେଉଛି -

"ସବୁଥିରୁ ବଞ୍ଚିତ କରି
କେଉଁ ଯଶ ବାନା ଉଡ଼ାଇବ ହେ,
ଯାହା ଦେଇଥିଲ ସବୁ ତ ନେଲଣି
ଆଉ ଏବେ କିଶ ଛଡ଼ାଇବ ହେ ।"

ଉକ୍ତ କବିତାରେ 'Long fellow' କର୍ମର ଜୟଗାନ କରିଛନ୍ତି । ଜୀବନ ଅତ୍ୟନ୍ତ କ୍ଷଣିକ, ଅଳିକ । ମୃତ୍ୟୁ ଯେ କେତେବେଳେ, କେଉଁ ମୁହୂର୍ତ୍ତରେ କାହାପାଇଁ ଆସି ପହଞ୍ଚିଯିବ, ସେ କଥା କେହି ଜାଣିନଥାଏ । ତେଣୁ ଜୀବନକୁ କର୍ମମୟ କରି ସମାଜ, ଦେଶ ଓ ଦଶ ପାଇଁ ଉତ୍ସର୍ଗ କରିଦେବା ହିଁ ମାନବଜନ୍ମର ସାର୍ଥକତା ।

ଜୀବନକୁ ଭଗବତ୍ ଚିନ୍ତା ଚେତନା ଓ କର୍ମରେ ସମର୍ପଣକରି ଜଗତର କଲ୍ୟାଣ କରିବା ହିଁ ଜୀବନର ପୂର୍ଣ୍ଣତା । ଜଣେ ବଙ୍ଗୀୟକବି ଏହି କର୍ମବାଦର ଜୟଗାନ କରି ଦିନେ ଲେଖିଥିଲେ - "ବିଶ୍ୱ ଯଦି ଚଲେଯାଏ କାନ୍ଦିତେ କାନ୍ଦିତେ / ଆମି ସୁଧୁ ଏକାରବ କର୍ତ୍ତବ୍ୟ ସାଧିତେ' । କବିଗୁରୁ ରବୀନ୍ଦ୍ରନାଥ ମଧ୍ୟ ଗାଇଥିଲେ - "ଯଦି ତୋର ଡାକ୍ ଶୁନେ କେଉ ନା ଆସେ ତବେ ଏକଲା ଚଲରେ ।" ଉତ୍କଳମଣି ଗୋପବନ୍ଧୁ କହିଥିଲେ - "କର୍ମେ ଜିଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।" କେବଳ ଉତ୍କଳବାସୀ, ଭାରତବାସୀ କବି ପୁଙ୍ଗ ନୁହଁନ୍ତି, ସମଗ୍ର ପୃଥିବୀବାସୀ ଅନେକ କବି ଏହି କର୍ମବାଦକୁ ଜୀବନର ମୂଳଲକ୍ଷ୍ୟ କରି ଏହାର ସ୍ତବଗାନ କରିଛନ୍ତି । 'କର୍ମ ହିଁ ଜୀବନ, ଆଳସ୍ୟ ହିଁ ମୃତ୍ୟୁ' ନ୍ୟାୟରେ ଦେଶ ଓ ଦଶର ହିତସାଧନାର୍ଥେ କର୍ମସମ୍ପାଦନ କରି ବ୍ୟକ୍ତି ଜାତୀୟ ସମ୍ପତ୍ତି ପାଲଟି ଯାଇଛନ୍ତି । ବ୍ୟକ୍ତି ସ୍ୱାର୍ଥ ସମ୍ବଳିତ କର୍ମ କେବଳ ବ୍ୟକ୍ତି ପାଇଁ ଉଦ୍ଦିଷ୍ଟ, ଏଥିରେ ଜାତି-ହିତସାଧନର ସତ୍ତା ନଥାଏ ।

କେହିକେହି ମନୁଷ୍ୟ ଅତ୍ୟନ୍ତ କାତର କଣ୍ଠରେ କହିଥାଏ, 'ମାନବ ଜନ୍ମ ବୃଥା କାରଣ ଏ ଜୀବନ ଅତ୍ୟନ୍ତ ଅଳୀକ ଓ କ୍ଷଣିକ ।' ମାତ୍ର ତା'ର ଏଭଳି ଉକ୍ତି ଯଥାର୍ଥ ନୁହେଁ । ଏହି କ୍ଷଣିକ ଜୀବନକୁ ସେ କର୍ମ ଓ କର୍ତ୍ତବ୍ୟ ପୁଟରେ ମହାର୍ଘ ଓ ଦୁର୍ଲଭ କରିପାରେ, ଯଦି ସେ କର୍ମ ମନସ୍କ ହୁଏ । କିନ୍ତୁ ନିଷ୍କର୍ମା ମନୁଷ୍ୟ ପାଇଁ ଏହି ଅଳୀକ ଜୀବନ ମଧ୍ୟ ଦୂରୁହ, ଦୁର୍ବିସହ ହୋଇ ଜୀବନ୍ତ ମରଣ ପାଲଟିଯାଏ । ସମଗ୍ର ଜୀବନଟି ତା'ର ବୃଥା ଚିନ୍ତା ଓ ବିଷାଦ ମଧ୍ୟରେ କଟିଥାଏ । ଜୀବନର ବାସ୍ତବ ସୌନ୍ଦର୍ଯ୍ୟ ଓ ମୂଲ୍ୟବୋଧକୁ ସେ କେବେ ଅନୁଭବ କରିନଥାଏ ।

ବାସ୍ତବ ଜୀବନ କର୍ମମୟ ହେବା ଉଚିତ । ମୃତ୍ୟୁ ଏହାର ଶେଷ ପରିଣତି ନୁହେଁ । ହୁଏତ ଶରୀରଟି ପଞ୍ଚଭୂତରେ ମିଶିଯିବ କିନ୍ତୁ ଆତ୍ମା ଅବିନଶ୍ୱର । ଭୋଗବିଳାସ ଦୁଃଖକଷ୍ଟ ଏସବୁ ଆମ ଭାଗ୍ୟଲିଖନ ନୁହେଁ । ମାତ୍ର ମନୁଷ୍ୟ ସତ୍‌କର୍ମ ଦ୍ୱାରା ସ୍ୱୀୟଭାଗ୍ୟକୁ ସମୁନ୍ନତ କରିଥାଏ । ମନୁଷ୍ୟ ଯେତେ ବିଦ୍ୟା, ଜ୍ଞାନର ଅଧିକାରୀ ହେଲେ ମଧ୍ୟ କ୍ଷଣିକ ଜୀବନ ପରମାୟୁ ତା'ର ପ୍ରତି ମୁହୂର୍ତ୍ତରେ ସରିଆସେ । ପ୍ରତିଟି ହୃଦ୍-ସ୍ପନ୍ଦନପାତରେ ସେ ମୃତ୍ୟୁର ନିକଟବର୍ତ୍ତୀ ହୋଇଥାଏ । ବିସ୍ତୃତ ସଂସାର ପଥରେ ଜୀବନ-ଯୁଦ୍ଧରେ ସେ ସଙ୍କଟ ଓ ଜଞ୍ଜାଳର ସମ୍ମୁଖୀନ ହେଉଛି । ଏଥିରେ ଭୀରୁଙ୍କ ଭଳି କାତର ନ

ହୋଇ ବୀରଦର୍ପରେ କର୍ମ ସମ୍ପାଦନ କରିବା ଉଚିତ । ନିଜର ଅଭୁଲା ଅତୀତକୁ ପାଶୋରି ଭବିଷ୍ୟତ ସୁନେଲି ସ୍ୱପ୍ନରେ ଅସ୍ଥିର ହେବା ଅନୁଚିତ । ହୃଦୟରେ ଭଗବତ୍ ବିଶ୍ୱାସକୁ ଦୃଢ଼ୀଭୂତ କରି ଉପସ୍ଥିତ କର୍ମ କରିଯିବା ଉଚିତ । ଅତୀତର କର୍ମବୀରମାନଙ୍କ ପଥକୁ ଅନୁସରଣ କରି ଆମେ ମଧ୍ୟ ଯଶସ୍ୱୀ ହୋଇପାରିବା ।

ସଂସାର-ସମୁଦ୍ରକୂଳରେ ଯଦି କେହି ଦୁର୍ଭାଗ୍ୟ ଜନର ଜୀବନ ତରୀ ଚୂର୍ଣ୍ଣଭୂତ ହୁଏ, ତେବେ ବିଜନ ବେଳାରେ ଆମରିପଦାଙ୍କ ଦେଖି ତା' ମନରେ ଆଶା ସଞ୍ଚାର ହେବ । ପରିସ୍ଥିତି ଯାହାବି ହେଉ, ଧୈର୍ଯ୍ୟର ସହିତ ଆଳସ୍ୟରହିତ, ତ୍ୟାଗପୂତ କର୍ମ ସମ୍ପାଦନରେ ସମସ୍ତେ ଏକ ମନପ୍ରାଣରେ ଲାଗିପଡ଼ିବା ଉଚିତ୍ । ଏହାଦ୍ୱାରା ଆମେ ମଧ୍ୟ କାଳଗର୍ଭରେ କର୍ମବୀର ହୋଇ ଯଶସ୍ୱୀ ହେବା । ବାସ୍ତବିକ୍ ଏହା କବିଙ୍କର ଏକ ସଫଳ ଓ ସାର୍ଥକ ଅନୁବାଦ, ଯାହା କବିଙ୍କୁ ସବୁଦିନ ପାଇଁ ପାଠକ ସ୍ୱୀୟ ଅନ୍ତରରେ ବାନ୍ଧିରଖିବ । ପ୍ରକାଶଭଙ୍ଗୀର ସରଳତା, ଭାବପ୍ରକାର ସ୍ୱଚ୍ଛତା ଏବଂ ଶବ୍ଦ ସଂଯୋଜନାର ଦକ୍ଷତା ଉକ୍ତ କବିତାକୁ ଅନନ୍ୟ କରି ତୋଳିଛି ।

'କୃଷ୍ଣା' କବିତାଟି ସହକାର ୧୨ଶ ଭାଗ / ୫ମ ସଂଖ୍ୟାରେ ପ୍ରକାଶିତ । କବି 'କୃଷ୍ଣା'କୁ ସନ୍ଧ୍ୟା-ସାଥି-ଶାନ୍ତିମୟୀ ରାଣୀ ଏବଂ ବାଦଲପୁରୀର ବାଳା ଭାବରେ କଳ୍ପନା କରିଛନ୍ତି । ସେ ପୁଣି ତାଙ୍କର ପ୍ରେୟସୀ ପରାଣ-ରାଧା, ଯାହାଙ୍କୁ କିଶୋରକାଳୁ ସ୍ନେହ, ସୋହାଗ ପ୍ରୀତିର ମାଳା ଦେଇ ସେ ବରଣ କରିଛନ୍ତି ।

ଏ କ୍ଷେତ୍ରରେ କବି ସନ୍ଧ୍ୟାକୁ ଏକ 'ବଧୂ' ଭାବରେ କଳ୍ପନା କରି ତା'ର ରୂପଚିତ୍ର ଅଙ୍କନ କରିଛନ୍ତି । 'ତପସ୍ୱିନୀ' କାବ୍ୟରେ ସ୍ୱଭାବକବି ଗଙ୍ଗାଧର ମେହେର 'ଉଷାଦେବୀ'ଙ୍କଠାରେ ବ୍ୟକ୍ତିତ୍ୱ ଆରୋପ କରି ସୂର୍ଯ୍ୟବଂଶୀୟା ବଧୂ ସତୀ-ସ୍ୱାଧ୍ୱୀ-ସୀତାଦେବୀଙ୍କ ପାଇଁ ବାଲ୍ମୀକି ଆଶ୍ରମରେ ପ୍ରାତକାଳୀନ ସୌନ୍ଦର୍ଯ୍ୟକୁ ଯେପରି ନିଖୁଣ ଭାବରେ ସ୍ୱୀୟ ହୃଦୟର ଭାଷା ବିନ୍ୟାସରେ ପ୍ରାଣସ୍ପର୍ଶୀ କରିଛନ୍ତି, କବି ପଢ଼ିଆରୀ ମହୋଦୟ ଅନୁରୂପ ଭାବରେ ସୂର୍ଯ୍ୟାସ୍ତରେ ମନୋରମ ପ୍ରାକୃତିକ ଅବିର-ଆରକ୍ତ ରୂପ ସୁଷମାକୁ ବର୍ଣ୍ଣନା କରିବାକୁ ଉଲ୍ଲସିତ ହୋଇଉଠିଛନ୍ତି । ସତେଯେପରି ସନ୍ଧ୍ୟାବଧୂର ଅଧରରୁ ରକ୍ତ ଥୋପି ପଡୁଛି । ସମଗ୍ର ସ୍ୱର୍ଗପୁରୀ ଆରକ୍ତବର୍ଣ୍ଣରେ ରଞ୍ଜିତ ହୋଇ ସନ୍ଧ୍ୟାରାଣୀଙ୍କ ଚରଣକୁ ରଙ୍ଗାୟିତ କରିଛି । ତାଙ୍କ ଅଧର ବନ୍ଧୂଳି ରାଗରେ ଏବଂ

ଲକ୍ଷ୍ମୀପାଦ-କମଳକୁ ଆରକ୍ତ କରିଦେଇଛି । ଆହୁରି କାନରେ ସନ୍ଧ୍ୟାତାରାର ହୀରକ ଝୁମୁକାକୁ ରକ୍ତବର୍ଣ୍ଣର ବାସ ତାଙ୍କୁ ଅପରୂପା, ଅପୂର୍ବା କରିତୋଳିଛି ।

କବି ପିୟାସୀ ଆଖିରେ ତାଙ୍କୁ ସର୍ବଦା ଖୋଜିଛନ୍ତି । କଳାମେଘକୁ ଦେଖି ମୟୂର ଯେପରି ଉଲ୍ଲସିତ ନୃତ୍ୟ ରଚନାକରେ, କନକଗୋରୀ ସନ୍ଧ୍ୟାରାଣୀଙ୍କୁ ଦେଖିଲେ ତାଙ୍କ ପ୍ରାଣରେ ବୀଣାର ସୁମଧୁର ରାଗିଣୀ ସୃଷ୍ଟିହୁଏ । ଶରତର ମେଘମୁକ୍ତ ଆକାଶରେ ଧଳା ପଦ୍ମଫୁଲିଆ ମେଘମାଳା ଖଣ୍ଡ ଧାଡ଼ିଧାଡ଼ି ଭାସିଯାଉଥିଲେ ବି ମୟୂର ଯେପରି କଳାମେଘକୁ ଝୁରିହୁଏ, ମନ ସେହିଭଳି କନକଗୋରୀ ରୂପ ସୁଷମାରେ ମଗ୍ନ ହୋଇଥାଏ । ଆଷାଢ଼ର ବନ୍ଧା ହାଣ୍ଡିଆ ମେଘମାଳା ଯେତେ କୁତ୍ସିତା ହେଲେ ମଧ୍ୟ ବାରିପାତରେ ଉତ୍ତପ୍ତ ଧରଣୀକୁ ଶୀତଳତା ପ୍ରଦାନକରେ । କଳାହାଣ୍ଡିଆ ମେଘମାଳା କୋଳରେ ସ୍ଫୁରିତ କନକ-ଗୋରୀ ବିଦ୍ୟୁତ୍‌ଲତାର ଝଲସା ରୂପ ବନପାହାଡ଼ ଶିଖରକୁ ବଜ୍ରବାଣରେ ଜାଳି ଦେଇଥାଏ । ଶ୍ୟାମଳ ରୂପକାନ୍ତି ଦେଖି ଯୁବା-ଯୁବତୀ ମନ ଯେପରି ପାଗଳ ହୋଇଉଠେ, ବ୍ରଜପୁରର ଯୁବତୀମାନେ ଶ୍ୟାମଘନଙ୍କ ପାଦପଦ୍ମରେ ଜଣଜଣେକା ନିଜର ମନପ୍ରାଣକୁ ସମର୍ପଣ କରିଥାନ୍ତି ଏବଂ କାହ୍ନୁ ବିନା ସେମାନଙ୍କ ନୟନ ଅଶ୍ରୁଜଳରେ ସିକ୍ତ ହୋଇଉଠେ ।

କବି ପରାଣ - ରାଧାଙ୍କ ରୂପ ସୁଷମାରେ ପାଗଳ ହୋଇ ଦିନରାତି ତାଙ୍କରି ପଛରେ ଛୁଟିଛନ୍ତି ଏବଂ ନିର୍ଜନରେ ବସି ତାଙ୍କ ପାଦ-ନୂପୁରର ଶବ୍ଦ ଶୁଣିବା ପାଇଁ ଉଲ୍ଲସିତ ହୋଇଛନ୍ତି । ପରକ୍ଷଣରେ କବି ରୋମାଣ୍ଟିକ୍ ହୋଇଛନ୍ତି ଏବଂ ପ୍ରାଣପ୍ରିୟାକୁ କହିଛନ୍ତି, "ସବୁ କଥାକୁ ପାଦରେ ଦଳି ଦିନରାତି ତୁମ ରୂପର ଭକ୍ତ ହୋଇଛି । ତୁମ ଝିନବସନର ଗୋଲାପୀ କାନି ମୋ ଦୃଷ୍ଟିକୁ ଆସିଲେ ସାରା ଶରୀରର ରକ୍ତକଣିକା ଉନମତ୍ତ ହୋଇ ସିହରଣ ସୃଷ୍ଟିକରିଛି ।" ସେହି ସନ୍ଧ୍ୟାରାଣୀଙ୍କ ଆଗମନରେ ଧରାପୃଷ୍ଠରେ ଦେବାଦେବୀଙ୍କ ଆଳତି-ଅର୍ଚ୍ଚନାରେ ନବପୁଲକ ସୃଷ୍ଟିହୁଏ । ବିକଶିତ ବିବିଧ କୁସୁମର ସୁବାସିତ ରୂପ ସୁଷମା ବିଶ୍ୱପୁରରେ ମଦିରା ଭରିଦିଏ । ତୁମର ସେହି କମନୀୟ ରୂପକାନ୍ତିକୁ ଦେଖିଲେ ପ୍ରାଣ ପୂରିଉଠେ ଏବଂ ତପ୍ତପ୍ରାଣରେ ବର୍ଷାର ଧାରା ଛନ୍ଦହରା ଗାଥା ସୃଷ୍ଟିକରେ ତଥା ଆନନ୍ଦରେ ଶରୀର ପୁଲକିତ ହୋଇଉଠେ । ଶେଷରେ କବି ପ୍ରୀତିପିଆରୀ ପ୍ରିୟା କୃଷ୍ଣାଙ୍କୁ ସ୍ନେହ ସୋହାଗରେ ହୃଦୟବକ୍ଷକୁ ତୋଳି ନେବାକୁ ଇଚ୍ଛା ପ୍ରକାଶ କରିଛନ୍ତି ।

'ସନ୍ନ୍ୟାସୀ ଉପଗୁପ୍ତ' କବିତାଟି ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ 'ଅଭିସାର' କବିତାରୁ ଅନୂଦିତ । ରବୀନ୍ଦ୍ରନାଥଙ୍କ 'କଥା' କବିତା ଗ୍ରନ୍ଥରେ ଯାହା ବଙ୍ଗଳା ୧୩୦୪ସାଲରୁ ୧୩୦୬ସାଲ ମଧ୍ୟରେ ରଚିତ 'ଦେବତାର ଗ୍ରାସ' 'ପୂଜାରିନି', 'ଅଭିସାର', 'ପରିଶୋଧ', 'ବିସର୍ଜନ' 'ବନ୍ଦୀବୀର', 'ହୋରିଲେଖା', 'ପନରକ୍ଷା' ଆଦି କବିତାଗୁଡ଼ିକ ସ୍ଥାନିତ । କବିତାଗୁଡ଼ିକ କାହାଣୀଧର୍ମୀ । 'ଅଭିସାର' କବିତାଟି କବି 'ବୋଧିସତ୍ତ୍ୱାବଦନ କଳ୍ପଲତା' ଗ୍ରନ୍ଥକୁ ଆଧାର କରି ରଚନା କରିଛନ୍ତି । କବିତାଟିର ରଚନାକାଳ ହେଉଛି ୧୯ ଆଶ୍ୱିନ ୧୩୦୬ସାଲରେ । 'ସନ୍ନ୍ୟାସୀ ଉପଗୁପ୍ତ ଓ ନଟୀ ବାସବଦତ୍ତା'ଙ୍କ ଚମତ୍କାର କାହାଣୀକୁ ଆଶ୍ରୟ କରିଛି କବିତାଟି ।

କବି ପଡ଼ିଆରୀ ମହାଶୟଙ୍କ ମନରେ ଏହି ହୃଦୟସ୍ପର୍ଶୀ ଅମରକାହାଣୀଟି ଗଭୀର ଭାବରେ ରେଖାପାତ କରିଛି । ଫଳରେ ରବୀନ୍ଦ୍ରନାଥଙ୍କ ରଚିତ ମୂଳକବିତାର ନାମକରଣଟିକୁ ସେ ପରିବର୍ତ୍ତନ କରିଛନ୍ତି । ଏକଥା ସ୍ପଷ୍ଟ ଯେ କବି ରବୀନ୍ଦ୍ର ଭକ୍ତ ଥିଲେ ତା' ନୁହେଁ, ବଙ୍ଗଳାସାହିତ୍ୟର ସମକାଳୀନ ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର, ତାରାଶଙ୍କର, ମଧୁସୂଦନ ଦତ୍ତଙ୍କ ସାହିତ୍ୟକୁ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ଯେଉଁସବୁ ରଚନା ତାଙ୍କୁ ମୁଗ୍ଧ କରିଛି, ସେସବୁର ଓଡ଼ିଆ ଭାଷାନ୍ତର କରିବାକୁ ପ୍ରୟାସ କରିଛନ୍ତି । ବଙ୍ଗଳା ଭାଷାରେ ତାଙ୍କର ବହୁ ଦକ୍ଷତା ଥିଲା । ସେ ବଙ୍ଗଳାରେ ଖୁବ୍‌ଭଲ କଥାବାର୍ତ୍ତା କରୁନଥିଲେ ବି ଚାନ୍ଦବାଲି ଏକଦା ବଙ୍ଗଦେଶର ବାଣିଜ୍ୟକେନ୍ଦ୍ର କଲିକତା ସହିତ ଜଳପଥରେ ଗମନାଗମନ ଓ ପରିବହନର ସଂଯୋଗସ୍ଥଳୀ ହୋଇଥିବାରୁ ଏବଂ ପଡ଼ିଆରୀବାବୁ ଷ୍ଟିମରକମ୍ପାନୀରେ ଦୀର୍ଘବର୍ଷ କାର୍ଯ୍ୟରତ ଥିବାରୁ ବଙ୍ଗଭାଷୀଙ୍କ ସହିତ ଭାବ ଆଦାନ ପ୍ରଦାନ ଜନିତ ସମ୍ପର୍କ ସମ୍ପାଦନରେ ଦକ୍ଷଥିଲେ । ତା'ଛଡ଼ା ସାହିତ୍ୟ ପ୍ରତି ତାଙ୍କର ଗଭୀର ଅନୁରାଗ ଥିବା ହେତୁ ଏବଂ ଜଣେ ଶିକ୍ଷିତ ସମାଜ ନିର୍ମାତା ଶିକ୍ଷକ ହୋଇଥିବାରୁ, ବଙ୍ଗଳାଭଳି ଶ୍ରୁତିମଧୁର ଓ ଉନ୍ନତ ଆଧୁନିକ ଭାଷା ସାହିତ୍ୟକୁ ପଢ଼ିବା, ଲେଖିବା ଓ କହିବାରେ ତାଙ୍କପାଇଁ ବିଶେଷକିଛି କଷ୍ଟକର ନଥିଲା । ଆଲୋଚ୍ୟ କବିତାରେ ତାଙ୍କ ବଙ୍ଗାନୁବାଦର ଏକ ସଫଳ ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା –

ରବୀନ୍ଦ୍ରନାଥଙ୍କ ମୂଳବଙ୍ଗଳା :

"ଝରିଛେ ମୁକୁଲ, କୂଜିଛେ କୋକିଲ, ଯାମିନୀ ଜୋଛନାମତ୍ତା
'କେ ଏସେଛ ତୁମି ଓଗୋ ଦୟାମୟ'
ଶୁଧାଇଲ ନାରୀ, ସନ୍ନ୍ୟାସୀ କୟ,
ଆଜି ରଜନୀତେ ହୟେଛେ ସମୟ, ଏସେଛି, ବାସବଦତ୍ତା !"

ପଡ଼ିଆରୀବାବୁଙ୍କ ଅନୂଦିତ ଓଡ଼ିଆ ଭାଷାନ୍ତର -

"ଝରଇ ମୁକୁଳ କୂଜଇ କୋକିଳ
ଯାମିନୀ ଜ୍ୟୋସ୍ନା-ମତ୍ତା
ନାରୀ କହେ ଆଗୋ "କିଏ ଦୟାମୟ ?"
ସନ୍ନ୍ୟାସୀ ଦେଲେ ନିଜ ପରିଚୟ
ଆଦି ରଜନୀରେ ହୋଇଛି ସମୟ
ଆସିଛି, ବାସବଦତ୍ତା ।"

'ହରିନାମ' କବିତାଟି କୌଣସି ଏକ ହିନ୍ଦୀକବିତାରୁ ଅନୁଦିତ । ଉକ୍ତ କବିତାରେ କବି ହରିନାମର ମହାତ୍ମ୍ୟ ପ୍ରକାଶ କରିଛନ୍ତି । 'ରସକଲ୍ଲୋଳ'କାର ଦୀନକୃଷ୍ଣଙ୍କ ଭାଷାରେ "କୃଷ୍ଣନାମରେ ପାପକ୍ଷୟ ହୁଏ ଯେତେ / ପାପୀ ପାପ କରି ନପାରେ ସେତେ ।" କଳିର କଳୁଷ ନାସନ ପାଇଁ ସଂସ୍କୃତ ଭାଗବତରେ ବର୍ଣ୍ଣିତ ଅଛି, "ହରେନାମଃ ହରେନାମଃ ହରେନାମଃ କେବଳମ୍ / କଲୌ ନାସନମ୍ କଲୌ ନାସନମ୍ କଲୌ ନାସନମ୍ କେବଳମ୍ ।"

ଏଇ ନାମର ବୃନ୍ଦାବନ ହେଉଛି ବ୍ରଜସୁନ୍ଦରଙ୍କ ନିବାସସ୍ଥଳୀ । ସେ ପୁଣି ନାରଦଙ୍କ ବୀଣାର ମଧୁର ସ୍ୱର । ସେ ବି ମୁକ୍ତ ମଠର କଳ୍ପତରୁ । ନାମର ସୁଧାରେ ମରୁଭୂମି ମଧ୍ୟ ସିକ୍ତହୁଏ । ଭଗୀରଥ ସ୍ୱର୍ଗରୁ ପବିତ୍ର, ଗଙ୍ଗାଧାରା ଆଣି ଯେପରି ସଗର ବଂଶକୁ ଉଦ୍ଧାର କରିଥିଲେ, ସେହିଭଳି ହରିନାମ ରୂପକ ମନ୍ଦାକିନୀର ଶ୍ୟାମଳ

ବଂଶୀଧାରା ସଂସାରର ପଥହରା ମୁମୂର୍ଷୁ ଜନର ଏ ସଞ୍ଜିବନୀ ମହୌଷଧ ଏବଂ ଅନ୍ଧଜନର ଦିବ୍ୟଜ୍ୟୋତି ପୂର୍ଣ୍ଣ ନୟନତାରା ସଦୃଶ । ଏହି ନାମ ମନ୍ତ୍ର ପୁଣି ଶୋକସନ୍ତପ୍ତ ଦୁଃଖୀ ଜନର ଜୀବନ ସାଥୀ, ଯାହା ତା' ଜୀବନ-ମୃତ୍ୟୁକୁ ସାର୍ଥକ କରେ । ସଂସାର ପଥହରା ହୃଦୟୀଜନଙ୍କ ପାଇଁ 'ହରେକୃଷ୍ଣ' ନାମ ହେଉଛି ଉଜ୍ଜ୍ୱଳ ଜହ୍ନରାତି ସଦୃଶ । ଏହି ଜୀବନ ହେଉଛି ଗଙ୍ଗା, ଏହା ପୁଣି ଗୟା । ଏହି ଜୀବନର ସାର୍ଥକତା ଫୁଟିଉଠେ ମନ୍ତ୍ରଜପ ଓ ଯଜ୍ଞାଦିରେ । ମାୟା ମୋହଗ୍ରସ୍ତ ସଂସାରବାସୀଙ୍କ ଜୀବନ-ମୁକ୍ତ ପାଇଁ ଗୌରନିତାଇଙ୍କ 'ହରେକୃଷ୍ଣ' ନାମ ମନ୍ତ୍ର ହିଁ ପରିତ୍ରାଣର ଏକମାତ୍ର ସମ୍ବଳ ।

'ଉଷା' କବିତାରେ କବି ଉଷାକାଳର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ରାତ୍ରିର ଅବସାନ ପରେ ଝିଲିମିଲି ଅନ୍ଧାରର ଉଡ଼ାଳରେ ପଦ୍ମନୟନା ଉଷା ଦେବୀଙ୍କର ଆଗମନୀ ଘଟେ । ଗୋଲାପୀ ଅଞ୍ଚଳ ପରିହିତା ଉଷାଦେବୀଙ୍କ ଶୁଭ୍ର ଅପଘନରେ ପ୍ରଭାତୀ ତପନ ଉଇଁଉଠେ । ସେତେବେଳେ ସେ ଅପରୂପା ଅନନ୍ତ ଯୌବନା ହୋଇ ସ୍ୱୀୟ ବିମୋହନ ରୂପକାନ୍ତି ଦ୍ୱାରା ନିଷ୍ଠୁର କାଳ-ହୃଦୟକୁ ମୋହିତ କରିଦିଏ ।

'ମହାନଦୀ' କବିତାରେ ଗଗନଭେଦୀ ବିନ୍ଧ୍ୟ ଗିରିସମ୍ରାଟ-ସୁତା-ମହାନଦୀର ଉତ୍ପତ୍ତି, ଧରାବତରଣ, ବର୍ଷାଋତୁରେ ତା'ର ନବଯୌବନା ରୂପକାନ୍ତ ଏବଂ ପତିଦେବତାଙ୍କ ଦର୍ଶନ ଅଭିଳାଷୀ, ଉଲ୍ଲସିତ ପ୍ରାଣା ସାଗର ସଙ୍ଗମରେ ଜୀବନର ଚରମ ଆତ୍ମତୃପ୍ତି ଏବଂ ପରମ ଶାନ୍ତିଲାଭ କଥା ଉଲ୍ଲେଖ କରିଛନ୍ତି । ଏହା ଏକ ଅସମ୍ପୂର୍ଣ୍ଣ ରଚନା । କବି ଗିରିକନ୍ୟା ମହାନଦୀଙ୍କଠାରେ ପ୍ରେମ-ପ୍ରଣୟର ମାନବୀୟ ରୂପସମ୍ଭାର ଅଜାଡ଼ିଦେଇ ବର୍ଣ୍ଣନା କରିଛନ୍ତି -

ପାଅ ଯେବେ ନୀଳାମ୍ବୁର ସରାଗ ପତର
ହୃଦୟର ସୁପ୍ତ ତନ୍ତ୍ରୀ ତବ
କମ୍ପଇ ସଘନେ,
ଯୁବକର ପ୍ରେମଭରା ମଧୁ ସମ୍ବୋଧନେ
କମ୍ପଇ ସଘନେ ଯଥା

ତରୁଣୀ ଅନ୍ତର;
ଗୋଲାପୀ ବରଣ ବାସେ ଶରୀର ଆବରି
ସଜଫୁଟା ମଲ୍ଲିକାର ଫୁଲେ
ଉଦ୍ଦାମ ପ୍ରଫୁଲ୍ଲେ
ମଣ୍ଡିଥାଅ ସୁନ୍ଦର-କବରୀ
ଯୌବନର ଉଦ୍ଦାମ କାମନା
ଜଳିଉଠେ ଅନ୍ତରେ ତୁମରି,
ଦୀର୍ଘ ବିରହର ପରେ କମ୍ପିତ ହୃଦୟେ
ଧରି କରେ ଭକ୍ତିଭରେ ପ୍ରେମର ପିଆଲା
ପତି ଦରଶନ ଆସେ ହୁଅ ତରତର
ଆଗୋ, ସୁନ୍ଦରୀ ସ୍ୱର୍ଗର !

ସତେଯେପରି ଗିରିକନ୍ୟା-ମହାନଦୀ ପ୍ରଣୟୀ-ପରମେଶ୍ୱରଙ୍କ ମିଳନ ଉତ୍କଣ୍ଠାରେ ବ୍ୟଗ୍ର ହୋଇ ନବଯୌବନାର ସୁସଜ୍ଜିତା ରୂପସମ୍ଭାରରେ ଅଭିସାରିକା ପାଲଟିଯାଇଛନ୍ତି ।

'ଷୋଡ଼ଶୀ' କବିତାଟି ମଧ୍ୟ ଏକ ସମ୍ପୂର୍ଣ୍ଣ ରଚନା । ସ୍ୱର୍ଗ-ସୁନ୍ଦରୀ ଦେବବାଳା ଷୋଡ଼ଶୀ ରୂପସୀ କନ୍ୟା ସ୍ୱର୍ଗ-ନନ୍ଦନକାନନର ପାରିଜାତ ତୁଲ୍ୟା । ଯାହାଙ୍କ ରୂପ, ଗୁଣ, ଚାହାଁଣୀ, ଚପଳତା କବିଙ୍କୁ ଭାବମୁଗ୍ଧ କରିଛି । କବିଙ୍କ କଳ୍ପନାରେ ସେ ଏକ ସ୍ୱର୍ଗର ତାରକା ମାତ୍ର ନିର୍ଜନ ମର୍ତ୍ତ୍ୟଭୂମିରେ ଭାବନାରତା । କବିତାଟି 'ସହକାର' ୧୦ମ ଭାଗ / ୫ମ ସଂଖ୍ୟାରେ ପ୍ରକାଶିତ ।

ଫୁଲଫୁଟା, ବାସ ମହକା ସନ୍ଧ୍ୟାରେ ଯେ ନୀଳ ଆକାଶକୁ ନିର୍ନିମେଷ ନୟନରେ ଚାହିଁ ରହିଥାଏ । ତା'ର କଜ୍ଜଳଘେନା ଆଖିରେ ଆଖି ମିଶିଗଲେ ସେ ଲାଜେଇ ଯାଏ । ମାତ୍ର ତା' ଚାହାଁଣୀର ମନ୍ତ୍ରମୁଗ୍ଧ ମୋହନୀୟତା ମନକୁ ସର୍ବଦା ଆକର୍ଷିତ କରିଥାଏ ।

ଲୋଟଣିପାରାର ପଛେପଛେ ଚଞ୍ଚଳ ପାଦପାତରେ ତା' ଉଡ଼ନ୍ତ ଅଞ୍ଚଳର ନୀଳମଣି ଜିଣା ଶୋଭା ଏବଂ ଆଲୁଳାୟିତ ଭୂଲୁଣ୍ଠିତ ଘନ କେଶରାଶିର ସୌନ୍ଦର୍ଯ୍ୟଠାରେ କନ୍ଦର୍ପର ପୁଷ୍ପଧନୁ ପ୍ରୟୋଗ ଦାମ୍ଭିକତା ମଧ୍ୟ ହାର ମାନିଥାଏ ।

ସମ୍ପୂର୍ଣ୍ଣ ଆନମନା ହୋଇ ତୁମେ ଅପଲକ ନୟନରେ ବାତାୟନ ଦେଇ ଉଦାସୀ ହୃଦୟରେ ଆକାଶର ନୀଳିମାକୁ ଚାହିଁ ବସିଥାଅ । ମୃଦୁ ମନ୍ଦ ସମୀରଣର ଶୀତଳତା ସ୍ପର୍ଶରେ ଚିକୁରଃ ତୁମ ଶିହରିଉଠେ । ଏକାକିନୀ ନିର୍ଜନତାରେ ଭାବ ବିଭୋର ହୋଇ ଦୂରଆକାଶର ରଜତଢ଼ଳା ହାସ୍ୟମୟୀ ଚନ୍ଦ୍ରମାର ରୂପଲାବଣ୍ୟକୁ ଅନ୍ୱେଷଣ କରୁଥାଅ ।

କବି ସେହି ଶିରୀଷ କୁସୁମସମ ସୁକୁମାରୀ, ଗରିବ କୁଟୀରର ଲକ୍ଷ୍ମୀରାଣୀ ଷୋଡ଼ଶୀର ରୂପକାନ୍ତିରେ ମୁଗ୍ଧ ହୋଇଛନ୍ତି । ତା'ର ହାସ୍ୟମୟୀ, ଲାସ୍ୟମୟୀ, ସ୍ନେହବୋଳା, ହୃଦୟ ଖୋଲା ଅନୁରାଗ କବିଙ୍କ ହୃଦୟ ପାଖୁଡ଼ାରେ ପ୍ରୀତିର ପରାଗରେଣୁ ହୋଇ ସବୁଦିନ ରହିଯାଇଛି । ଅତୀତ ଦିନର ସ୍ମୃତିକୁ ମନରୁ କେବେ ସେ ପାଶୋରି ପାରିନାହାନ୍ତି । ପରକ୍ଷଣରେ ଏହା କବିଙ୍କ ଆଦ୍ୟ ଜୀବନର ପତ୍ନୀପ୍ରେମର ଜ୍ୱଳନ୍ତ ନିଦର୍ଶନ କହିଲେ ଭୁଲ୍ ହେବନାହିଁ ।

'ବିରହ-ରାଗିଣୀ' କବିତାରେ କବି ଅନ୍ତରରେ ସୃଷ୍ଟିହୋଇଥିବା ବିରହ ବ୍ୟଥାର ଚିତ୍ର ପ୍ରତିଫଳିତ । କୌଣସି ଗୋଧୂଳି ଲଗ୍ନରେ କବି ଏକାକୀ ବସି ସନ୍ଧ୍ୟା ପ୍ରକୃତିକୁ ଉପଭୋଗ କରୁଥାନ୍ତି । ଅସ୍ତାଚଳକୁ ରବିଙ୍କ ଗମନ, ନୀଡ଼ ବାହୁଡ଼ା ପକ୍ଷୀମାନଙ୍କର ମଧୁର କୋଳାହଳ, ସମ୍ମୁଖରେ ପ୍ରବାହିତା ସ୍ଥିର ବୈତରଣୀ, ନଦୀ ବାଙ୍କରେ କ୍ଳାନ୍ତ ନାଉରିଆର ମନ୍ଥର କ୍ଷେପଣୀପାତ, ସବୁଦିନ ପରି କ୍ଳାନ୍ତପକ୍ଷୀ ଦମ୍ପତିଙ୍କ ନୀଡ଼ ବାହୁଡ଼ା ଦୃଶ୍ୟର ବ୍ୟତିକ୍ରମ, ଆଜି ବିରସ ବଦନା, ଉଦାସୀ, ନୀରବ କଣ୍ଢୀ ନୀଡ଼ବାହୁଡ଼ା ନିଃସଙ୍ଗ ପକ୍ଷୀଟିର ହୃଦୟବେଦନା କବି ଅନ୍ତରକୁ ବ୍ୟଥିତ କରିଛି । କୌଣସି ପାଷାଣ-ହୃଦୟ ବ୍ୟକ୍ତିଟି ସାଥୀପକ୍ଷୀଟିକୁ ବଧକରି ଆଜି ତାକୁ ଅଲଗା କରିଦେଇଛି । ସାଥୀହରା ହୋଇ ଅନ୍ୟପକ୍ଷୀଟି ଅବଶିଷ୍ଟ ଜୀବନ କିପରି କାଟିବ, ତାହା ତାଙ୍କ ଭାବନାର କାରଣ ହୋଇଛି । ପରକ୍ଷଣରେ ଏହାହିଁ କବିଙ୍କ ମାନବବାଦୀ, ସମ୍ବେଦନଶୀଳ, ଦରଦୀହୃଦୟର ଭାବୋଦ୍ଗମ ।

'ଅସାର ସଂସାର' କବିତାରେ କବି ସଂସାରର କ୍ଷଣଭଙ୍ଗୁରତା ବିଷୟରେ ସୂଚନା ଦେଇଛନ୍ତି । ଏହି ସୁନ୍ଦର ସଂସାରରେ ଚିରସ୍ଥାୟୀ ବୋଲି କିଛିନାହିଁ । ଆଶା ବିଶ୍ୱାସ, ଭାବ ଭାବନା, ଧନ ସମ୍ପତ୍ତି, ଜୀବନ ଯୌବନ ସବୁକିଛି କ୍ଷଣିକ । ଏକଥା ଭଲଭାବରେ ଜାଣି ମଧ୍ୟ ମନୁଷ୍ୟ କ୍ଷଣଭଙ୍ଗୁରତା ମଧ୍ୟରେ ନିଜର ଭୂ-ସମ୍ପତ୍ତି, ପ୍ରତିପତ୍ତି ଓ ପ୍ରଭୁତ୍ୱ ଜାହିର କରିବାରେ ବ୍ୟସ୍ତ । ଅଜ୍ଞାନୀ ଭାବରେ ସେ ବୁଝି ମଧ୍ୟ ଅନ୍ଧ ଜଡ଼ତାରେ ବୁଝିପାରେ ନାହିଁ ଯେ ତା'ର ଏହି ସୌଖୀନ୍ ଶରୀରଟି ଦିନେ ଅଗ୍ନିସଂଯୋଗରେ ଜଳି ପାଉଁଶ ହୋଇଯିବ ଏବଂ ତା' ଆଶାର ବିପଣୀ, ବିଳାସର ସ୍ୱପ୍ନପୁରୀ ସବୁକିଛି ମିଛ ହୋଇ ଚୁରମାର ହୋଇଯିବ । ମାନବ ସମାଜ ପ୍ରତି କବିଙ୍କର ଏହା ଏକ ସଚେତନ ବାଣୀ ।

'ବୁଝି ମୁଁ ପାରେନା' କବିତାଟି କଟକ ପ୍ୟାରୀମୋହନ ଏକାଡ଼େମୀର ଶେଷପର୍ବର ଛାତ୍ର ଥିବାବେଳେ ତା.୦୭.୦୫.୨୬ ମସିହାରେ ରଚନା କରିଥିଲେ । ଆର୍ଥିକ ସ୍ୱଚ୍ଛଳତା ଅଭାବରୁ ବହୁ ଦୁଃଖକଷ୍ଟ ମଧ୍ୟରେ ତାଙ୍କ ଛାତ୍ରଜୀବନ ଅତିବାହିତ ହୋଇଥିଲା । ମନରେ ଦୃଢ଼ ସଂକଳ୍ପ ନେଇ ସମସ୍ତ ପ୍ରତିକୂଳ ପରିସ୍ଥିତିକୁ ସାମ୍ନା କରି ସେ ଶିକ୍ଷାର୍ଜନ କରିଥିଲେ । ବିଧାତା କେଉଁଥିପାଇଁ ତାଙ୍କ ଭାଗ୍ୟରେ ଏତେ ଦୁଃଖ ଲେଖିଛନ୍ତି, ସେ କଥା ସେ ବୁଝିପାରି ନାହାନ୍ତି । ଯଦିଓ ସେ କଟୂକଥା କହି କାହାରି ଅନ୍ତରରେ ବିଷ ଭରିଦେଇ ନାହାନ୍ତି କି କାହାରି ଅପରାଧ ମଧ୍ୟ କରିନାହାନ୍ତି । ଅଥଚ ବିଧାତା ତା' ଅଧରରୁ ହସ ଟିକକ ଛଡ଼ାଇ ନେଇ ଅଶ୍ରୁର ଝରଣା ଭରିଦେଇଛନ୍ତି । ତଥାପି ଛାତିକୁ ପଥରକରି ସବୁକିଛି ବ୍ୟଥା ଓ ବେଦନାକୁ ଭୁଲିଯାଇଛି । ଆଜି ତା' ଜୀବନ ଆକାଶରେ ଅବସାଦର କାଳିମା ଘୋଟିଆସିଛି । ଜୀବନ ଜୀଇଁବାର ମଧୁସ୍ୱାଦ ସବୁ ତୁଟିଯାଇଛି । ଏହା କବିଙ୍କ ଈଶ୍ୱରଙ୍କ ପ୍ରତି ଏକ ପରୋକ୍ଷ ଅଭିମାନଭରା ଆତ୍ମନିବେଦନ ।

'ଅଭିସାରିକା' କବିତାରେ ଏକ ପ୍ରତିକୂଳମୁଖୀ ଅନ୍ଧକାରମୟ ଗଭୀର ରଜନୀରେ ପ୍ରଣୟିନୀ କିପରି ପ୍ରଣୟୀ ସନ୍ଧାନରେ ଅଭିସାରିକା ସାଜିଛନ୍ତି ତା'ର ବାସ୍ତବ ଚିତ୍ର କବି ପ୍ରଦାନ କରିଛନ୍ତି । ପ୍ରଣୟୀ ପାଗଳ ପ୍ରଣୟିନୀ ମନରେ ସଦା ଚମକ ଲାଗିଯାଏ, ପଥ ଚାଲିବାକୁ ତାକୁ ଅଭୟ ମିଳିଯାଏ । ଚତୁର୍ଦ୍ଦିଗରେ ଝିଲ୍ଲୀମାନଙ୍କର

ସାଇଁସାଇଁ ଶବ୍ଦରେ ସେ ଅନୁଭବ କରେ ସତେଯେପରି ତା'ର ସମବୟସୀମାନେ ଅଭିସାରରେ ଯାଉଛନ୍ତି । ଯାହାଙ୍କ ପାଇଁ ତା'ର ସମଗ୍ର ଦିବସଟି ବିଜନ ପ୍ରତୀକ୍ଷାରେ କଟିଯାଏ । ଚଞ୍ଚଳପାଦ ପାତରେ ନୂପୁରର ଯେଉଁ ରୁଣୁଝୁଣୁ ନିନାଦ ସୃଷ୍ଟିହୁଏ, ସେ ଦୁଃଖ କେବଳ ରଜନୀ-ସହଚରୀ ହିଁ ବୁଝିପାରନ୍ତି ।

ଜଗତରେ ପ୍ରୀତି ଯେ କେଉଁ ଦ୍ରବ୍ୟ ସେ ଜାଣିପାରେ ନାହିଁ । ଅଥଚ ଲକ୍ଷ୍ୟ ଆଖି ତା'ର ଯାତ୍ରା ସରଣୀକୁ ଜଗି ରହିଥାନ୍ତି ଏବଂ ଅନ୍ଧକାରର ବନ୍ୟା ସୃଷ୍ଟିକରି ଧରଣୀକୁ ପ୍ଲାବିତ କରିଦିଅନ୍ତି । ଉନ୍ମାଦର ଅଞ୍ଜନ ସଭିଙ୍କ ନେତ୍ରରେ ବୋଳି ଧରଣୀକୁ ବିନିଦ୍ର କରନ୍ତି କେବଳ ତା'ର ଯାତ୍ରାପଥକୁ ନିର୍ଜନ କରିବା ଲାଗି ।

ଗବାକ୍ଷ ମେଲି ନୀରବ ଆକାଶକୁ ନିରୀକ୍ଷଣ କଲେ ଲାଗେ ଯେପରି ଆକାଶର ଜ୍ୟୋତିଷ୍କପୁଞ୍ଜ ଏଣେତେଣେ ଖସିପଡୁଛନ୍ତି । ସ୍ୱର୍ଗର ନନ୍ଦନକାନନରେ ଦେବଦେବୀମାନେ କୌତୁକଲୀଳା ରଚନା କରୁଛନ୍ତି । ସୁରବାଳାଙ୍କ ଲୁଚକାଳି ଖେଳ ଅବସରରେ ସେମାନଙ୍କ ବୋଳାୟମାନ ଗଳା ହାରରୁ ମଣି ମୁକୁତା ଏଣେତେଣେ ଖସିପଡ଼ି ଆଲୋକିତ ଅନ୍ଧାର ରଚନା କରୁଛି ।

ପୁଷ୍ପ-ସୁବାସିତ ଚଇତ୍ର, ମଳୟପୁର ପ୍ରାଙ୍ଗଣକୁ ମହକାଇ ଦିଏ । ବଉଳ, ମାଳତୀ, ମଲ୍ଲୀପୁଷ୍ପର ମହକିତ ପରାଗ ପାଖୁଡ଼ା ଶେଯରେ ବିଞ୍ଚି ହୋଇପଡ଼େ । ତନୁ ଶିହରି ଉଠେ । ଉତ୍ତାଳ ପ୍ରାଣରେ କିଏ ଯେପରି ମିଳନର ମୂରଲୀ ବଜାଉଥାଏ । ରଜନୀ ବାରମ୍ବାର ଅଭିସାରିକା କାନରେ କହେ, ଚାଲିଆସ ସଖି ! କେହି ନାହିଁ ତୁମ ଆସିବାକୁ ଦେଖିବ ବୋଲି । ମନରୁ ଯଦିଓ ଲାଜ, ମାନ, ଭୟ ହଜି ନଥାଏ, ତଥାପି ପାଗଳ ପରି ସେ ଆସି ପଥ ମଧ୍ୟରେ ଉପସ୍ଥିତ ହୁଏ ।

ତୁମେ ହିମାଦ୍ରି ଭଳି ଏକ ବିଶାଳ ଚୁମ୍ବକ ହୋଇଥିବାରୁ ମୋଭଳି ସାମାନ୍ୟ ଲୌହ କାଠି ବା କିପରି ସ୍ଥିରହୋଇ ନିଜ ଗୃହ ମନ୍ଦିରରେ ରହିପାରନ୍ତା ? ଏହା ଥିଲା ଅଭିସାରିକା ନାୟିକାଙ୍କ ହୃଦୟ ବେଦନା ।

'କିଶୋରୀ' କବିତାଟି କବିଙ୍କ ଏକ ଅନୁପମ ସୃଷ୍ଟି । ନବଯୌବନା କିଶୋରୀ ମନକୁ କବି ସୁନ୍ଦର ଭାବରେ ବିଶ୍ଳେଷଣ କରିଛନ୍ତି । ତା'ର ଚାଲିଚଳଣି, କଥାବାର୍ତ୍ତା, ଚାହାଁଣୀ, ଲାଜପଣ, ବେଶଭୂଷା, ଚପଳତା, ମଦିରାଭରା ଶିହରଣ ଅବସ୍ଥାକୁ ସରଳ ସାବଲୀଳ ଭାଷାବିନ୍ୟାସରେ ପ୍ରକାଶ କରିଛନ୍ତି । ଏଭଳି ମନଛୁଆଁ ବର୍ଣ୍ଣନାଟି ହେଉଛି -

ସରାଗ ମନେ ଚୋରା ପବନେ

ଫଗୁଣ ଆସି ଖେଳଇ

ଆମ୍ବବଉଳ ମହକ ତଳେ

ବାଳାର ମନ ଦୋଳଇ ।(କିଶୋରୀ)

'ପ୍ରେୟସୀ' କବିତାରେ କବି ଅନୁରୂପ ଭାବରେ ପ୍ରେମିକ ମନର ପ୍ରେୟସୀପ୍ରତି ଭାବନା ବା ଦୁର୍ବଳତାକୁ ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରେୟସୀକୁ ଦିନକପାଇଁ ନ ଦେଖିଲେ ଅନ୍ତରରେ ତା'ପ୍ରତି ବ୍ୟାକୁଳତା ସୃଷ୍ଟିହୁଏ ଏବଂ ରାତିସାରା ଆଖିରୁ ନିଦ ହଜିଯାଏ । ମନେମନେ କଳ୍ପନାରେ ଭାବିଚାଲେ ଯଦି ସେ ପ୍ରେୟସୀକୁ ପାଇପାରନ୍ତା, ତା'ହେଲେ ତା'ର ସୁଖର ଦିନଗୁଡ଼ିକ ସୁହାଗରେ କଟିଯାନ୍ତା । ଏକାକିନୀ ବସି ସେ ଗୋଡ଼ରେ ଅଳତା, ଗଳାରେ କୁସୁମର ମାଳା, ଦର୍ପଣ ଦେଖି ମୁଣ୍ଡ ବାନ୍ଧନ୍ତା ଏବଂ ସେ ପ୍ରେମରେ ଡାକନ୍ତା ପ୍ରେୟସୀ ! ବୋଲି । ଦିନରାତି ଯାହାଙ୍କ କଥା ସେ ଭାବି ହେଉଛି, ସେ କ'ଣ କେବେ ତା' କଥା ଭାବେ ? ଏକଥା ଭାବିଲେ ହୃଦୟତାର କରତି ହୋଇଯାଏ । ପରକ୍ଷଣରେ ଏହା କବିଙ୍କ ଯୌବନାବସ୍ଥାର ଏକ ଚପଳ-ଚିନ୍ତନ କହିଲେ ଭୁଲ୍ ହେବନାହିଁ ।

'ଗିରିବର' କବିତାରେ ଗିରିବରକୁ ସମ୍ବୋଧନ କରି କବି କହିଛନ୍ତି, ଦୂର ରାଇଜରୁ ଭାସି ଆସିଥିବା କଳାମେଘ ତୋ ଚୂଳିରେ କି ବାରତା ଶୁଣାଉଥାଏ ? ଯୋଗୀସମ ଯୋଗାସ୍ଥନରେ ବସି ସଦାସର୍ବଦା ନିରବ ମନରେ ଆକାଶକୁ ଉଦାସ ଭାବରେ ଚାହିଁଥାଉ ।

ତୋ ପୃଷ୍ଠରେ ଯେତେ ଯେତେ ବର୍ଷା, ବିଜୁଳି, ଘଡ଼ଘଡ଼ି ଓ ବତାସ ଲାଗି ରହିଥିଲେ ମଧ୍ୟ ସେଥିପ୍ରତି ଟିକେ ଭ୍ରୂକ୍ଷେପ ନଥାଏ । କାରଣ ତୋ ଶରୀର ପ୍ରସ୍ତର ନିର୍ମିତ ହୋଇଥିବାରୁ ପାଦଦେଶ ଦୃଢ଼ ଏବଂ ଦମ୍ଭ । ଏସବୁ ତୋର କିଛି ଅନିଷ୍ଟ କରିପାରେ ନାହିଁ ବରଂ ତୁ ତୋ ଶରୀରରୁ ବର୍ଷାର ଝରଣା ସୃଷ୍ଟିକରି ଜଗତବାସୀଙ୍କ ଚିର ତୃପ୍ତି, ମଙ୍ଗଳସାଧନ କରିଥାଉ ।

'ନିରାଶ ପଥିକ' କବିତାଟି କବିଭାବନାରେ ସଂସାରଯାତ୍ରୀ ଏକ ନିଃସଙ୍ଗ ପଥିକର ଅନ୍ତର୍ବେଦନା । ସଂସାର ପଥରେ ସେ ସର୍ବଦା ଏକାକୀ । ଅସହାୟ ଭାବରେ

ସେ ଯେତେବେଳେ ଦୁଇ ନୟନରୁ ଲୋତକ ଗଡ଼ାଏ, କେହିବି ତାକୁ ଟିକେ ଆଶ୍ୱାସନାପୂର୍ଣ୍ଣ ଭରସା ଦିଏନାହିଁ । ମରୁଭୂମିର ତୃଷାତୁର ପଥିକ ଭଳି ତାକୁ ମାୟାମରୀଚିକା ଦେଖାଇ ସମସ୍ତେ ଠକି ଦିଅନ୍ତି । ମନେମନେ ସେ ନିଜକୁ ଖୁବ୍ ଅଭାଗା ବୋଲି ଭାବେ । ତା' ଫଟା କପାଳରେ କାହିଁକି ବା କାହାରି କରୁଣାର ବାରିଧାରା ଝରିବ ? ତା'ରି ମଧ୍ୟରେ ଯଦିବା କେହି କେବେ ତା'ପ୍ରତି କରୁଣା ଦେଖାଏ, ତା'ର ଦୁଇ ନୟନରୁ ଦୁଇଧାର ଅମାନିଆ ଅଶ୍ରୁଧାରା ଝରିପଡ଼େ । ତା' କିଶୋର ବୟସର ସମସ୍ତ ସଙ୍ଗୀମାନେ ଯୌବନରେ ପାଦ ଦେଇ ଆନନ୍ଦରେ କଟାଉଥିବା ବେଳେ, ତା'ର ଉଚ୍ଛୁଳା ପ୍ରାଣକୁ ବ୍ୟଥାବେଦନା ନିରାଶକ୍ତ କରିଦେଇଛି । ସେମାନେ ଯେତେବେଳେ ସୁଖ ସ୍ୱପ୍ନରେ ବିଭୋର ଏବଂ ଆନନ୍ଦର ଗଙ୍ଗା-ଯମୁନା ଧାରା ସେମାନଙ୍କ ବୁକୁରୁ ଯେତେବେଳେ ପ୍ରବାହିତା, ସେତେବେଳେ ବିଧାତା ତାକୁ ଦାରୁଣ କଷ୍ଟ ଦେଇ ହସଟିକକ ତା' ଅଧରରୁ କାଢ଼ି ନେଇଛନ୍ତି ।

ଅଗାଧ ଜଳରେ ବୁଡ଼ି ଯାଉଥିବା ମଣିଷଟି ସାମାନ୍ୟ ଆଶା ଟିକକ ପାଇ ଯେପରି ତାକୁ ଜାବୁଡ଼ିଧରେ, ଠିକ୍ ସେହିଭଳି ନିରାଶା ଅନ୍ଧାର ମଧ୍ୟରେ ସାମାନ୍ୟ ଆଶା ଆଶ୍ୱାସନାର ଆଲୋକ ଶିଖାଟି ଦେଖିଲାମାତ୍ରେ, ସେ ତା' ପାଖକୁ ଧାଇଁଯାଏ । ଏଭଳି ମର୍ମସ୍ପର୍ଶୀ ବର୍ଣ୍ଣନାଟି କବିଙ୍କ ଲେଖନୀରେ -

ଅଗାଧ ଜଳରେ ବୁଡ଼ିଗଲା ଲୋକ ଯେପରି
ଆଗରେ ଯା' ପାଏ ଧରିବସେ ତାକୁ କବଳେ,
ନିରାଶା ତିମିରେ ଶଙ୍କିତ ମୋର ଜୀବନ
ଧାଇଁଯାଏ ଥରେ ଆଶାର ଆଲୋକ ଦେଖିଲେ ।

ମାତ୍ର ପରକ୍ଷଣରେ ତାହା ସବୁ ଛଳନାର ରୂପନିଏ । ଦାରୁଣ ଅନ୍ଧକାର ମଧ୍ୟରେ ଆଶାର ଆଲୋକ ତମସାଚ୍ଛନ୍ନ ହୋଇଯାଏ । ତା'ର ପ୍ରାଣ ପ୍ରଦୀପଟି ଧୀରେଧୀରେ ଲିଭି ଆସେ ଏବଂ ସେ ଭାବିପାରେନି ଯେ ତା' ଜୀବନରେ କେବେବି ଆଲୋକବର୍ଷା ଆସିବ ବୋଲି ?

'ଉର୍ବଶୀ' କବିତାଟିକୁ କବି ରବୀନ୍ଦ୍ରନାଥଙ୍କ 'ଚିତ୍ରା' କାବ୍ୟରୁ ଗ୍ରହଣ କରିଛନ୍ତି । 'ଉର୍ବଶୀ' ସ୍ୱର୍ଗର ଅପ୍‌ସରା ଯେ ଦେବତାମାନଙ୍କ ପାଇଁ ଅଭିପ୍ରେତ ଇନ୍ଦ୍ରଙ୍କ ରାଜସଭାର ନର୍ତ୍ତକୀ । ଯାହାଙ୍କ ପାଦପାତରେ, ନୂପୁରର ନିନାଦରେ, ଚାହାଁଣୀର କଟାକ୍ଷପାତରେ ଏବଂ ରୂପ ସୌନ୍ଦର୍ଯ୍ୟର ମୋହିନୀ ଶକ୍ତିରେ ଦେବତା ଓ ଋଷିମାନେ ମଧ୍ୟ ଧୈର୍ଯ୍ୟହରା ହୋଇଯାନ୍ତି । ସେ ମାତା ନୁହଁନ୍ତି କି କନ୍ୟା ନୁହଁନ୍ତି, ବଧୂ ନୁହଁନ୍ତି, ସେ ହେଉଛନ୍ତି ସୁନ୍ଦରୀ ରୂପସୀ ନନ୍ଦନ ବାସିନୀ ଉର୍ବଶୀ । ଅନ୍ଧକାର ପାତାଳ ପୁରୀର କାହା ଘରେ ନିରୋଳାରେ ବସି ମଣି ମୁକୁତା ଘେନି ଶୈଶବର ଖେଳା ରଚନା କରିଥିଲେ । ରତ୍ନଦ୍ୱୀପର ଆଲୋକିତ କକ୍ଷରେ ସିନ୍ଧୁର କଲ୍ଲୋଳ ସଂଗୀତ ଶୁଣି, ପ୍ରବାଳ ପଲଙ୍କରେ ସୁଖନିଦ୍ରା ବେଳେ କାହାର କୋଳାଗ୍ରତରେ ଜାଗି ଉଠିଲ ହେ ପୂର୍ଣ୍ଣ ପ୍ରସ୍ଫୁଟିତା ! ତୁମରି କଟାକ୍ଷ ପାତରେ ତ୍ରିଭୁବନ ଯୌବନ ଚଞ୍ଚଳା ହୋଇଉଠେ । ତୁମରି ନୃତ୍ୟରେ ସୁର ସଭା ପୁଲକରେ ଉଲ୍ଲସିତ ହୋଇଉଠେ । ସିନ୍ଧୁ ବକ୍ଷର ତରଙ୍ଗମାଳା ଛନ୍ଦେଛନ୍ଦେ ନାଚିଉଠେ । ଶସ୍ୟଶ୍ୟାମଳା ଧରା ବକ୍ଷରେ ଆନନ୍ଦର ଲହଡ଼ି ପିଟେ । ତୁମ ସ୍ତନହାରରୁ ଆକାଶରେ ଇତସ୍ତତଃ ବିଚ୍ଛୁରିତ ହୋଇପଡ଼େ ତାରକାରାଶି । ସେହି ପୁରାତନଯୁଗର କଥା, ଅସ୍ତଗାମୀ ଗୌରବଗାଥା ଆଉ ଆଜି ଫେରିବନି ।

'ଦେବତାର ଗ୍ରାସ' କବିତାଟି କବିଗୁରୁ ରବୀନ୍ଦ୍ରନାଥଙ୍କ 'କଥା' କବିତା ଗ୍ରନ୍ଥରୁ ସଂଗୃହୀତ । ଏହା ଏକ ଲୋକକଥା ମୂଳକ ଗାଥା କବିତା । ଗୋଦାବରୀଶ ମିଶ୍ରଙ୍କ ରଚିତ ଅଶ୍ଳୀଳ 'କାଳିଜାଈ' କବିତା ଭଳି ପ୍ରଚଳିତ ଲୋକକଥାକୁ ଆଶ୍ରୟକରି ରଚିତ । ବଙ୍ଗଳାରେ କଥା ଅଛି 'ସବୁତୀର୍ଥ ବାରବାର, ଗଙ୍ଗା ସାଗର ଏକବାର' । ଏବେ ମଧ୍ୟ ଗଙ୍ଗା ନଦୀର ସାଗର ସଂଗମସ୍ଥଳୀରେ ଗଙ୍ଗା ସାଗର ମେଳା ପୌଷମାସ ସଂକ୍ରାନ୍ତିରେ ଅନୁଷ୍ଠିତ ହୁଏ । ବହୁଯାତ୍ରୀ ଏହି ମେଳା ଦର୍ଶନ କରିବାପାଇଁ ସାଗରଯାତ୍ରା କରିଥାନ୍ତି । ଭଗୀରଥ ସ୍ୱର୍ଗରୁ ଗଙ୍ଗାକୁ ମର୍ତ୍ତ୍ୟଭୂମିକୁ ଆଣି ସଗରବଂଶକୁ ଉଦ୍ଧାର କରିଥିଲେ । ତେଣୁ ଗଙ୍ଗା ସାଗରର ସଂଗମସ୍ଥଳରେ ସାଗର ଦ୍ୱୀପରେ କପିଳମୁନି ଏବଂ ଭଗୀରଥ ଓ ଗଙ୍ଗାଦେବୀଙ୍କ ପ୍ରତିମୂର୍ତ୍ତି ହୋଇ ପୂଜାର୍ଚ୍ଚନା ଅନୁଷ୍ଠିତ ହୁଏ କେଉଁକାଳରୁ । ଏହି ପବିତ୍ର ସ୍ଥାନକୁ ଦର୍ଶନକରି ସ୍ନାନାଦି କଲେ ସମସ୍ତ ପାପ ବିନାଶ ହୁଏ ଏବଂ ବଡ଼ ପୁଣ୍ୟଫଳ ଲାଭ ହୁଏ । ଏହି ପ୍ରାଚୀନ ବିଶ୍ୱାସରେ ବହୁଲୋକ ଏହି

ସମୟରେ ସାଗରଯାତ୍ରା କରିଥାନ୍ତି ସମୁଦ୍ରର ଅତଳ ଜଳରାଶି ମଧ୍ୟରେ ବିପଦସଙ୍କୁଳ ଅବସ୍ଥାରେ । ଆଜିକା ପରି ମଟରଚାଳିତ ବୋଟ୍ କି ଲଞ୍ଚ୍ ବହୁ ପ୍ରାଚୀନ କାଳରେ ନଥିଲା । ପାଲ ଓ ଆହୁଲା ବିଶିଷ୍ଟ ଛୋଟ ନଉକାରେ ଏଭଳି ଦୁର୍ଗମ ପଥକୁ ଯିବାକୁ ପଡୁଥିଲା । ଏଥିପାଇଁ ମାସାଧିକକାଳ ମଧ୍ୟ ଯାତ୍ରା କରିବାକୁ ପଡୁଥିଲା । ଯଦି ଯାତ୍ରାକାଳରେ ପ୍ରାକୃତିକ ଝଡ଼ବର୍ଷା ସୃଷ୍ଟି ହେଉଥିଲା, ତା'ହେଲେ ବହୁଯାତ୍ରୀଙ୍କ ଧନଜୀବନ ସଲିଳ ସମାଧି ହେଉଥିଲା, ଯେଉଁମାନେ ସାଗର ତୀର୍ଥକୁ ଯାଉଥିଲେ, ସେମାନଙ୍କ ଫେରିବାର ଆଶା ଖୁବ୍ କମ୍ ଥିଲା । ସେଥିପାଇଁ ଏ ତୀର୍ଥକୁ ଖୁବ୍ କମ୍ ଲୋକେ ଯିବାକୁ ଇଚ୍ଛାପ୍ରକାଶ କରୁଥିଲେ । ଯେଉଁମାନେ ଗଙ୍ଗାତୀର୍ଥ ଦର୍ଶନକରି ଫେରିଆସୁଥିଲେ, ସେମାନେ ପୁଣ୍ୟବଳରେ ନିଜକୁ ଭାଗ୍ୟବାନ ମନେକରୁଥିଲେ ।

ଆଲୋଚ୍ୟ କବିତାଟି ଏହି ମର୍ମରେ ରଚିତ ବାତ୍ସଲ୍ୟଭରା ଏକ ଅଶ୍ରୁଳ କାହାଣୀ । ମିଶ୍ର ବ୍ରାହ୍ମଣଙ୍କ ସାଗରତୀର୍ଥ ଯିବାର ବାର୍ତ୍ତା ପ୍ରଚାରିତ ହେବା ସଙ୍ଗେ ଯାତ୍ରୀଦଳରେ ଜୁଟିଗଲେ ଅନେକ ବାଳବୃଦ୍ଧ ନରନାରୀ । ମୋକ୍ଷଦା ନାମ୍ନୀ ଏକ ବିଧବା ଯୁବତୀ ମିଶ୍ର-ଠାକୁରଙ୍କ ପାଦ ଧରି କାନ୍ଦି ଯିବାକୁ ଅନୁନୟ କଲା । ମିଶ୍ର ବ୍ରାହ୍ମଣଙ୍କର ମନରେ ଦୟାଭାବ ସୃଷ୍ଟିହେଲା । କିନ୍ତୁ ବିଧବା ଯୁବତୀର ଗୋପାଳ ବୋଲି ଏକ ନାବାଳକ ପିଲାଟିକୁ ସେ କାହା ପାଖରେ ଛାଡ଼ିଦେଇ ଯିବ ପଚାରିବାରୁ ଯୁବତୀଟି ଉତ୍ତର ଦେଲା, ସେ ତା' ମାଉସୀ ଅନ୍ନଦା ପାଖରେ ରହିଯିବ ବୋଲି । ମୋକ୍ଷଦା ଶୀଘ୍ର ଜିନିଷପତ୍ର ବାନ୍ଧି ଗୁରୁଜନମାନଙ୍କୁ ପ୍ରଣାମକରି, ନାରୀମାନଙ୍କଠାରୁ ଅଶ୍ରୁଳ ବିଦାୟ ନେଇ ନୌକାଘାଟରେ ପହଞ୍ଚି ଦେଖେ ଦୁଷ୍ଟ ଗୋପାଳ ଆସି ନୌକାରେ ବସିଛି । ଗୋପାଳକୁ ଏଠି ବସିବାର କାରଣ ତା' ମାଆ ପଚାରିବାରୁ କହିଲା ସେ ବି ସାଙ୍ଗର ଯିବ ବୋଲି । ମାଆ ତା'ର ଯେତେ ବୁଝାଇଲେ ଏବଂ ହାତଧରି ଟାଣିଲେ ବି ଦୁଷ୍ଟ ଅଝଟିଆ ଗୋପାଳ ନ ଓହ୍ଲାଇ ନୌକାକୁ ଭିଡ଼ି ଧରୁଥାଏ । ବିପ୍ର ମହାଶୟ ଶେଷରେ କହିଲେ ହଉ ସେ ଆସୁ ବୋଲି । ତହୁଁ ମାଆ ତା'ର ରାଗଭରେ କହିଦେଲେ 'ଚାଲ ତୋତେ ସାଗର ଜଳରେ ଦେଇଦେବି' । ପରକ୍ଷଣରେ ମା'ର ମନ ଦୁଃଖ ଓ ଅନୁତାପର ଅଶ୍ରୁଜଳରେ ସିକ୍ତ ହେଲା ଏବଂ କାନ୍ଦିଉଠି ସେ 'ନାରାୟଣ ନାରାୟଣ' ବୋଲି ସ୍ମରଣକଲେ । ପରକ୍ଷଣରେ ଅମାନିଆ ପୁଅକୁ କୋଳକୁ ଟାଣିଆଣି ସ୍ନେହରେ ତା'ର

ସର୍ବାଙ୍ଗ ଦେହରେ କଲ୍ୟାଣର ହସ୍ତ ବୁଲାଇଲେ । ବିପ୍ର ମହାଶୟ ମାଆ ହୋଇ ଏଭଳି କଥା ତୁଣ୍ଡରେ ନ ଧରିବା ପାଇଁ ପ୍ରବୋଧନା ଦେଲେ ।

ଗୋପାଳର ସାଗର ଯିବା କଥା ଲୋକଙ୍କ ମୁଖରୁ ଶୁଣି ମାଉସୀ ଅନ୍ନଦା ଡଙ୍ଗା ଘାଟକୁ ଛୁଟିଆସି ନ ଯିବାକୁ ଗୋପାଳକୁ ବହୁ ବାରଣ କଲା । ମାତ୍ର, ଗୋପାଳ 'ସାଗର ଯିବ' ବୋଲି ଜିଦ୍‌ଧରି ବସିଲା । ପାଗିଳୀଙ୍କ ପରି ମିଶ୍ର ମହାଶୟଙ୍କୁ ଗୋପାଳର ଦୁଷ୍ଟାମି, ଅଝଟପଣକୁ କିଏ ବା ସମ୍ଭାଳି ପାରିବ ଏବଂ ଜନ୍ମରୁ ତାକୁ ଛାଡ଼ି କେବେବି ସେ ରହିନାହିଁ ବୋଲି ଅନୁନ୍ନୟ ହେଲା । ବିପ୍ର ମହାଶୟ ସ୍ନେହଭରେ କହିଥିଲେ ସେ ଥିବା ପର୍ଯ୍ୟନ୍ତ କିଛି ବ୍ୟସ୍ତହେବାର ନାହିଁ । ଦୁଇମାସ ପରେ ସେ ଗୋପାଳକୁ ଫେରାଇ ଦେବେ ।

ମେଳା ସରିଗଲା । ଗୋପାଳର ଘରକୁ ଫେରିବା ଓ ମାଉସୀ କଥା ଖୁବ୍ ମନେପଡ଼ିଲା । ସାଗର ଚତୁର୍ଦ୍ଦିଗର ଭୟଙ୍କର ଜଳାର୍ଣ୍ଣବ ଦୃଶ୍ୟକୁ ଦେଖି ସେ ଖୁବ୍ ବିକଳ ହେଉଥିଲା । ହଠାତ୍ ସୂର୍ଯ୍ୟାସ୍ତ ସମୟରେ ରୂପନାରାୟଣ ନଦୀର ମୁହାଁଣର ସଂକୀର୍ଣ୍ଣ ବାଲିଚଡ଼ାରେ ଜୁଆରର ସ୍ରୋତ ଓ ଉତ୍ତରା ପବନ ମାଡ଼ରେ ଉତ୍ତାଳ ତରଙ୍ଗ ସୃଷ୍ଟିହେଲା । ଡଙ୍ଗା ସ୍ଥିର ନହୋଇ ଟଳମଳ ହେବାକୁ ଲାଗିଲା । ଗୋପାଳ ମାଆ କୋଳରେ ମୁହଁ ଲୁଚାଇ କମ୍ପିବାକୁ ଲାଗିଲା । ସହସା ଡଙ୍ଗାର ମାଝି କହିଲା, ବାବାଙ୍କୁ ମାନସିକ କରି କିଏ କ'ଣ ନ ଦେଇ ଚୋରିକରି କେଉଁ ଦ୍ରବ୍ୟ ନେଇଯାଉଛ କି ? ତା' ନହେଲେ ଅସମୟରେ ଏଭଳି ବିପଦ ମାଡ଼ିଆସିବା କେବେ ସମ୍ଭବ ନଥିଲା । ସଙ୍ଗେସଙ୍ଗେ ବ୍ରାହ୍ମଣ ମୋକ୍ଷଦାକୁ ଲକ୍ଷ୍ୟକରି କହିଲେ, ଏହି ବିଧବା ଯୁବତୀ ନିଜପୁଅକୁ ଦେବତାଙ୍କୁ ଦେବ ବୋଲି କହି ନ ଦେଇ ଚୋରିକରି ନେଇଯାଉଛି । ଶୀଘ୍ର ତାକୁ ଫିଙ୍ଗିଦିଅ ବୋଲି ନୌକାରେ ଥିବା ଯାତ୍ରୀମାନେ ଗର୍ଜିଉଠିଲେ । ମାତ୍ର ମାଆ ତା'ର ପୁଅକୁ ବକ୍ଷରେ ଚପିଧରି ଗୋସେଇଁଙ୍କୁ ରକ୍ଷା କରିବାକୁ କେତେ ଆକୁଳ ମିନତି କଲା । ମାତ୍ର ଗୋସେଇଁ ଭର୍ତ୍ସନାରେ ଗର୍ଜିଉଠି କହିଲେ 'ତୁ ମାଆ ହୋଇ ପୁଅକୁ ଦେବତାଙ୍କୁ ଦେଲୁ । ଶେଷ କାଳରେ ମୁଁ ବା ତାକୁ କିପରି ରକ୍ଷାକରିପାରିବି ? ନିଜର ସତ୍ୟ ରକ୍ଷାକରି ଶୀଘ୍ର ଦେବତାଙ୍କ ଋଣପରିଶୋଧ କର, ତା' ନହେଲେ ଏତେ ଜୀବନ ପାଣିରେ ବୁଡ଼ି ମୃତ୍ୟୁବରଣ କରିବ ।' ତଥାପି ମୋକ୍ଷଦା ନିଜେ ମୂର୍ଖନାରୀ,

ରାଗବଶରେ କହିଥିବା କଥା ଗୋସାଇଁଙ୍କୁ କହିଲେ କେତେ ଅନୁନୟ ହୋଇ । ସମସ୍ତ ବ୍ୟାକୁଳତା ତା'ର ବୃଥା ହୋଇଗଲା । ମାଆର ଅନ୍ତର ବ୍ୟଥା କେହିବି ଥରେ ବୁଝିବାକୁ ଚେଷ୍ଟା କଲେନାହିଁ । ବରଂ ମାଝିମାନେ ସମ୍ମିଳିତ ଭାବରେ ମାଆର କୋଳରୁ ଗୋପାଳକୁ ବଳତ୍କାର କରି ଝିଙ୍କି ନେଇ ଉତ୍ତାଳ ତରଙ୍ଗକୁ ନିକ୍ଷେପ କଲେ । ମିଶ୍ରେ ମହାଶୟ ରଖ ରଖ ବୋଲି ଚିତ୍କାରକରି ଦେଖିଲେ ମା' ତା'ର ପାଦଧରି ମୂର୍ଚ୍ଛିତା ହୋଇଯାଇଛି । ସେହି ଉତ୍ତାଳ ତରଙ୍ଗମାଳାରେ ଗୋପାଳ ଥରେମାତ୍ର 'ମାଉସୀଲୋ' ବୋଲି ଡାକ ଦେଇ ଆକାଶକୁ ହାତଟେକି ଆଶ୍ରୟମାଗି ବୁଡ଼ିଯାଇଥିଲା । ଶେଷରେ ବ୍ରାହ୍ମଣ ତାକୁ ଆଶ୍ରୟ ଦେବା ଭାବନାରେ ସେହି ଉତ୍ତାଳ ତରଙ୍ଗମାଳାକୁ ମଧ ଲମ୍ଫପ୍ରଦାନ କରିଥିଲେ କିନ୍ତୁ ସେ ବି ଆଉ ଉଠିଲେନି ସେଦିନର ଶେଷ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ।

ଲୋକଙ୍କ ଅନ୍ଧବିଶ୍ୱାସରେ ଦେବତା ବି ଗ୍ରାସ କରନ୍ତି ବୋଲି କବିଙ୍କ ଉକ୍ତିଟି ଖୁବ୍ କଟାକ୍ଷପୂର୍ଣ୍ଣ । ଉକ୍ତ କବିତାଟି କବି ଜଗନ୍ନାଥ ପଡ଼ିଆରୀଙ୍କ କବି ହୃଦୟକୁ ଖୁବ୍ ବ୍ୟଥିତ କରିଥିଲା ଏବଂ ସାମାଜିକ ସଚେତନତା ପାଇଁ ଏହାର ଓଡ଼ିଆ ଭାଷାନ୍ତର ମଧ କରିଥିଲେ ।

'ଆଷାଢ଼' କବିତାଟି କବିଙ୍କର ଏକ ସଫଳ ସୃଷ୍ଟି । ଗ୍ରୀଷ୍ମର ପ୍ରଚଣ୍ଡ ରୌଦ୍ରତା କଷ୍ଟରେ ଯେତେବେଳେ ଧରାପୃଷ୍ଠର ପ୍ରାଣୀଜଗତ ଓ ଉଦ୍ଭିଦଜଗତ ମଧ୍ୟରେ ଜୀବନ ବଞ୍ଚାଇବା ପାଇଁ ଆକୁଳ ଆତୁରଭାବ ସୃଷ୍ଟିହୁଏ, ସେତେବେଳେ ଧରଣୀବାସୀଙ୍କ ଦୁଃଖ ମୋଚନ ପାଇଁ ଆଷାଢ଼ ମେଘମେଦୁର ବର୍ଷାରାଣୀକୁ ସଙ୍ଗରେ ଧରି ଧରଣୀରେ ଆବିର୍ଭୂତା ହୁଅନ୍ତି । ତା'ର ଶାନ୍ତଶୀତଳ ଜଳ ସ୍ପର୍ଶରେ ପୃଥିବୀ ସବୁଜ ଶ୍ୟାମ ରୂପ ଧାରଣକରେ । ଜଳଚର, ସ୍ଥଳଚର, କୀଟ, ପତଙ୍ଗ, ମାନବ, ପ୍ରାଣୀ ଆନନ୍ଦ ଓ ଉଲ୍ଲାସ ମନରେ ଜୀବନଧାରଣ କରନ୍ତି । କବି ଆଷାଢ଼ ପ୍ରକୃତିର ରୂପ ସୁଷମାକୁ ଅତି ନିଖୁଣ ଭାବରେ ଚିତ୍ରଣ କରିଛନ୍ତି । ସତେଯେପରି କବି ବର୍ଷାରାଣୀଙ୍କୁ ଦେବୀତୁଲ୍ୟା ଜୀବନ୍ୟାସ ଦେଇ ତାଙ୍କୁ ମାନବସମାଜର ଶୁଭଙ୍କରୀ ଭାବରେ ବର୍ଣ୍ଣନା କରିଛନ୍ତି । ଯଦିଓ ତା'ର କଳା ଅଞ୍ଜନ ବୋଳା ଛଳଛଳ ଆଖି, ମନ୍ଦ୍ର ମଧୁର ମେଘ ଡମ୍ବରୁ ନିନାଦ, ଘନଘନ ବିଜୁଳି ଓ ବଜ୍ରପାତ, ତା'ର କଳାହାଣ୍ଡିଆ କୋଳରେ ଉଡ଼ିଯାଉଥିବା ମଲ୍ଲୀହାର ସଦୃଶ ବଳାକାପଂକ୍ତି, ଇନ୍ଦ୍ରଧନୁର ଶ୍ରୀଶୋଭା, ବନଭୂମିରେ ମୟୂରର

ନୃତ୍ୟ, ସରସୀରେ ମରାଳର ଉତ୍ଫୁଲ୍ଲିତ ସନ୍ତରଣ, କୁଞ୍ଜବନରେ ଡାହୁକର ଡାକ, ଗହୀର ପାଟବିଲରେ ସରାଳୀର ଦାମ୍ପତ୍ୟ ବିହାର, ଶୁଆପକ୍ଷିଆ ସବୁଜ ଶ୍ୟାମଳ ରୂପଶୋଭା, କିଆ-କେତକୀର ମହକିତ ସୁବାସ, ପୂର୍ଣ୍ଣଗର୍ଭା ତଟିନୀର କୁଳୁକୁଳୁ ନିନାଦ, ପ୍ରିୟତମ ପ୍ରିୟତମାର ବିରହଯନ୍ତ୍ରଣା, କୁସୁମ କବରୀ ବେଶରେ ନବବଧୂର ବାସର ଉଜାଗର କବିଙ୍କ ବର୍ଣ୍ଣନାରେ ଅପୂର୍ବ ହୋଇଉଠିଛି । କବି ତାଙ୍କୁ ବିରହୀଙ୍କ ବନ୍ଧୁ ଭାବରେ ସମ୍ବୋଧନକରି ଏଭଳି ମନୋଜ୍ଞ ବର୍ଣ୍ଣନାଟି ଲେଖିଛନ୍ତି -

ବଳାକାମାଳାର ମାଳା ଘେନି ଗଳେ ଉତ୍ତରୀ ମେଲି ଗଗନେ
ଆସ ଆସ ଆସ ବିରହୀବନ୍ଧୁ, ନୀରବ ଭୁବନ ରଜା ହେ,
ମେଘ ମହ୍ଲାର ରାଗିଣୀରେ କରି ବିଶ୍ୱର ହିଆ ପାଗଳ
ନୀଳ ନବଘନ କେଳିକୁଞ୍ଜରେ ମୋହନ ମୁରଲୀ ବଜାହେ ।
(ଆଷାଢ଼)

ଏହା ଯେଭଳି ହୃଦୟସ୍ପର୍ଶୀ ସେଭଳି ରୋମାଣ୍ଟିକ୍ ମଧ୍ୟ ।

'ଶୁଆର ଦୁଃଖ' ଏକ ନୀତିଶିକ୍ଷା ମୂଳକ କବିତା । କୋମଳମତି କିଶୋର କିଶୋରୀଙ୍କ ମନ ମଧ୍ୟରେ ବନ୍ଦୀ ଜୀବନର ଦୁଃଖ ଓ ମୁକ୍ତିର ଯେଉଁ ଆନନ୍ଦ, ସେକଥାକୁ ସୁନ୍ଦର ଭାବରେ କବି ପ୍ରକାଶ କରିଛନ୍ତି । କବିତାଟି କଥୋପକଥନ ଭଙ୍ଗୀରେ ବଡ଼ଭାଇ, ସାନଭାଇ ଶଶିକୁ ଉପଦେଶ ଦେଇଛି । ସାଆନ୍ତମା' ସାନଭାଇର ସପକ୍ଷରେ ମତପୋଷଣ କରିଥିଲେ ମଧ୍ୟ ବଡ଼ଭାଇର ସତ୍‌ଉପଦେଶ ଓ ଜୀବପ୍ରତି ଦୟାଭାବ ସାନଭାଇ ଅନ୍ତରକୁ ପରିବର୍ତ୍ତନ କରିପାରିଛି । ବାପା, ମା'ଙ୍କୁ ଛାଡ଼ି ଆସିଥିବା ଶୁଆର ପ୍ରକୃତ ଦୁଃଖକୁ ସେ ବୁଝିପାରିଛି । ସଙ୍ଗେସଙ୍ଗେ ଯାଇ ଲୁହା ପଞ୍ଜୁରୀର ଦ୍ୱାର ଖୋଲି ଦେଇଛି । ଶୁଆଟି ଆନନ୍ଦ ମନରେ ଗୀତ ଗାଇ ପର୍ବତ ଶିଖର ନୀଳ ଆକାଶରେ ହଜିଯାଇଛି । କବିତାର ସରଳ ଭାଷାବିନ୍ୟାସ ଓ ସହଜ ପ୍ରକାଶଭଙ୍ଗୀ କିଶୋର କିଶୋରୀ ମନକୁ ଗଭୀର ଭାବରେ ସ୍ପର୍ଶ କରିଥାଏ ।

## ଗଳ୍ପ :

ଜଗନ୍ନାଥବାବୁ ଜଣେ ସଫଳ ଗାଳ୍ପିକ ଭାବରେ ବେଶ୍ ସୁନାମ୍ ଅର୍ଜନ କରିଥିଲେ । ସମକାଳୀନ ପତ୍ର ପତ୍ରିକାରେ ସେ ମଝିରେ ମଝିରେ ଗଳ୍ପସବୁ ରଚନା କରୁଥିଲେ । ତାଙ୍କ ଗଳ୍ପପ୍ରତି ପାଠକମାନଙ୍କର ଖୁବ୍ ଶ୍ରଦ୍ଧା ଓ ଅନୁରକ୍ତି ଭାବ ସୃଷ୍ଟିହୋଇଥିଲା । ଫଳରେ ଗାଳ୍ପିକ ଜଗନ୍ନାଥବାବୁ ପାଠକମାନଙ୍କର ଅତି ଆସ୍ଥା ଭାଜନ ହୋଇପାରିଥିଲେ । ତାଙ୍କ ସମକାଳୀନ ଗାଳ୍ପିକ ମାନଙ୍କ ମଧ୍ୟରେ ନରସିଂହ ଚରଣ ଦାସ, ରାମକୃଷ୍ଣ ନନ୍ଦ, ଶରତ ଚନ୍ଦ୍ର ମୁଖାର୍ଜୀ, ସଦାଶିବ ମିଶ୍ର, ହରିଶ୍ଚନ୍ଦ୍ର ବଡ଼ାଲ, ହରିହର ମିଶ୍ର, ନିତ୍ୟାନନ୍ଦ ମହାପାତ୍ର, କାଳିନ୍ଦୀ ଚରଣ ପାଣିଗ୍ରାହୀ , ରାମ ଚନ୍ଦ୍ର ମିଶ୍ର (ଫତୁରା ନନ୍ଦ), ରାଜକିଶୋର ପଟ୍ଟନାୟକ ଥିଲେ ଅନ୍ୟତମ । ଏହି ଗାଳ୍ପିକମାନଙ୍କର ସୃଷ୍ଟି-ନିଶାଣ-ଚିହ୍ନ ସେମାନଙ୍କୁ ଆଜି ଅମ୍ଳାନ କରିରଖିଛନ୍ତି ।

ଗାଳ୍ପିକଙ୍କ ଅଧିକାଂଶ ଗଳ୍ପ 'ସହକାର', 'ନବଭାରତ', 'ଜହ୍ନମାମୁଁ', 'କଳ୍ପଲତା' ପତ୍ରିକାରେ ପ୍ରକାଶିତ । ତାଙ୍କର କବିତାଗୁଡ଼ିକ ମଧ ଉପରୋକ୍ତ ପତ୍ରିକାରେ ପ୍ରକାଶିତ । 'ଭୁଲ' ଗଳ୍ପଟି ସହକାର/ ୧୨ଶ ବର୍ଷ/ ୧ମ ସଂଖ୍ୟା, "ଗୋଲାପ" ସହକାର / ୧୨ ଶ ବର୍ଷ / ୨ୟ ସଂଖ୍ୟା ଏବଂ 'ସନାତନ' ଗଳ୍ପଟି ସହକାର / ୧୨ ଶ ବର୍ଷ / ୩ ୟ ସଂଖ୍ୟାରେ ପ୍ରକାଶ ପାଇଥିଲା । 'ରକ୍ତରେଖା' ଗଳ୍ପଟି 'ନବଭାରତ' କୁମ୍ଭ ୧୩୪୧ ସଂଖ୍ୟାରେ ପ୍ରକାଶିତ ।

କିଶୋର କିଶୋରୀମାନଙ୍କର ଉଦ୍ଦେଶ୍ୟରେ ଉଚିତ ଗଳ୍ପ ଗୁଡ଼ିକ ଖୁବ୍ ମନଛୁଆଁ ଓ ହୃଦୟସ୍ପର୍ଶୀ । ସେମାନଙ୍କ ମନଲୋଭା କାହାଣୀ ଧର୍ମୀ ବର୍ଣ୍ଣନା ଓ ଭାଷାବିନ୍ୟାସ ତାଙ୍କୁ ଗଳ୍ପ ପଠନ ପ୍ରତି ଗଭୀର ଆସକ୍ତି ସୃଷ୍ଟି କରିଥାଏ । ଏହି ସବୁ ଗଳ୍ପମାନଙ୍କ ମଧ୍ୟରେ 'ବଡ଼ ଦେଉଳଠୁଁ ବଡ଼ କିଏ ? ଜହ୍ନମାମୁଁ / ୧ ବର୍ଷ / ୩ୟ ଖଣ୍ଡ, 'ଉଷା' ଜହ୍ନମାମୁଁ / ୧ମ ବର୍ଷ/ ୪ର୍ଥ ସଂଖ୍ୟା ଏବଂ 'ବାସନ୍ତୀ' ଜହ୍ନମାମୁଁ ୧ମ ବର୍ଷ / ୧୨ଶ ସଂଖ୍ୟାରେ ପ୍ରକାଶିତ ।

'ଭୁଲ୍' ଗଳ୍ପରେ ନବବିବାହିତା ପତ୍ନୀଙ୍କର ପତିପରମେଶ୍ୱରଙ୍କ ପ୍ରତି ସୃଷ୍ଟି ହୋଇଥିବା ଭୁଲ୍ ଧାରଣର ଅବସାନ ଘଟିଥିବା ବର୍ଣ୍ଣିତ ।

ଗାଳ୍ପିକ ଗଳ୍ପ ନାୟିକା ରୋଜେଟାର ନାମାନୁସାରେ 'ଗୋଲାପ'ର ଇଂରାଜୀ ନାମକରଣ 'ରୋଜ' ହୋଇଥିବା ଦର୍ଶାଇଛନ୍ତି । ଏଥିପାଇଁ ସେ ଏକ ସୁନ୍ଦର ଗଳ୍ପର ଅବତାରଣା କରିଛନ୍ତି । ଏହା କୌଣସି ଇଂରାଜୀଗଳ୍ପର ଅନୁବାଦ ହୋଇଥିବା ହୋଇଥିବା ମନେହୁଏ ।

'ସନାତନ' ଏକ ପବିତ୍ର ପାରିବାରିକ ଅଶ୍ରୁଳ କାହାଣୀ । ଲୋମହର୍ଷଣକାରୀ ନ'ଅଙ୍କ ଦୁର୍ଭିକ୍ଷର କରୁଣଚିତ୍ର ଏଥିରେ ପ୍ରତିଫଳିତ । ଉତ୍କଟ ଆଦ୍ୟାଭାବ କିପରି ଏକ ମମତାପୂର୍ଣ୍ଣ ପରିବାରକୁ ନିଶ୍ଚିହ୍ନ କରିଦେଇଛି, ତାର ବାସ୍ତବଚିତ ସୁସ୍ପଷ୍ଟ ତଥାପି ପିତାମାତା ଓ ସନ୍ତାନଙ୍କ ମଧ୍ୟରେ ପରସ୍ପର ପ୍ରତି ସ୍ନେହ ଭକ୍ତି ଓ କର୍ତ୍ତବ୍ୟର ତ୍ୟାଗପୂତ ସମ୍ପର୍କ କିପରି ସ୍ୱର୍ଗୀୟ ହୋଇପାରିଛି, ଯାହା ପାଠକ ଅନ୍ତରକୁ ଅଶ୍ରୁସିକ୍ତ କରିଥାଏ । କବି ରାଧାମୋହନ ଗଡ଼ନାୟକଙ୍କ ରଚିତ 'ମରିନାହିଁ ସେତ ମରଣଜୟୀ' କବିତାଟି ମଧ୍ୟ ଏହି ସନାତନ ଚରିତ୍ରକୁ ଆଧାରକରି ରଚିତ ନଅଙ୍କ ଦୁର୍ଭିକ୍ଷର ବାସ୍ତବଚିତ୍ର ସୁନ୍ଦର ଭାବରେ ଏଥିରେ ଚିତ୍ରିତ ।

'ରକ୍ତରେଖା' ଟ୍ରେନ୍ ଏକ୍ସିଡେଣ୍ଟର ଏକ ଅଶ୍ରୁଳ କାହାଣୀ । ଘରର ଦୁଃଖ ଓ ମହାଜନର କରଜ ଶୁଝେଇବା ପାଇଁ ନବୀନାର କଲିକତା ଯିବା ଏବଂ ଫେରିନ୍ତା ଅବସ୍ଥାରେ ସାଥିହରା ହୋଇ ଚଳନ୍ତା ଟ୍ରେନ୍‌ରୁ ଖସିପଡ଼ିବା ଦ୍ୱାରା ଯେଉଁ ବିଭତ୍ସ ମୃତ୍ୟୁ ଘଟିଥିଲା, ତା'ର କରୁଣଚିତ୍ର ବର୍ଣ୍ଣିତ । ମାତ୍ର ପୁଅ ପାଇଁ ସଦାସର୍ବଦା ମଆ ଓ ବୋହୂର ବ୍ୟସ୍ତ ବିଧୂରା ଅବସ୍ଥା ବାତ୍ସଲ୍ୟ ପ୍ରେମ ଓ ଦାମ୍ପତ୍ୟ ପ୍ରେମର ଏକ ଅମ୍ଳାନ ଦୃଷ୍ଟାନ୍ତ ।

'ବଡ଼ ଦେଉଳଠୁଁ ବଡ଼ କିଏ ? ଗଳ୍ପରେ ଭାଇ ପ୍ରତି ଭାଇର ଗଭୀର ମମତାର ଚିତ୍ର ପ୍ରତିଫଳିତ । ପରସ୍ପର ପରସ୍ପରକୁ ସାହାଯ୍ୟ କରିବା ପାଇଁ ଯେଉଁ ସ୍ଥାନରେ ଭେଟାଭେଟି ହୁଅନ୍ତି, ସେସ୍ଥାନ ବଡ଼ ଦେଉଳଠୁଁ ଆହୁରି ପବିତ୍ର ବୋଲି ଗାଳ୍ପିକ ମତ ପୋଷଣ କରିଛନ୍ତି ।

'ଉଷା' ଗଳ୍ପରେ ଉଷାଙ୍କ ପ୍ରତି ସୂର୍ଯ୍ୟବେଦଙ୍କ ପ୍ରଣୟ ଆସକ୍ତି ବର୍ଣ୍ଣିତ । କବିବର ରାଧାନାଥ ରାୟଙ୍କ 'ଚନ୍ଦ୍ରଭାଗା' କାବ୍ୟରେ ସୂର୍ଯ୍ୟଦେବ ଯେଭଳି 'ଚନ୍ଦ୍ରଭାଗା'ଙ୍କ ପ୍ରତି ଆସକ୍ତି ହୋଇ ତାଙ୍କ ପଛରେ ଧାବମାନ ହୋଇଥିଲେ, ଠିକ୍

ସେହିଭଳି ଗାଳ୍ପିକ 'ଉଷାକାଳ'ଠାରେ ବ୍ୟକ୍ତିତ୍ୱ ଆରୋପଣ କରି ତାଙ୍କୁ ଏକ ପରୀ କନ୍ୟା ରୂପେ ଚିତ୍ରିଣ କରିଛନ୍ତି । ହେଲେ ସୂର୍ଯ୍ୟଙ୍କର ପ୍ରଣୟ ତୃଷ୍ଣା କେବେ ମେଣ୍ଟିପାରି ନାହିଁ । ଏହା ସମ୍ପୂର୍ଣ୍ଣ ଏକ କାଳ୍ପନିକ ଗଳ୍ପ ଯାହା ଉଷାକାଳକୁ ନେଇ ସୃଷ୍ଟି କରିଛନ୍ତି ଗାଳ୍ପିକ ।

'ବାସନ୍ତୀ' ଗାଳ୍ପିକଙ୍କର ଏକ ଅଭିନବ ଗଳ୍ପ । ପ୍ରକୃତିର ଷଡ଼ରତୁ ପରିବର୍ତ୍ତନକୁ ଗାଳ୍ପିକ ଏକ କାଳ୍ପନିକ କାହାଣୀ ସହିତ ଆବଦ୍ଧ କରି ଯମପୁର ଓ ଧରଣୀ ସହିତ ପବିତ୍ର ସମ୍ପର୍କ ଗଢ଼ିଛନ୍ତି । ଏଥିରେ ଯମ, ଇନ୍ଦ୍ରଦେବ, ଧରଣୀ, ବସନ୍ତୀ ଏକଏକ ଚରିତ୍ର । 'ବାସନ୍ତୀ'କନ୍ୟା ଧରଣୀ ମାତୃ ଆଳୟକୁ ଆଠମାସ ପାଇଁ ଆଗମନ ଫଳରେ ପୃଥିବୀପୃଷ୍ଠରେ ଶରତ, ହେମନ୍ତ, ଶୀତ, ବସନ୍ତର ଶ୍ରୀ ଶୋଭା ଓ ସୁଖ ସମୃଦ୍ଧି ଭରିଉଠେ ମାତ୍ର 'ବାସନ୍ତୀ'ର ଯମପୁରକୁ ଚାରିମାସ ଗମନ ଫଳରେ ଧରଣୀବକ୍ଷରେ ଦୁଃଖ କଷ୍ଟର ଯାତନା ଖୁବ୍ ଅସହ୍ୟ ହୁଏ । କିଶୋର କିଶୋରୀ ପାଠକ ପାଠିକା ମନରେ ଷଡ଼ରତୁ ପରିବର୍ତ୍ତନ ଜନିତ ପୃଥିବୀ ବକ୍ଷରେ ଘଟୁଥିବା ପରିବର୍ତ୍ତନକୁ ସୂଚାଇବା ଉଦ୍ଦେଶ୍ୟରେ ଗାଳ୍ପିକଙ୍କର ଏହା ଏକ ସଫଳ ପ୍ରଚେଷ୍ଟା ।

'ଆଉ ଫେରିଲା ନାହିଁ' ଏକ କ୍ଷୁଦ୍ରଗଳ୍ପ । ଏହି ଗଳ୍ପରେ ବ୍ରଜକିଶୋର ସାଙ୍ଗସାଥୀ ମେଳରେ ପଡ଼ି ପାଠପଢ଼ା ପ୍ରତି ଯେଉଁ ବିମୁଖତା ପ୍ରକାଶ କରିଛି, ତାହା ବର୍ଣ୍ଣନା କରାଯାଇଛି । ସନ୍ତାନ ପାଠ ନ ପଢ଼ିଲେ ପିତାମାତାଙ୍କ ମନରେ ତା'ର ଭବିଷ୍ୟତ ଜୀବନ ନେଇ ଦାରୁଣ ଦୁଃଖ ଜାତହୁଏ । ପାଠପଢ଼ା ପାଇଁ ବେଶି ତାଡ଼ନା କଲେ ସେ ଘରଛାଡ଼ି ଚାଲିଯାଏ, ତାହାହିଁ ବ୍ରଜକିଶୋର ଜୀବନରେ ଘଟିଛି ।

ସମୁଦ୍ରଦ୍ୱୀପ, ପାତାଳପୁରୀ, ପରୀରାଇଜ ଓ ପ୍ରକୃତି ପ୍ରତି କିଶୋର ମନକୁ ଆକୃଷ୍ଟ କରି ସୁନ୍ଦର କାହାଣୀ ସହିତ ମାନସିକ ଭାବ ବନ୍ଧନକୁ ଆବଦ୍ଧ କରିବା ଏବଂ ସେମାନଙ୍କ କାଳ୍ପନିକ ମନରାଜ୍ୟ ନିର୍ମାଣ କରିବା ଗାଳ୍ପିକଙ୍କ ମୁଖ୍ୟ ଉଦ୍ଦେଶ୍ୟ । 'ଭୁଲ୍' 'ସନାତନ' ଓ 'ରକ୍ତରେଖା' ଗଳ୍ପଗୁଡ଼ିକ ପାଠକ ଅନ୍ତରକୁ ଅଶ୍ରୁସିକ୍ତ କରିଥାଏ । ପାରବାରିକ ସ୍ନେହସୌହାର୍ଦ୍ଦ୍ୟପୂର୍ଣ୍ଣ ପବିତ୍ର ବନ୍ଧନରେ ରକ୍ତର ସମ୍ପର୍କ ଓ ଆକର୍ଷଣ ଯେ କେତେ ଗଭୀର, ସେକଥା ସ୍ପଷ୍ଟ ଭାବରେ ପ୍ରତିଫଳିତ । ଏଥି ସହିତ୍ ସାମାଜିକ ବିବିଧ ସମସ୍ୟା, ବିଧି ବିଧାନ, ଚଳଣି ଆଦି ସୁନ୍ଦର ଭାବରେ ଚିତ୍ରିତ ।

କେତେକ କ୍ଷେତ୍ରରେ ଗାଳ୍ପିକ ଜନ୍ମମାଟିର ପାରିପାର୍ଶ୍ୱିକତାକୁ ବର୍ଣ୍ଣନା କରିବାକୁ ମଧ୍ୟ ଭୁଲିନାହାନ୍ତି । କାରଣ ପ୍ରତ୍ୟେକ ସ୍ରଷ୍ଟାଙ୍କ ସୃଜନଶକ୍ତି ପାରିପାର୍ଶ୍ୱିକ ଅବସ୍ଥା ଓ ବ୍ୟବସ୍ଥା ଦ୍ୱାରା ପ୍ରଭାବିତ । ଏଭଳି ଏକ ବାସ୍ତବ ଦୃଷ୍ଟାନ୍ତ ହେଉଛି, "ବିଶେଷ ଏଇଁ ମଧୁର ଶରତ ସଞ୍ଜରେ । ତରତର କରି ଦେହରେ ପତଳା ଗେଞ୍ଜି ଖଣ୍ଡେ ଚଢ଼େଇ ଦେଇ ନଈ କୂଳରେ ଟିକିଏ ବୁଲି ଆସିବା ପାଇଁ ବାହାରି ପଡ଼ିଲି । ଆମ ଗାଁକୁ ଖଣ୍ଡେ ଦୂରରେ ବୈତରଣୀର ଧାରା' (ଭୁଲ) ଅନ୍ୟଏକ ବର୍ଣ୍ଣନାଟି ହେଉଛି, "ଶରତର ଉଛୁଳା ନଈଟା ଝରକା ପାଖକୁ ଦିଶୁଥାଏ । ଝରକା ପାଖରେ ବସି 'ଉତ୍କଳ - ସାହିତ୍ୟ'ରୁ ମୁଁ କ'ଣ ଗୋଟାଏ ଗଳ୍ପ ପଢୁଥାଏ । (ଭୁଲ)-ଏକ । ବାସ୍ତବିକ୍ କବିଙ୍କ ଜନ୍ମମାଟି - ଘରଠାରୁ ଅଳ୍ପଦୂର ପୂର୍ବ ଦିଗରେ ସବୁଜ କ୍ଷେତକୁ ଲାଗି ସର୍ପିଳ ଗତିରେ ବହିଯାଇଛି କୂଳୁ କୂଳୁ ନାଦିନୀ ଚିରସ୍ରୋତସ୍ୱିନୀ 'ବୈତରଣୀ' । ଯାହାର ଶ୍ରୀଶୋଭା ଓ ସଙ୍ଗୀତ ମୂର୍ଚ୍ଛନା ଲେଖକ ଜୀବନକୁ ବହୁ ଭାବରେ ପ୍ରେରଣା ଯୋଗାଇଛି । କେବଳ ସେତିକି ନୁହେଁ ଉପରୋକ୍ତ ଗଳ୍ପ ଗୁଡ଼ିକରେ ଗାଳ୍ପିକ ପଲ୍ଲୀ ଜୀବନରେ ପ୍ରଚଳିତ ବହୁ ଗ୍ରାମୀଣ ଭାଷା ଓ ଶବ୍ଦର ମଧ୍ୟ ବ୍ୟବହାର କରିଛନ୍ତି । ଶିଞ୍ଜିନୀ, ଅଲୁଗୁଣି, କଷେଇ, କୁହର, ଦିକ୍, ସତାର, ଅଖାଉଲିଆ, ଅଗୁଆଁ, ଉଛୁର, ଥାନ (ସ୍ଥାନ), ଥପ୍‌କିନା (ସ୍ଥିର ଭାବରେ)ବହଳେଇ, କୁଟୁମାରିଆ, ଠକିକରି (ଡେଇଁ ପଡ଼ିବା) ଶବ୍ଦାଦି ଯାହାର ପ୍ରକୃତ ନମୁନା ।

ଗଳ୍ପ ବର୍ଣ୍ଣିତ କେତେକ ବର୍ଣ୍ଣନା ଖୁବ୍ ପ୍ରାଣସ୍ପର୍ଶୀ, ଯାହା ପାଠକ ଅନ୍ତରକୁ ରସସିକ୍ତ କରିଥାଏ । ଗାଳ୍ପିକ ଲେଖିଛନ୍ତି, ଗଛ, ପତ୍ର ପଶୁପକ୍ଷୀ, ନରନାରୀ ସମସ୍ତଙ୍କ ମନରେ ବିଦାୟ ଗୋଧୂଳିର ବ୍ୟଥା ଲାଗି ଆସୁଥାଏ । × × × ମନକୁ କିଛି ଭାବନା ଅସୁନଥାଏ- ଖାଲି ଗୋଟିଏ ଉଦାସ ମନରେ ମୁକୁଳା ସରଗ ଆଡ଼କୁ ଅନେଇ ରହିଥାଏ । ଫୁଲସଞ୍ଜ କେତେବେଳୁ ଆସି ଘରପଛ ବାରିଆଡ଼େ ଜହ୍ନିଫୁଲ ଫୁଟେଇ ଦେଲାଣି । ××× ବରଷା ଦିନେ ପବନ ମେଘ ଆଖିରୁ ଯେଯେଯେତେ ଲୁହ ପୋଛିଦିଏ, ମେଘ ତେତେ ତେତେ କାନ୍ଦେ । (ଭୁଲ)

ଶରତର ସ୍ନିଗ୍ଧ ସନ୍ଧ୍ୟାରେ, ଅସ୍ଫୁଟ ଚନ୍ଦ୍ରାଲୋକ ତଳେ, ପ୍ରକୃତିର ଶ୍ୟାମ-ଶୋଭା ସୁଶୋଭିତ କଳସ୍ୱନା ନିଝରିଣୀ- ତଟରେ ପ୍ରଥମ ଯୌବନ - ସ୍ପର୍ଶରେ ଯେଉଁ

ରୂପସୀ କୃଷକ - ବାଳିକାକୁ ତାହାର ପ୍ରସ୍ତର କୁମ୍ଭଘେନି ଧୂସର ଶିଳାତଳେ ଅପେକ୍ଷା କରିବାର ଦେଖିଥିଲେ । (ଗୋଲାପ) ।

ଅକୂଳ ନୀଳସାଗର - ସେହିନୀଳ ସାଗର ଉପରେ କେଡ଼େ ସୁନ୍ଦର ଦ୍ୱୀପଟିଏ ଦୂରରୁ ଦେଖିଲେ ନୀଳକାନ୍ତ ହୀରା ଖଣ୍ଡିଏ ପରି ଦେଖାଯାଏ ଜହ୍ନରାତିରେ ଯେତେବେଳେ ସମୁଦ୍ରରେ ଲହରୀ ଉଠେ, ଦେଖିଲେ ମନେହୁଏ - ସତେକି ଲକ୍ଷେ ଜଳଦେବୀ ହାତତାଳି ଦେଇ ତା' ଚାରିପାଖରେ ଗୀତ ଗାଇଗାଇ ନାଚୁଛନ୍ତି । (ବାସନ୍ତୀ)

ଏବେ କେଡ଼େସୁନ୍ଦର ମଲ୍ଲୁସିଆ ପବନ ଦକ୍ଷିଣଦିଗରୁ ବହିଲା, ଗଛମାନଙ୍କରେ କେମନ୍ତ ସୁନ୍ଦର ପତର କଅଁଳିଲା, ଗଛରେ ଲତାରେ ଫୁଲଫୁଟି ସୁବାସରେ ଦିଗ ମହକେଇଲା, ପ୍ରଜାପତି ହରଷରେ ଡେଣା ମେଲିଦେଇ ଏଣେ ତେଣେ ଉଡ଼ି ବୁଲିଲା, କୋଇଲି ସବୁକଥା ପାଶୋରି ଦେଇ ପତର-ଗହଳ ଗଛଡ଼ାଳରେ ବସି ଦିନରାତି ଗୀତ ଗାଇଲା - ସତେକି ଚାରିଆଡ଼େ ଏବେ ସମସ୍ତଙ୍କର ଆନନ୍ଦ ଉତ୍ସବ ଲାଗିଛି । (ବାସନ୍ତୀ)

ସରଗପୁରର ପିଲାମାନେ ସୁନେଲି ବଉଦରେ ଚଢ଼ି ଛୁଟାଛୁଟି କରନ୍ତି, ବଉଦରାଣୀ ସାତବରଣୀ ଫୁଲରେ ବଉଦପୁରର ସିଂହଦୁଆର ସଜେଇ ବସନ୍ତି (ଆମେ କହୁଁ ଇନ୍ଦ୍ର ଧନୁ ପଡ଼ିଛି); ଚନ୍ଦ୍ର ତାରା ରାତି ଯାକ ରୂପେଲି ଆଲୁଅରେ ଦିଗ ଉଜଳାନ୍ତି, ଜଳରେ ସ୍ଥଳରେ କେତେ ଜାତି ଫୁଲମାନ ସରାଗରେ ଫୁଟିଉଠନ୍ତି, ଭରତିଆ ମୁକୁଳା ବିଲରେ ପାଗଳ ହୋଇ ନାଚଗୀତ ଲଗେଇ ଦିଏ । ବାସନ୍ତୀ ଆସିବା ସାଙ୍ଗେ ସାଙ୍ଗେ ଦିଗେ ଦିଗେ ଆନନ୍ଦର ଢ଼େଉ ଖେଳିଯାଏ ।

ଆଉ ଦିନେ ଦିନେ ସେ କଳା ବଦଳରେ ଧଳା ରେଶମୀ ଲୁଗାପିନ୍ଧି, ମଥାରେ ପୁନେଇଁଜହ୍ନର ଟିପାଟି ଘିନି ସଞ୍ଜ ହେଲାକ୍ଷଣି ବାହାରି ପଡ଼େ । ସେତେବେଳେ , ସେଇ ପୁନେଇଁ ରାତିରେ ରୂପର ଝଲକ ଦେହରୁ ତାହାର ଉଛୁଳି ପଡୁଥାଏ । ଏଡ଼େ ସୁନ୍ଦର ରୂପ ଯେ , ସାରା ସଂସାର ପୁଲକ ନୟନରେ ତାହାରି ଆଡ଼କୁ ଅନେଇ ରହି ଭାବେ (ଉଷା)

ଉଷାର ଭାରି ଲାଜ, ଭାରି ସରମ । ମା' ପରି ସେ ସରଗଯାକରେ ବୁଲେନାହିଁ । ଦୂରରେ - ଖୁବ୍ ଦୂରରେ - ଯୋଉଠି ସରଗ ସାଙ୍ଗରେ ପୃଥିବୀ ମିଳି ଯାଇଥାଏ, ଯାଇ ସେଇଠି- ଲାଲ ରଙ୍ଗର ଓଢ଼ଣାଟି ଟାଣିଦେଇ ବସିଥାଏ । ସକାଳର ପାଗଳା ପବନରେ ଲୁଗା ଏଣେ ତେଣେ ଉଡ଼ିଗଲା ବେଳକୁ ଲାଜରେ ମୁହଁ ତାହାର ରଙ୍ଗା ପଡ଼ିଯାଏ, ଦେହରୁ ଝାଳ ବାହାରି ପଡ଼େ । (ଉଷା)

## ପ୍ରବନ୍ଧ :

ଜଗନ୍ନାଥ ପଢ଼ିଆରୀ ଏକାଧାରରେ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ ଓ ଅନୁବାଦକ ଥିଲେ । 'ଗୋତ୍ର' ପ୍ରବନ୍ଧଟି ତାଙ୍କର ସହକାର ୧୪ଭାଗ / ୧ମସଂଖ୍ୟା (୧୩୪୦)ରେ ପ୍ରକାଶିତ । ମିଳିଥିବା ହାତଲେଖା ପାଣ୍ଡୁଲିପିରୁ ଚାନ୍ଦବାଲି ବନ୍ଦର, ଆଳି ରିଙ୍ଗବନ୍ଧ, ଭାଷା ମୂଳ ହେଲା ଶବ୍ଦ, ଆମଭାଷା ପ୍ରବନ୍ଧଗୁଡ଼ିକ ଉଦ୍ଧାର କରାଯାଇଛି । 'ଚାନ୍ଦବାଲି ବନ୍ଦର' ଓ 'ଆଳି ରିଙ୍ଗବନ୍ଧ' ଚାନ୍ଦବାଲି-ଓଡ଼ିଶାର ବାଣିଜ୍ୟିକ ତଥା ଆଞ୍ଚଳିକ ସମସ୍ୟାକୁ ଆଧାର କରି ରଚିତ । 'ଭାଷା ମୂଳ ହେଲା ଶବ୍ଦ' ଏବଂ 'ଆମ ଭାଷା' ଦୁଇଟି ଭାଷା ଭିତ୍ତିକ ଆଲୋଚନା । ଗୋବଧ ନିଷେଧ, ଉତ୍କଳ ସାହିତ୍ୟ ସମାଜ, କାମିନୀଫୁଲ, ଟାଇଟାନିକ୍ ଜାହାଜ, କୁଳବୃଦ୍ଧ ମଧୁସୂଦନଙ୍କ ଆବକ୍ଷ ମୂର୍ତ୍ତି ସ୍ଥାପନ, ବ୍ରହ୍ମମନ୍ଦିର, ବେଦବ୍ୟାସ ପୀଠ, 'ହେ ସମ୍ବୋଧନ', 'ବୋଉ', ଡାକ, ସତ୍ୟବାଦୀ ପ୍ରେସ୍‌ବୁଲା ଓ ଗୋପବନ୍ଧୁ ଦର୍ଶନ ଆଦି ସମ୍ବାଦଧର୍ମୀ ସଂକ୍ଷିପ୍ତ ରଚନା ବା ଚୂର୍ଣ୍ଣକ ।

"ଚାନ୍ଦବାଲି ବନ୍ଦର" ପ୍ରବନ୍ଧରେ ଲେଖକ ଅତୀତ ନୌବାଣିଜ୍ୟର ଗୌରବ ଗାଥା ବର୍ଣ୍ଣନା କରିଛନ୍ତି । ଉତ୍କଳର ଏକ ଉତ୍କୃଷ୍ଟ ପ୍ରାକୃତିକ ନଦୀ ବନ୍ଦର ଭାବରେ ବେପାର ବାଣିଜ୍ୟ ଓ ଗମନା ଗମନର ଏକ ପ୍ରଧାନସ୍ଥଳୀ ହୋଇ ପାରିଥିଲା । ଦ୍ୱିତୀୟ ମହାସମର ପରେପରେ ଜାହାଜ ଚଳାଚଳ ବାଧାପ୍ରାପ୍ତ ହେବାରୁ ଏବଂ ଉତ୍ପନ୍ନ ଶସ୍ୟ ଦ୍ରବ୍ୟର ରପ୍ତାନୀ କ୍ଷେତ୍ରରେ କଟକଣା ଜାରି ହେବାରୁ ବନ୍ଦରର ଗୁରୁତ୍ୱ ନଷ୍ଟ ହୋଇଗଲା । ତଥାପି ଲେଖକ ଆଶାବାଦୀ ହୋଇଛନ୍ତି ଯଦି ନଦୀ ବନ୍ଦରର ଅସୁବିଧା ସବୁ ଦୂରକରି ଆଧୁନିକକରଣ ହୋଇପାରନ୍ତା, ତାହେଲେ ଚାନ୍ଦବାଲି ତା'ର ପୂର୍ବ ଗୌରବ ଫେରିପାଆନ୍ତା । ଜୀବିକାର୍ଜନ କ୍ଷେତ୍ରରେ ସ୍ୱାବଲମ୍ବନଶୀଳ ହୋଇ ଅଞ୍ଚଳବାସୀଙ୍କ ଆର୍ଥିକ ଉନ୍ନତି ଘଟିପାରନ୍ତା । ବନ୍ଦରର ଅତୀତ ଗୌରବ ଫେରି

ଆସିବା ପାଇଁ ଲେଖକ ଯେତିକି ଆଶାବାଦୀ ହୋଇଛନ୍ତି, ଏହାର୍ ଆଜି ଜରାଜୀର୍ଣ୍ଣ ଅବସ୍ଥା ଦେଖି ସେତିକି ବ୍ୟଥିତ ହୋଇଛନ୍ତି । ଆଜି କେବଳ ପଡ଼ିରହିଛି ଜୀର୍ଣ୍ଣ ନଦୀତଟ ଓ ନ୍‌ଦୀ ତଟର ସବୁଜଶ୍ୟାମଳ ବୃକ୍ଷରାଜି, ଯାହା ଅତୀତର ମୂକ ସାକ୍ଷୀ ହୋଇ ।

ସରକାରଙ୍କ ଦ୍ୱାରା 'ଆଳି ରିଙ୍ଗବନ୍ଧ' ତିଆରି ହେବାର ଯୋଜନା ହେବାରୁ ଏହା ଆଳି ଅଞ୍ଚଳ ବାସୀଙ୍କ ପାଇଁ ଚିନ୍ତାର ଘୋର କାରଣ ହୋଇଛି । ଏହି ରିଙ୍ଗବନ୍ଧ ନିର୍ମିତ ହେଲେ ଅଳି ଅଞ୍ଚଳର ବିସ୍ତୃତ ଶସ୍ୟକ୍ଷେତ୍ରକୁ ସୁରକ୍ଷା ଦେବା ପରିବର୍ତ୍ତେ ଆଳିର ତଳମାଳ ଅଞ୍ଚଳବାସୀଙ୍କ ବନ୍ୟାଦ୍ୱାରା ଯେଉଁ ନାହିଁ ନଥିବା ଦୁଃଖଦ ପରିସ୍ଥିତି ସୃଷ୍ଟି ହେବ, ସରକାର ବାହାଦୂର ଏକଥା କେବେ ଚିନ୍ତାକରି ନାହାଁନ୍ତି । ବ୍ରାହ୍ମଣୀ, ଖରସୁଆଁର ବନ୍ୟାଜଳ ବୈତରଣୀ ଓ ସାଳନ୍ଦୀ ନଦୀର ଜଳ ସହିତ ମିଶି ଭୟଙ୍କର ବନ୍ୟା ସୃଷ୍ଟି କରିବ । ତଳିଆ ଗହିରିଆ ଅଞ୍ଚଳକୁ ବନ୍ୟାଜଳ ପ୍ଲାବିତ ହୋଇ ଦୀର୍ଘଦିନ ଅଞ୍ଚଳକୁ ବୁଡ଼ାଇ ରଖିବ । ଲୋକମାନେ ଘୋର ଦୁର୍ଦ୍ଦଶା ଭୋଗିବା ସହିତ ସମସ୍ତ ଫସଲ ହାନି ଘଟିବ । ଶୀଘ୍ର ବନ୍ୟାଜଳ ଏହି ଅଞ୍ଚଳରୁ ନିଷ୍କାସନ ହୋଇପାରିବ ନାହିଁ । ଏଥିପାଇଁ ବନ୍ୟାବିଶାରଦ କମିଟି ଓ ଇଂଜିନିୟରମାନେ ବନ୍ୟା ନିରାକରଣ ପାଇଁ ସୁଚିନ୍ତିତ ମତବ୍ୟକ୍ତ କରିଥିଲେ ମଧ ସରକାରଙ୍କ ଉଦାସୀନତା ଯୋଗୁଁ ତାହା କାର୍ଯ୍ୟକାରୀ ହୋଇନାହିଁ । ଫଳରେ ପ୍ରାବନ୍ଧିକ 'ଆଳି ରିଙ୍ଗବନ୍ଧ' ନହେବା ସପକ୍ଷରେ ମତାମତ ବ୍ୟକ୍ତ କରିବା ସହିତ ରିଙ୍ଗବନ୍ଧ ଅଞ୍ଚଳ ପାଇଁ ଜଳସେଚନର ସୁବନ୍ଦୋବସ୍ତ କରାଯିବାକୁ ଯୁକ୍ତି ବାଢ଼ିଛନ୍ତି ।

'ଭାଷାର ମୂଳଦୁଆ ହେଉଛି ଶବ୍ଦ ।' ଯେଉଁ ଭାଷାର ଶବ୍ଦ ଯେତେ ଅଧିକ, ସେ ଭାଷାର ଭାବ ପ୍ରକାଶ ସେତେ ସ୍ୱଚ୍ଛନ୍ଦ । ବିଶ୍ୱପ୍ରସିଦ୍ଧ ଇଂରାଜୀ ଭାଷା ସମଗ୍ର ପୃଥିବୀରୁ ଶବ୍ଦ ସଂଗ୍ରହ କରି ସମୃଦ୍ଧ ହୋଇ ପାରିଛି । ଆଜିବି ମଧ ଶବ୍ଦ ସଂଗ୍ରହ ସଂଗ୍ରାମ ଅବ୍ୟାହତ ରହିଛି । ନୂତନ ନୂତନ ଶବ୍ଦକୁ ଲେଖିବାର ଶୈଳୀରେ ପରିବର୍ତ୍ତନ କରି ଯେକୌଣସି ଭାଷାକୁ ଭାବ ପ୍ରକାଶର ମାଧମ କରିହେବ । ଫଳରେ ବ୍ୟକ୍ତି ନିଜର ମନକଥାକୁ ଶବ୍ଦ ମାଧମରେ ଅନ୍ୟଠାରେ ସ୍ୱଛନ୍ଦ ଭାବରେ ପ୍ରକାଶ କରି ପାରିବେ । ଏହା ଦ୍ୱାରା ଭାଷା ଓ ସଂସ୍କୃତିର ଅଶେଷ ବିକାଶ ସାଧିତ ହେବ । ଏହାହିଁ ଭାଷାର ମୂଳ ହେଲା ଶବ୍ଦ ପ୍ରବନ୍ଧର ଅଭିମତ ।

"ଆମ ଭାଷା" ପ୍ରବନ୍ଧରେ ପ୍ରାବନ୍ଧିକଙ୍କ ସ୍ୱକୀୟ ମନ୍ତବ୍ୟଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଅବଶ୍ୟ ଏ ପ୍ରବନ୍ଧଟି ସେ ଯେତେବେଳେ ରଚନା କରିଥିଲେ, ସେତେବେଳେ ପୂର୍ବ ଓଡ଼ିଶା ସହିତ ପଶ୍ଚିମ ଓଡ଼ିଶାର ଗମନା ଗମନର ସେତେଟା ସୁବିଧା ନଥିଲା । ଫଳରେ ସାମାଜିକ, ଆର୍ଥନୀତିକ, ଧାର୍ମିକ, ଭାଷା ଓ ଭାବଗତ ତଥା ସାଂସ୍କୃତିକ ଐକ୍ୟଭାବ ପ୍ରତିଷ୍ଠା କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା । ଆଜି ପୂର୍ବ ଅବସ୍ଥାର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଛି । ଫଳରେ ଗମନା ଗମନର ସୁବିଧା ହେତୁ ଦୂରତ୍ୱର ବ୍ୟବଧାନ ସଂକୁଚିତ ହୋଇଯାଇଛି । ଭୌଗୋଳିକ ଦୂରତ୍ୱ ଆଞ୍ଚଳିକ ମନୋଭାବକୁ ସଂକୀର୍ଣ୍ଣ କରିପାରି ନାହିଁ । ପଶ୍ଚିମ ଓଡ଼ିଶାର ଭାଷା, ସାହିତ୍ୟ, ଚାଲି ଚଳନ, ଖାଦ୍ୟପେୟ, ଧର୍ମୀୟ ଭାବନା, ଶିକ୍ଷା, ସ୍ୱାସ୍ଥ୍ୟ ତଥା ସାଂସ୍କୃତିକ ଜୀବନ ଧାରା ସହିତ ଓଡ଼ିଶାର ସର୍ବତ୍ର ଲୋକଙ୍କର ଏକ ମଧୁର ସମନ୍ୱୟ ଘଟିଛି । ପଶ୍ଚିମ ଓଡ଼ିଶା କାହିଁକି ଓଡ଼ିଶାର ଯେ କୌଣସି ଅଞ୍ଚଳର ସାଂସ୍କୃତିକ ଜୀବନଧାରାକୁ ସମଗ୍ର ଓଡ଼ିଶାବାସୀ ଉତ୍କଳୀୟ ଜୀବନଧାରା ଭାବରେ ସାଦରେ ଗ୍ରହଣ କରୁଛନ୍ତି; ଯଦିଓ ଅନେକ ଆଞ୍ଚଳିକ ତାରତମ୍ୟ ରହିଛି ।

ପ୍ରାବନ୍ଧିକ ମତରେ ପଶ୍ଚିମ-ଓଡ଼ିଶାର ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର ପ୍ରଭୃତି ଜିଲ୍ଲାମାନଙ୍କର କଥିତ ଭାଷାରେ ସୁନ୍ଦର ସୁନ୍ଦର ଶବ୍ଦ ସବୁ ରହିଛି । ଏହି ଶବ୍ଦଗୁଡ଼ିକ ଯଦି ସାହିତ୍ୟିକ ଓ ଭାଷାବିତ୍‌ମାନେ ଓଡ଼ିଆ କଥିତ ଭାଷା ମଧ୍ୟକୁ ଆଣନ୍ତେ, ତା'ହେଲେ ଓଡ଼ିଆଭାଷାର ଶ୍ରୀବୃଦ୍ଧି ହୁଅନ୍ତା । ତା'ଛଡ଼ା ଭାଷାଗତ ଓ ଭାବଗତ ଅନୈକ୍ୟ ଦୂରୀଭୂତ ହୋଇ ପରଦେଶୀ ମନୋଭାବର ମଧ୍ୟ ଅବସାନ ଘଟନ୍ତା । ଭାରତର ଅନ୍ୟାନ୍ୟ ଭାଷାମାନଙ୍କ କ୍ଷେତ୍ରରେ ମଧ୍ୟ ଏଭଳି ଘଟିଛି । ଉଦାହରଣ ସ୍ୱରୂପ ସେ କହିଛନ୍ତି - 'ବାବୁ' ଶବ୍ଦ କହିଲେ ପଶ୍ଚିମାଞ୍ଚଳରେ 'ଛୋଟ' ପୁଅକୁ ଏବଂ 'ନନୀ' ଶବ୍ଦ ଛୋଟଝିଅଙ୍କୁ ବୁଝାଏ । ବଙ୍ଗଳାରେ 'ଖୋକା' କହିଲେ ଛୋଟ ପୁଅ ଏବଂ 'ଖୁକୀ' କହିଲେ ଛୋଟ ଝିଅକୁ ବୁଝାଏ । ଲେଖକ ଏଭଳି ଶତାଧିକ ଆଞ୍ଚଳିକ ଶବ୍ଦ ଗୁଡ଼ିକୁ ଚିହ୍ନଟ କରି ନିର୍ବାଚନ କରିଛନ୍ତି । ଏଥିସହିତ ସତର୍କତା ଅବଲମ୍ବନ କରିବାକୁ ପରାମର୍ଶ ଦେଇ କହିଛନ୍ତି "ଯେପରି ଭାଷା ଅସୁନ୍ଦର କି ଭାବ ପ୍ରକାଶର ସ୍ୱାଭାବିକତା ନଷ୍ଟ ନହେବ ତା' ସହିତ ଓଡ଼ିଆଭାଷାର ମୌଳିକତା, ଠାଣି ସହିତ

ଖାପଖୁଆଇ ଏହାକୁ ସର୍ବ ଜନାଦୃତ କରିବାକୁ ହେବ । ଏଥିପାଇଁ ଆଞ୍ଚଳିକ ସହଯୋଗ, ଯୋଗାଯୋଗ ତଥା ଉଦାର ମନୋଭାବ ଆବଶ୍ୟକ । ତା' ହେଲେ ଉତ୍କଳର ଜାତୀୟ ଏକତା, ରାଷ୍ଟ୍ରୀୟ ଅଖଣ୍ଡତା, ରାଜନୈତିକ ସ୍ଥିରତା, ଅର୍ଥନୈତିକ ବିକାଶ ସମ୍ଭବ ହେବ ।"

"ଗୋବଧ ନିଷେଧ' ପ୍ରବନ୍ଧରେ ଗୋସମ୍ପଦର ସୁରକ୍ଷା ବିଷୟରେ ଆଲୋକପାତ କରିଛନ୍ତି । ହିନ୍ଦୁମାନଙ୍କ ଧର୍ମୀୟ ଭାବନାରେ ଗୋଜାତିକୁ 'ଗୋମାତା' ଭାବରେ ପୂଜା କରାଯାଏ । ଜୀବନ ଧାରଣ ପାଇଁ କୃଷିକର୍ମରେ ଗୋଜାତିକୁ ବ୍ୟବହାର କରାଯାଇଥାଏ । ଏହାଙ୍କଠାରୁ ଉତ୍ପନ୍ନ ଦୁଗ୍ଧ ଶିଶୁଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ନିରାମିଷ ପୁଷ୍ଟିଯୁକ୍ତ ପାନୀୟ । ଗୋକ୍ଷୀରରୁ ବହୁ ଜାତୀୟ ନିରାମିଷ (ବସା ଦହି, ଘୋଳ ଦହି, ଘିଅ, ଲହୁଣି, ଛେନା, ମିଠା ଜାତୀୟ) ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ ହୋଇଥାଏ । ଗୋରୁର ମୂତ, ଗୋବର, ଦୁଗ୍ଧ, ପୂଜାର୍ଚ୍ଚନା, ଔଷଧୀୟ ତଥା ମୁତ୍ର ଓ ଗୋବରକୁ ଶୁଦ୍ଧତା ରକ୍ଷା ଏବଂ ଉତ୍କୃଷ୍ଟ ସାର ଭାବରେ ବ୍ୟବହାର କରାଯାଇଥାଏ । ଗୋସମ୍ପଦ ମାନବ ସମାଜର ଅଶେଷ ମଙ୍ଗଳସାଧନା କରିଥାଏ । ଫଳରେ ଭାରତବର୍ଷରେ ଗୋଜାତିକୁ ଯଥେଷ୍ଟ ସମ୍ମାନ ଓ ଭକ୍ତି କରାଯାଏ ।

ପ୍ରାଚୀନକାଳରେ ଆର୍ଯ୍ୟମାନେ ଗୋମାଂସ ଭକ୍ଷଣ କରୁଥିଲେ । ଗୋମେଧ ଯଜ୍ଞ ଅନୁଷ୍ଠିତ ହେଉଥିଲା । ଗୋଜାତିକୁ ଦେବତା ଭାବରେ ପୂଜା କରାଯାଉ ନଥିଲା । ପରେ ଗୋଜାତି ଉପରେ ସମ୍ପୂର୍ଣ୍ଣ କୃଷି କର୍ମ ନିର୍ଭର କରିବାରୁ ଗୋବଧ ନିଷେଧ ହେଲା । ଗୋ ଜାତିକୁ 'ଗୋମାତା' ଭାବରେ ପୂଜା କଲେ ଏବଂ ଗୋସମ୍ପଦର ସମ୍ମାନ ଓ ସୁରକ୍ଷା ପ୍ରତି ଧ୍ୟାନ ଦେଲେ ।

ଏବେ ଗୋସମ୍ପଦ ହ୍ରାସ ପାଇବାରେ ଲାଗିଛି । ଏହାର ସୁରକ୍ଷା ପାଇଁ ଆଇନ୍ ଥିଲେ ମଧ୍ୟ ତାହା ଠିକ୍ ଭାବରେ କାର୍ଯ୍ୟକାରୀ ହେଉନାହିଁ । ବରଂ ଅସଂଖ୍ୟ ଗୋସମ୍ପଦ ହଣା ହୋଇ ମାଂସ ଆକାରରେ ରପ୍ତାନୀ ହେଉଛି । ଅନେକ ସମୟରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସାମାଜିକ ବିଭେଦ ସୃଷ୍ଟି ହେଉଛି । ଯାହା ଭାରତବର୍ଷର ସୁସ୍ଥ ସାମାଜିକ ଭାଇଚାରା ଭାବନାକୁ କ୍ଷୁଣ୍ଣ କରୁଛି ବୋଲି ପ୍ରାବନ୍ଧିକଙ୍କ ଯଥାର୍ଥ ମନ୍ତବ୍ୟ ।

୧୮୯୩ ମସିହା ଡିସେମ୍ବର ମାସରେ, କଟକ ନର୍ମାଲ ଟ୍ରେନିଂ ସ୍କୁଲକୁ କେନ୍ଦ୍ରକରି ଗଢ଼ି ଉଠିଥିବା 'ଆଲୋଚନା ସଭା', ପରବର୍ତ୍ତୀ ୧୯୦୩ ମସିହା ମେ' ୭ ତାରିଖରେ ତାହା 'ଉତ୍କଳ ସାହିତ୍ୟ ସମାଜ' ନାମରେ ନାମିତ ହେଲା । ଉକ୍ତ ଆଲୋଚନା ସଭାର ପ୍ରାଣ ପ୍ରତିଷ୍ଠାତା ଥିଲେ ଉକ୍ତକବି ମଧୁସୂଦନ ଏବଂ ଏହାର ପ୍ରଥମ ସମ୍ପାଦକ ଥିଲେ ଚନ୍ଦ୍ରମୋହନ ମହାରଣା ।

ଏହାଥିଲା ଓଡ଼ିଶାର ପ୍ରାଚୀନତମ ସାରସ୍ୱତ ଅନୁଷ୍ଠାନ । ପ୍ରାବନ୍ଧିକ ଉକ୍ତ ଅନୁଷ୍ଠାନର କାର୍ଯ୍ୟକାରିତା ବିଷୟରେ ଏକ ସୁଚିନ୍ତିତ ପରାମର୍ଶ ଦେଇଛନ୍ତି । ଏହି ଅନୁଷ୍ଠାନ ଦ୍ୱାରା ଓଡ଼ିଆଭାଷା ସାହିତ୍ୟର ଶ୍ରୀବୃଦ୍ଧି ସାଧିତ ହେବ । ଏହା କଟକ ନଗରୀରେ ଅବସ୍ଥିତ କେତେକ ମୁଷ୍ଟିମେୟ ଶିକ୍ଷିତ ବ୍ୟକ୍ତିଙ୍କୁ ଛାଡ଼ିଦେଲେ ସାଧାରଣ ଲୋକମାନଙ୍କର ଏହି ଅନୁଷ୍ଠାନ ସହିତ ସମ୍ପର୍କ ନାହିଁ କହିଲେ ଚଳେ ।

ପ୍ରାବନ୍ଧିକଙ୍କ ମତରେ ଉକ୍ତ ଅନୁଷ୍ଠାନର କାର୍ଯ୍ୟ ଧାରାକୁ କଟକ ସହର ମଧ୍ୟରେ ସୀମିତ ନରଖି ସମଗ୍ର ଜିଲ୍ଲାରେ ସକ୍ରିୟ କରିବାକୁ ପଡ଼ିବ । ପ୍ରତିବର୍ଷ ଜିଲ୍ଲାସ୍ତରୀୟ ବାର୍ଷିକଉତ୍ସବ ଆୟୋଜନ କରାଯାଇ ଉକ୍ତ ଜିଲ୍ଲାର ଲୋକକଥା ଓ କାହାଣୀ, ଲୋକଗୀତ, ଢ଼ଗଢ଼ମାଳି, ପ୍ରବାଦ ପ୍ରବଚନ ସଂଗ୍ରହ ତଥା ସାହିତ୍ୟିକମାନଙ୍କ କୃତି ବିଷୟରେ ଆଲୋଚନା ହେବା ଉଚିତ । ଫଳରେ ଉକ୍ତ ଅଞ୍ଚଳର ସାହିତ୍ୟ ସଂସ୍କୃତି ସହିତ ସୁସମ୍ପର୍କ ସ୍ଥାପିତ ହୋଇପାରିବ ଏବଂ ଅଞ୍ଚଳବାସୀ ଉତ୍ସାହିତ ହେବେ । ପ୍ରତିବର୍ଷ ଯେଉଁ ଜିଲ୍ଲାରେ ହେବ ତାହା ସଭାରେ ସ୍ଥିରୀକୃତ ହେବ । ଏହାଦ୍ୱାରା 'ଉତ୍କଳ ସାହିତ୍ୟ ସମାଜ' ସହିତ ସମଗ୍ର ଉତ୍କଳର ସାରସ୍ୱତ ଯୋଗସୂତ୍ର ପ୍ରତିଷ୍ଠା ହେବ ଏବଂ ଉତ୍କଳବାସୀ ଅନୁଷ୍ଠାନରୁ ପ୍ରେରଣା ଲାଭ କରିବେ ।

"କାମିନୀଫୁଲ" ପ୍ରବନ୍ଧରେ କାମିନୀଫୁଲର ରୂପ ଲାବଣ୍ୟ, ସୁବାସ, ସକାଳେ ବୃକ୍ଷମୂଳେ ଝଡ଼ିପଡ଼ିଥିବା ପୁଷ୍ପଶଯ୍ୟାର ଶୋଭା କଥା ବର୍ଣ୍ଣନା କରିଛନ୍ତି । ଚାରାବାଲାଠାରୁ କାମିନୀଫୁଲର ଚାରା କିଣୁକିଣୁ ସୁଗନ୍ଧରାଜଫୁଲର ଚାରା କିଣିଛନ୍ତି ଲେଖକ । ଚାରାଗୁଡ଼ିକୁ ଲଗାଇବାର ପଦ୍ଧତି ମଧ୍ୟ ଚାରାବାଲାଙ୍କଠାରୁ ଶୁଣିଛନ୍ତି । ପ୍ରତ୍ୟେକଟି ଚାରା ଲଗାଇବା ବେଳେ ତା' ଦେହରେ ଥିବା ଦୁଧମାଟି (ମୂଳ ମାଟି) ଯେପରି ଲାଗି ରହିବ, ସେଥିପ୍ରତି ଧ୍ୟାନ ଦେବାକୁ ହେବ । କାରଣ ଏହି ଦୁଧମାଟିରେ ଯେଉଁ ଆହାର

ଶକ୍ତି ଅଛି, ତାହା ଚାରାଗୁଡ଼ିକୁ ବେଶ୍ କିଛିଦିନ ନୂଆମାଟିରେ ବଞ୍ଚାଇ ରଖିବ । ସେଇ ସମୟ ମଧ୍ୟରେ ଚାରାଗଛଗୁଡ଼ିକ ନୂଆମାଟିରେ ଲାଗିଯିବ ଏବଂ ଆହାର ସଂଗ୍ରହକରି ସୁସ୍ଥସବଳ ହୋଇ ବଞ୍ଚିବାରେ ସମର୍ଥ ହାସଲ କରିବ । 'ଟାଇଟାନିକ୍ ଜାହାଜ' ପ୍ରବନ୍ଧଟି ଏକ ଅସମ୍ପୂର୍ଣ୍ଣ ପ୍ରବନ୍ଧ । ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ଆମେରିକା ମଧ୍ୟରେ ଜଳପଥରେ ଯାତାୟତ ପାଇଁ ଏହା ଥିଲା ଉତ୍କୃଷ୍ଟ ଧରଣର ସର୍ବବୃହତ୍ ବାଷ୍ପୀୟ ପୋତ । ଯାନ୍ତ୍ରିକ ଓ ଇଂଜିନିୟରିଂ କୌଶଳରେ ଏହା ଥିଲା ପୃଥିବୀର ସର୍ବାଧୁନିକ । ଏଥିରେ ଖେଳ ପ୍ରାଙ୍ଗଣ, ସନ୍ତରଣାଗାର, ଆମୋଦ ପ୍ରମୋଦ ପାଇଁ ପୁସ୍ତକାଗାର, କ୍ଲବ, ହୋଟେଲ, ଭୋଜନାଳୟ, ପୋଷ୍ଟଅଫିସ୍ ଆଦିର ସକଳ ପ୍ରକାର ସୁବିଧା ଯାତ୍ରୀମାନଙ୍କ ପାଇଁ ବ୍ୟବସ୍ଥା ଥିଲା । ତଥାପି ଏହା ସଲିଳ ସମାଧି ହେଲା ଏବଂ ବହୁ ଜୀବନର କ୍ଷୟ କ୍ଷତି ଘଟିଲା, ଯାହା ବିଶ୍ୱପାଇଁ ଏକ ଦୁଃଖଦ ଘଟଣା ଥିଲା ।

ପ୍ରାବନ୍ଧିକଙ୍କ ସମ୍ବାଦଧର୍ମୀ କେତୋଟି କ୍ଷୁଦ୍ର ପ୍ରବନ୍ଧ ମଧ୍ୟରୁ 'କାମିନୀଫୁଲ, ଟାଇଟାନିକ୍ ଜାହାଜ, କୁଳବୃଦ୍ଧ ମଧୁସୂଦନଙ୍କ ଆବକ୍ଷ ମୂର୍ତ୍ତି ସ୍ଥାପନ, ଉତ୍କଳସମ୍ମିଳନୀ ଓ ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ଲିପି ପ୍ରସଙ୍ଗ, ଦାରୁବ୍ରହ୍ମ ବା ଦାରୁବିଗ୍ରହ ସ୍ଥାପନ, ବ୍ରହ୍ମମନ୍ଦିର, ବେଦବ୍ୟାସ ପୀଠ, 'ହେ' ସମ୍ବୋଧନ 'ବୋଉ' ଡାକ, ସତ୍ୟବାଦୀ ପ୍ରେସବୁଲା ଓ ଗୋପବନ୍ଧୁଙ୍କୁ ଦର୍ଶନ, ଗୋପବନ୍ଧୁ ଓ ଗାନ୍ଧିଦର୍ଶନ ଅନ୍ୟତମ ।

'କୁଳବୃଦ୍ଧ ମଧୁସୂଦନ ଦାସଙ୍କ ଆବକ୍ଷ ମୂର୍ତ୍ତି ସ୍ଥାପନ' ପ୍ରସଙ୍ଗରେ ଏ ଜାତି ପାଇଁ ଯାହାଙ୍କ ଅସୀମ ତ୍ୟାଗ ରହିଛି, ଯାହାଙ୍କ ପାଇଁ ଆମେ ସ୍ୱତନ୍ତ୍ର ରାଜ୍ୟ, ରାଜଧାନୀ, ସଚିବାଳୟ ପାଇଛୁ, ତାଙ୍କ ଭଳି ତ୍ୟାଗୀ ମହାତ୍ମାଙ୍କ ପ୍ରତିମୂର୍ତ୍ତି ରାଜଧାନୀର କୌଣସି ସ୍ଥାନରେ ସ୍ଥାପିତ ନହେବା ଦୁଃଖର ବିଷୟ । ଲେଖକଙ୍କ ମତରେ ଉତ୍କଳର ଏହି ବରପୁତ୍ରଙ୍କ ପ୍ରତିମୂର୍ତ୍ତି ସଚିବାଳୟ ପରିସର ମଧ୍ୟରେ ସ୍ଥାପିତ ହେବା ଅଧିକ ଯୁକ୍ତିଯୁକ୍ତ । ଯେଉଁମାନେ ସଚିବାଳୟକୁ ଯିବେ ଏବଂ ଫେରିବେ, ସେମାନେ ଏହି ମୂର୍ତ୍ତିକୁ ଦର୍ଶନକରି ସ୍ୱତନ୍ତ୍ର ଓଡ଼ିଶା ଗଠନପାଇଁ ତାଙ୍କର ମହାନ୍ ତ୍ୟାଗ ଗାଥା ସ୍ମରଣ କରିବେ ଏବଂ ନତମସ୍ତକ ହୋଇ ସ୍ୱୀୟ ହୃଦୟର କୃତଜ୍ଞତା ବାଢ଼ିବେ ।

ଭାଷାସୂତ୍ରରେ ସମଗ୍ର ବିଚ୍ଛିନ୍ନ ଉତ୍କଳ ଭୂଖଣ୍ଡକୁ ଗୋଟିଏ ଭାବନାରେ ବାନ୍ଧି ରଖିବା ପାଇଁ ମଧୁବାବୁଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଥିଲା "ଉତ୍କଳ ସମ୍ମିଳନୀ' ୧୯୦୩

ମସିହାରେ । ଫଳରେ ଓଡ଼ିଶାର ସାର୍ବଭୌମତ୍ୱ ରକ୍ଷା ହେବା ସହିତ ଓଡ଼ିଶାର ବିକାଶ ଗତ ସ୍ୱାର୍ଥ ରକ୍ଷା ସମ୍ଭବ ବୋଲି ମଧୁବାବୁ ଭଲଭାବରେ ଉପଲବ୍ଧି କରିଥିଲେ । ତାଙ୍କରି ଭାଷାରେ -

"ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ
କୋଟିପ୍ରାଣ ବିନ୍ଦୁଝରେ,
ତୋର ପ୍ରାଣବିନ୍ଦୁ ମଶାଇ ଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।"

ଉତ୍କଳର ଏହା ସର୍ବ ପ୍ରାଚୀନ ଜାତୀୟ ଅନୁଷ୍ଠାନ । ଏହି ଅନୁଷ୍ଠାନର ଐକାନ୍ତିକ ପ୍ରଚେଷ୍ଟା ଫଳରେ ୧୯୩୬ ଏପ୍ରିଲ ପହିଲାରେ ଆମେ ସ୍ୱତନ୍ତ୍ର ପ୍ରଦେଶ ସଂଗଠନର ମାନ୍ୟତା ପାଇଲୁ । ତଥାପି ଆହୁରି କିଛି କିଛି ଓଡ଼ିଆ ଭାଷୀ ଅଞ୍ଚଳ ଆମଠାରୁ ବିଚ୍ଛିନ୍ନ ହୋଇ ରହିଗଲା । ଏଥିପାଇଁ 'ଉତ୍କଳ ସମ୍ମିଳନୀ' ଭଳି ଜାତୀୟ ମଞ୍ଚର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହି ମଞ୍ଚକୁ ସଜୀବ ଓ ସକ୍ରିୟ ରଖି ବିଚ୍ଛିନ୍ନ ଅଞ୍ଚଳର ଓଡ଼ିଆ ଭାଷା ସଂସ୍କୃତିର ସୁରକ୍ଷା ଓ ବିକାଶ ପ୍ରତି ବିଶେଷ ଧ୍ୟାନ ଦେବା ପ୍ରଥମ କର୍ତ୍ତବ୍ୟ । ତା' ନହେଲେ ଏହିସବୁ ପ୍ରାନ୍ତୀୟ ଅଞ୍ଚଳରେ ଓଡ଼ିଆଭାଷା ସଂସ୍କୃତି କ୍ରମେ କ୍ରମେ ମଉଳି ଯିବ ବୋଲି ଲେଖକ ପ୍ରକାଶ କରିଛନ୍ତି । ଏଥିସହିତ ଏହାର ସ୍ଥାୟିତ୍ୱ ପାଇଁ ବିଦ୍ୟାଳୟ ସ୍ତରରେ ପ୍ରତ୍ୟେକ ଛାତ୍ରଛାତ୍ରୀ ଦଶପଇସା ଏବଂ ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରତ୍ୟେକ ଛାତ୍ରଛାତ୍ରୀ କୋଡ଼ିଏପଇସା ଆର୍ଥିକ ଅନୁଦାନ ଦେଇ ଏହାର ପାଣ୍ଠିକୁ ପୁଷ୍ଟ କରିବା ପାଇଁ ସୁପରାମର୍ଶ ଦେଇଛନ୍ତି । କାରଣ ଉତ୍କଳ ସମ୍ମିଳନୀ ବଞ୍ଚିରହିଲେ ଅଖଣ୍ଡ ଉତ୍କଳବାସୀଙ୍କ ସ୍ୱାର୍ଥରକ୍ଷା ହେବ ଏବଂ ଉତ୍କଳ ଭାଷାସାହିତ୍ୟ ସଂସ୍କୃତିର ବିକାଶ ଘଟିବ ।

କେହି କେହି ଜନନାୟକ ଓ ଶିକ୍ଷାବିତ୍‌ମାନେ 'ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ଲିପି ସୃଷ୍ଟି' କରାଯାଇ ସେମାନଙ୍କ ଭାଷାରେ ପିଲାମାନଙ୍କୁ ପ୍ରାଥମିକ ଶିକ୍ଷା ଦିଆଯିବା ଉଚିତ ବୋଲି ମତ ପୋଷଣ କରିଥାନ୍ତି । ପ୍ରାବନ୍ଧିକ ଏଭଳି ଭାବନା ଓ ପରିକଳ୍ପନାକୁ ବିରୋଧ କରିଛନ୍ତି । କାରଣ ଆଦିବାସୀମାନେ ଅନେକ ଛୋଟଛୋଟ ଦଳ (ସମ୍ପ୍ରଦାୟ)ରେ ବିଭକ୍ତ । ସମସ୍ତଙ୍କ ପାଇଁ ଭିନ୍ନଭିନ୍ନ ସ୍ୱତନ୍ତ୍ର ଲିପି ସୃଷ୍ଟି କରିବା

ସମ୍ଭବ ନୁହେଁ । ଏହା ଦ୍ୱାରା ଭାଷାଗତ ବିଭ୍ରାଟ ସୃଷ୍ଟି ହେବ । ବରଂ ରାଜ୍ୟ ପ୍ରଚଳିତ ଲିପିରେ ଶିକ୍ଷାଦାନ ପାଇଲେ ସମଗ୍ର ଆଦିବାସୀମାନଙ୍କର ଉନ୍ନତି ସାଧିତ ହେବ, ଉଚ୍ଚଶିକ୍ଷା ଲାଭପାଇଁ ଅଧିକ ସୁଯୋଗ ଓ ସୁବିଧା ପାଇପାରିବେ । ଭାରତରେ ୧୪ଟି ଭାଷାକୁ ସାମ୍ବିଧାନିକ ସ୍ୱୀକୃତି ମିଳିଥିଲେ ମଧ୍ୟ ଆହୁରି ଅନେକ ଲିପିହୀନ ଭାଷା ରହିଛି । ସେଦୃଷ୍ଟିରୁ ଆଦିବାସୀମାନଙ୍କ ପାଇଁ ଆଉ ଏକ ସ୍ୱତନ୍ତ୍ର ଲିପି ସୃଷ୍ଟି କରିବା ଅନାବଶ୍ୟକ ବୋଲି ପ୍ରାବନ୍ଧିକ ମତ ବ୍ୟକ୍ତ କରିଛନ୍ତି ।

ପୁରୀ ନୀଳକନ୍ଦରରେ ପ୍ରଭୁ ଜଗନ୍ନାଥ 'ଦାରୁବ୍ରହ୍ମ' ଭାବରେ ବିଶ୍ୱରେ ପୂଜିତ । କିମ୍ବଦନ୍ତୀ କହେ ଜଗନ୍ନାଥ ହେଉଛନ୍ତି ଶବର ମାନଙ୍କ ଦେବତା । ଦାରୁ ବା ବୃକ୍ଷପୂଜା ଆଦିବାସୀ ସମ୍ପ୍ରଦାୟଙ୍କ ମଧ୍ୟରେ ମଧ୍ୟ ପ୍ରଚଳିତ । ମାତ୍ର ଜଗନ୍ନାଥ ଦାରୁ ବିଗ୍ରହ ଏବଂ ଆଦିବାସୀମାନଙ୍କର ମଧ୍ୟ ଦେବତା, ଏ ଧାରଣା ସେମାନଙ୍କ ମଧ୍ୟରେ ସୃଷ୍ଟି ହୋଇନାହିଁ । ସେମାନଙ୍କର ଧର୍ମ ଓ ସଂସ୍କୃତି ଆର୍ଯ୍ୟମାନଙ୍କଠାରୁ ଅଭିନ୍ନ, ଏଭଳି ଭାବନା ସୃଷ୍ଟି ହୋଇଥାନ୍ତା, ଫଳରେ ପୁରୀ ଶ୍ରୀକ୍ଷେତ୍ର ସେମାନଙ୍କର ମଧ୍ୟ ପ୍ରଧାନ ଧର୍ମପୀଠ ରୂପେ ପରିଗଣିତ ହୁଅନ୍ତା । ଯଦ୍ୱାରା ଜୀବ-ପରମର ଏକତ୍ୱ ଭାବ ସୃଷ୍ଟି ହୁଅନ୍ତୁ ଏବଂ ସମଗ୍ର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଓଡ଼ିଶା, ବଙ୍ଗ, ବିହାର, ଆନ୍ଧ୍ର ଓ ମଧ୍ୟପ୍ରଦେଶ ପ୍ରତି ଶୁଭଙ୍କର ହୁଅନ୍ତା । ପ୍ରାବନ୍ଧିକଙ୍କ ଏହା ଏକ ସୁଚିନ୍ତିତ ମନ୍ତବ୍ୟ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଲେଖକ ଭଦ୍ରକଠାରୁ ଛଅମାଇଲ ଦୂରରେ ଅବସ୍ଥିତ ପାଳିଆ ଗ୍ରାମରେ ଅଧିଷ୍ଠିତ ଦେବତା ବିରଞ୍ଚିନାରାୟଣ(ବ୍ରହ୍ମା)ଙ୍କ ବିଷୟରେ ଆଲୋକପାତ କରିଛନ୍ତି । ତାଙ୍କ ଜ୍ଞାତରେ ସମଗ୍ର ଭାରତବର୍ଷରେ କେବଳ ରାଜସ୍ଥାନର ପୁଷ୍କରଠାରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ମନ୍ଦିର ଥିବା ସେ ଶୁଣିଥିଲେ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ହେଉଛନ୍ତି ସୃଷ୍ଟି, ପାଳନ ଓ ସଂହାରକର୍ତ୍ତା । ପାଳନ ଓ ସଂହାରକର୍ତ୍ତା ବିଷ୍ଣୁ ଓ ମହେଶ୍ୱର ଭାରତ ବର୍ଷରେ ସର୍ବତ୍ର ପୂଜିତ । ସେମାନଙ୍କ ମହାତ୍ମ୍ୟରେ ଭାରତୀୟ ସଂସ୍କୃତି ଓ ଭାବନା ଓତପ୍ରୋତ ଭାବରେ ଜଡ଼ିତ । ମାତ୍ର ସୃଜନକର୍ତ୍ତା ବ୍ରହ୍ମାଙ୍କ ପୂଜାର୍ଚ୍ଚନା ଖୁବ୍ କୋଚିତ । କିନ୍ତୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଏକତ୍ର ତ୍ରିନାଥମେଳା ନାମରେ ପୂଜାର୍ଚ୍ଚନାର ପରମ୍ପରା ରହିଛି । ଉତ୍କଳ

ପ୍ରଦେଶରେ ଭଦ୍ରକ ଜିଲ୍ଲା ପାଳିଆଠାରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ବିରଞ୍ଚିନାରାୟଣ ନାମରେ ପୂଜାର୍ଚ୍ଚନା ଖୁବ୍ ଗୌରବର ବିଷୟ । ଏହି ଅଜ୍ଞାତ ଓ ଅବହେଳିତ ମନ୍ଦିର ବିଷୟରେ ସର୍ବଶେଷ ଅନୁସନ୍ଧାନ ପାଇଁ ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରିଛନ୍ତି । ଲେଖକଙ୍କର ଏହାହିଁ ଅଭିସନ୍ଧିତ୍ସୁ ମନୋଭାବ ଓ ଉତ୍କଳ ପ୍ରୀତିର ଶ୍ରେଷ୍ଠ ନିଦର୍ଶନ ।

ଲେଖକ ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା ନିଟକବର୍ତ୍ତୀ 'ବେଦବ୍ୟାସ ପୀଠ' କଥା ବର୍ଣ୍ଣନା କରିଛନ୍ତି । ଶଙ୍ଖ ଓ କୋଇଲି ନଦୀର ସଂଗମସ୍ଥଳରେ ଏହା ଅବସ୍ଥିତ । ଏହିଠାରୁ ବ୍ରାହ୍ମଣୀନଦୀର ଉତ୍ପତ୍ତି ଘଟିଛି । ଏହା ଏକ ପୁରାଣପ୍ରସିଦ୍ଧ ଦର୍ଶନୀୟ ସ୍ଥାନ । ଏଠାକାର ପ୍ରାକୃତିକ ଓ ଅଧ୍ୟାତ୍ମିକ ପରିବେଶ ଖୁବ୍ ମନୋଜ୍ଞ । କୈବର୍ତ୍ତ କନ୍ୟା ସତ୍ୟବତୀ ନୌକାରେ ପାର ହେଉଥିବା ବେଳେ ଘନ କୁହେଳି ଆବରଣ ମଧ୍ୟରେ ପରାଶରଙ୍କ ସଂଯୋଗରୁ ସତ୍ୟବତୀଙ୍କ ଗର୍ଭରୁ ବ୍ୟାସଦେବ ଏହି ପୀଠରେ ଜନ୍ମ ହୋଇଥିଲେ । ଶିବରାତ୍ରୀ ଉପଲକ୍ଷେ ସପ୍ତାହବ୍ୟାପୀ ଏଠାରେ ବିରାଟ ମେଳା ଅନୁଷ୍ଠିତ ହୁଏ । ନଦୀ ଅବବାହିକାରେ ଅବସ୍ଥିତ ଶ୍ମଶାନଭୂମି ତଥା ଏଭଳି ପବିତ୍ର ସଂଗମସ୍ଥଳୀରେ ଅନୁଷ୍ଠିତ ଘାଟକର୍ମ ହିନ୍ଦୁମାନଙ୍କ ମଧ୍ୟରେ ପବିତ୍ର, ପୁଣ୍ୟଭାବ ସୃଷ୍ଟି କରିଥାଏ । ଏଭଳି ସ୍ଥାନଟି ଲୋକଲୋଚନର ଅନ୍ତରାଳରେ ରହିଯିବା ଏବଂ ଏ ସ୍ଥାନର ଗୁରୁତ୍ୱ ବିଷୟରେ ଉତ୍କଳବାସୀ ଅଜ୍ଞ ରହିବା ବିଷୟରେ କ୍ଷୋଭ ପ୍ରକାଶ କରିଛନ୍ତି ।

'ହେ' ସମ୍ବୋଧନର ଗୁରୁତ୍ୱ ତଥା ଓଡ଼ିଶାରେ ଏଭଳି ସମ୍ବୋଧନର ନିଜସ୍ୱ ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ସେହିଭଳି ଲେଖକ 'ମା' ଡାକର ମହତ୍ତ୍ୱ ବିଷୟରେ ଆଲୋକପାତ କରିଛନ୍ତି । ତାଙ୍କ ମତରେ ମା'ଙ୍କୁ 'ବୋଉ' ଡାକିବା ଏକ ଅଶୋଭନୀୟ ଚଳଣି । ଓଡ଼ିଶା ବ୍ୟତୀତ ଭାରତବର୍ଷରେ ଅନ୍ୟ କୌଣସି ଭାଷାରେ ଏଭଳି ଶବ୍ଦର ପ୍ରଚଳନ ନାହିଁ । ଓଡ଼ିଶାରେ ପୁଅର ସ୍ତ୍ରୀକୁ 'ବହୂ' ବୋଲି ଡାକନ୍ତି । ମା' ଡାକ ଏକ ଆନ୍ତର୍ଜାତିକ ସମ୍ମତ ଶବ୍ଦ । ଏହି ଡାକରେ ଯେଉଁ ଅମୃତ ଭରି ରହିଛି, କୌଣସି ଶବ୍ଦରେ ତାହା ନାହିଁ । ସମଗ୍ର ପୃଥିବୀରେ 'ମା' ଡାକ ସର୍ବାଧିକ । 'ମା' ଭଳି ଏତେ ସୁନ୍ଦର ଶବ୍ଦ ମନୁଷ୍ୟ ଏ ପର୍ଯ୍ୟନ୍ତ ବି ସୃଷ୍ଟି କରି ପାରିନାହିଁ । ପୃଥିବୀର ବିଭିନ୍ନ ଭାଷାରେ 'ମା' ଡାକର ସାମାନ୍ୟ ପରିବର୍ତ୍ତନ ଘଟିଥଲେ ମଧ୍ୟ ମୂଳଶବ୍ଦରୁ ତାହା ବିଚ୍ଛନ୍ନ ହୋଇପାରି ନାହିଁ । ଏହା ଲେଖକଙ୍କ ଉନ୍ନତ ମାନସିକତା ତଥା ବୌଦ୍ଧିକ ରୁଚିବୋଧତାର ନିଦର୍ଶନ ।

ଲେଖକ କେତେଜଣ ସହପାଠୀଙ୍କ ସହିତ କଟକ 'ସତ୍ୟବାଦୀ ପ୍ରେସ' ବୁଲିବାକୁ ଯାଇ ଗୋପବନ୍ଧୁ ଦାସଙ୍କୁ ପ୍ରଥମଥର ପାଇଁ ଦେଖିଥିବା ଅନୁଭୂତି ବର୍ଣ୍ଣନା କରିଛନ୍ତି । ଗୋପବନ୍ଧୁ ନିମ୍ନମୁଖୀ ହୋଇ ଗୋଟିଏ ଘର ଭିତରେ ଟହଲୁ ଥିବା ଏବଂ ଗଭୀର ଚିନ୍ତାମଗ୍ନ ରହିଥିବା ଅନୁଭବ କରିଥିଲେ ।

ଲେଖକ ଦ୍ୱିତୀୟବାର ଗୋପବନ୍ଧୁ ଦାସଙ୍କୁ ମହାତ୍ମା ଗାନ୍ଧି, ମଧୁସୂଦନ ଦାସଙ୍କ ସହିତ କଟକ ମ୍ୟୁନିସିପାଲଟିରେ ଆୟୋଜିତ ଜନସଭାରେ ଦେଖିଥିବା ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ସେତେବେଳେ ମହାତ୍ମାଗାନ୍ଧି ୧୯୨୫ ମସିହାରେ କଟକ ଆସିଥାନ୍ତି । ଉପରଓଳି ସଭା ଆୟୋଜନ ବେଳେ ପ୍ରବଳ ବର୍ଷା ହେଲା । ଲୋକମାନଙ୍କର ଅଧିକ ସମାଗମ ପାଇଁ 'ରାମଚନ୍ଦ୍ର ଭବନ'ରେ ଜନସମାଗମ ସମ୍ଭାଳିବା ସମ୍ଭବ ନହେବାରୁ ମ୍ୟୁନିସିପାଲଟି ପଡ଼ିଆରେ ସଭା ଆୟୋଜନର ବ୍ୟବସ୍ଥା ହୋଇଥିଲା । ଆଶାତୀତ ଜନସମାଗମ, ଠେଲାପେଲା, ପାଟିତୁଣ୍ଡ କୋଳାହଳ ଦେଖି ଗୋପବନ୍ଧୁଙ୍କ ଅଭିମାନ ଓ କ୍ରୋଧଭରା ଉପଦେଶାତ୍ମକ ଗାଳିଶୁଣି ସମବେତ ଜନତା କିପରି ନୀରବ ହୋଇଯାଇଥିଲେ, ସେ ବିଷୟରେ ବର୍ଣ୍ଣନା କରିଛନ୍ତି । ଏହା ଥିଲା ଲେଖକଙ୍କ ଜୀବନର ଏକ ନିଆରା ଅନୁଭୂତି ।

'ଗୋତ୍ର' ପ୍ରବନ୍ଧଟି ସହକାର ୧୪ଭାଗ-୧ମ ସଂଖ୍ୟାରେ ପ୍ରକାଶ ପାଇଥିଲା । ଗୋତ୍ର ପ୍ରବନ୍ଧରେ ଗୋତ୍ର ଶବ୍ଦର ଅର୍ଥ ଋକ୍‌ବେଦରେ ବର୍ଣ୍ଣିତ 'ଗୋତ୍ର' ସିଦ୍ଧାନ୍ତର ବ୍ୟାଖ୍ୟା, ଜ୍ଞାନ, କ୍ଷମତାଶୀଳ ନେତୃତ୍ୱ ପ୍ରଦାନକାରୀ ଆର୍ଯ୍ୟଋଷିମାନଙ୍କ ନାମାନୁସାରେ 'ଗୋତ୍ର' ସୃଷ୍ଟି ଏବଂ ପରିବାର ଓ ବଂଶ ପରମ୍ପରାନୁସାରେ ଗୋତ୍ର ପ୍ରଚଳିତ ବିଷୟ ବର୍ଣ୍ଣିତ । କାଳକ୍ରମେ ଉପରୋକ୍ତ ଗୋତ୍ରପତି ମହର୍ଷିମାନେ ଉଦଉଦଳିଆ ପକ୍ଷୀ, କଇଁଛ, ନାଗସାପ, ଗୋତ୍ରପତି ରୂପେ ପରିଚିତ ହୋଇଯାଇଛନ୍ତି । ଅନୁରୂପ ଭାବରେ ଫକୀରମୋହନ ସେନାପତି ମଧ୍ୟ 'ଗୋତ୍ର' ପ୍ରବନ୍ଧଟି ରଚନା କରିଥିଲେ । ଏହା ମୁକୁର-୨ୟଭାଗ-୧୧/୧୨ଶ(ଫେବୃଆରୀ-ମାର୍ଚ୍ଚ) ୧୯୦୮ରେ ପ୍ରକାଶ ପାଇଥିଲା । ଫକୀରମୋହନ ଉକ୍ତ ପ୍ରବନ୍ଧରେ ମଧ୍ୟ ଉପରୋକ୍ତ ବିଷୟ ଆଲୋଚନା କରିଥିଲେ ।

'ମରୁଭୂମି' ଏକ କ୍ଷୁଦ୍ର ପ୍ରବନ୍ଧ । ବର୍ଣ୍ଣନାଟି ଖୁବ୍ ଚମତ୍କାର । ପୃଥିବୀର ସବୁଜ-ଶ୍ୟାମଳ ଅଞ୍ଚଳ ସହିତ ମରୁଦ୍ୟାନର ପ୍ରକୃତିକୁ ତୁଳନା କରାଯାଇଛି । ଏହା ପ୍ରତ୍ୟେକ କିଶୋର, କିଶୋରୀ ମନକୁ ବହୁଭାବରେ ଆକୃଷ୍ଟ କରିଥାଏ ।

ସମ୍ପାଦକୀୟ 'ସେଦିନ ଓ ଆଜି' ପ୍ରସଙ୍ଗରେ ଓଡ଼ିଆ ପତ୍ର ପତ୍ରିକାର ଅତୀତ ଓ ବର୍ତ୍ତମାନ ବିଷୟରେ ସମ୍ପାଦକ ସୁଚିନ୍ତିତ ମତବ୍ୟକ୍ତ କରିଛନ୍ତି । 'କଳ୍ପଲତା' ପତ୍ରିକାର ଦ୍ୱିତୀୟ ସଂଖ୍ୟା ପ୍ରକାଶ ଅବସରରେ ସାହିତ୍ୟ ପତ୍ରିକାଟିଏ ପ୍ରକାଶ ପାଇଁ ଆର୍ଥିକ ଦୁଃସ୍ଥିତି, ପ୍ରିୟାପ୍ରୀତି ତୋଷଣ, ଉପଯୁକ୍ତ ସଂପାଦନାର ଅଭାବ, ବିନା ଅଧ୍ୟବସାୟରେ ଶସ୍ତା ସାହିତ୍ୟିକ ହେବାର ବାସନା ପୋଷଣ, ତରୁଣ ଲେଖକମାନଙ୍କ ପ୍ରତି ରକ୍ଷଣଶୀଳ ମନୋଭାବ, ସାହିତ୍ୟରେ ଗୋଷ୍ଠୀ ବିବାଦ ଆଦି ବିବିଧ ସମସ୍ୟା କଥା ଉଲ୍ଲେଖ କରିଛନ୍ତି ।

ଚାନ୍ଦବାଲି, ତିହିଡ଼ି ଓ ବାସୁଦେବପୁର ନିର୍ବାଚନ ମଣ୍ଡଳୀର ଲୋକ ପ୍ରତିନିଧି ତଥା ଯୋଗାଣ ଓ ବାଣିଜ୍ୟ ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କୁ ସର୍ବସାଧାରଣଙ୍କ ତରଫରୁ ପାନୀୟଜଳ, ରାସ୍ତାଘାଟ, ସୁଇସ୍‌ଗେଟ୍ ଓ ଲୁଣାବନ୍ଧ, ଜୋରନାଳରେ କାଠପୋଲ ତଥା ପ୍ରାଥମିକ ବିଦ୍ୟାଳୟ ନିମିତ୍ତ ପାଞ୍ଚଦଫା ସମ୍ବଳିତ ଦାବିପତ୍ର, ଦିଆ ଯାଇଥିଲା । ଉକ୍ତ ଆବେଦନ ପତ୍ରର ଲେଖକ ଥିଲେ ସେ ନିଜେ ।

'ଧାମରା(ଚାନ୍ଦବାଲି)ବନ୍ଦର ଉନ୍ନୟନ ସମ୍ମିଳନୀ' ଚାନ୍ଦବାଲିଠାରେ ଅନୁଷ୍ଠିତ ହୋଇଥିଲା । ଅଭ୍ୟର୍ଥନା ସମିତିର ଉପସଭାପତି ଦାୟିତ୍ୱ ବହନକରି ବନ୍ଦର ଉନ୍ନୟନ ସଭ୍ୟବୃନ୍ଦ ତଥା ସମବେତ ଚାନ୍ଦବାଲିବାସୀଙ୍କ ପାଇଁ ସ୍ୱାଗତ ବକ୍ତବ୍ୟ ପ୍ରସ୍ତୁତ କରିଥିଲେ । ଏଥିରେ ସେ ବନ୍ଦର ନାନା ସମସ୍ୟା କଥା ସର୍ବସାଧାରଣରେ ପ୍ରକାଶକରି ବନ୍ଦରର ପୁନର୍ଜୀବନ ଓ ବିକାଶର ନବୀକରଣ ପାଇଁ ଆଠଗୋଟି ବିଷୟପ୍ରତି ସର୍ବସାଧାରଣଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲେ । ଓଡ଼ିଶାର ବୃହତ୍ତର ସ୍ୱାର୍ଥକୁ ଦୃଷ୍ଟିରେ ରଖି ତଥା ଧାମରା(ଚାନ୍ଦବାଲି)ବନ୍ଦର ବାଣିଜ୍ୟକ ଓ ଗମନାଗମନର ବିକାଶପାଇଁ ଏହାଥିଲା ସୁଚିନ୍ତିତ ଓ ଦୂରଦୃଷ୍ଟି ସମ୍ପନ୍ନ ପଦକ୍ଷେପ ।

ପ୍ରଳୟଙ୍କରୀ ବାତ୍ୟାଜନିତ ତାଙ୍କ ଘରର ପ୍ରାୟ ସମସ୍ତ ଚିଠିପତ୍ର, ନଷ୍ଟ ହୋଇ ଯାଇଥିଲା । ସେଥିରୁ ଉଦ୍ଧାର ହୋଇଥିବା ଚିଠିପତ୍ର ମଧ୍ୟରୁ ସମ୍ପାଦକଙ୍କୁ ପତ୍ର, ତାଙ୍କର ପ୍ରିୟବନ୍ଧୁ କମଳାକାନ୍ତ ଦାସ, ସ୍ନେହର ନିମାଇଁ (ସମ୍ଭବତଃ ଡାକ୍ତର ଛାତ୍ର ନିମାଇଁ ମହାନ୍ତି, ପାଞ୍ଚପଡ଼ା ଗ୍ରାମର), ଓଡ଼ିଆ ଭାଷାକୋଷର ସମ୍ପାଦକ, କଟକ 'ସମାଜ'

ଅଫିସର ମୁଖ୍ୟ ପରିଚାଳକ ଶ୍ରୀ ଫକୀର ଚରଣ ଦାସ, ପ୍ରିୟଛାତ୍ର ବିନୋଦ ନାୟକଙ୍କୁ ଆଦି କେତେଖଣ୍ଡ ମାତ୍ର ।

## ଅନୁବାଦ ସାହିତ୍ୟ :

ପଢ଼ିଆରୀବାବୁଙ୍କର ଇଂରାଜୀ, ବଙ୍ଗଳା, ହିନ୍ଦୀ, ସଂସ୍କୃତଭାଷାରେ ଖୁବ୍ ଦକ୍ଷତା ଥିଲା । ଉପରୋକ୍ତ ଭାଷାରେ ରଚିତ ବିଭିନ୍ନ ପୁସ୍ତକ ସବୁ ପାଠ କରୁଥିଲେ । ତାଙ୍କ ମନକୁ ଛୁଇଁବା ବିଷୟକୁ ସେ ଓଡ଼ିଆଭାଷାରେ ଅନୁବାଦ କରୁଥିଲେ । ଫଳରେ ବିଭିନ୍ନ ଭାଷା ସାହିତ୍ୟରେ ରଚିତ ଉପାଦେୟ, ଶିକ୍ଷଣୀୟ ରଚନାଗୁଡ଼ିକ ଓଡ଼ିଆ ପାଠକମାନେ ପଢ଼ିବାର ସୁଯୋଗ ପାଇପାରୁଥିଲେ । ଏହାଦ୍ୱାରା ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧିତ ହେଉଥିଲା ।

ଇଂରାଜୀଭାଷାରେ ପ୍ରଖ୍ୟାତ କବି H.W. Longfellowଙ୍କ 'A Pl‹ଙm of life' କବିତାର ଅନୂଦିତ ଓଡ଼ିଆ ଭାଷାନ୍ତର 'ଜୀବନ-ସଙ୍ଗୀତ' କବିତାଟି ଯାହାର ସଫଳ ଦୃଷ୍ଟାନ୍ତ । ଏହା ତାଙ୍କର ମୌଳିକ ଅନୁବାଦ । ଆକ୍ଷରିକ ଅନୁବାଦ ଅପେକ୍ଷା ସେ ସଦାସର୍ବଦା ମୌଳିକ ଅନୁବାଦକୁ ଗୁରୁତ୍ୱ ଦେଉଥିଲେ, ଫଳରେ ଅନୂଦିତ ଲେଖାଗୁଡ଼ିକ ସ୍ୱକୀୟ ମହତ୍ତ୍ୱରେ ପାଠକ ଅନ୍ତରକୁ ଗଭୀର ରେଖାପାତ କରୁଥିଲା ।

ଇଂରାଜୀ ସାହିତ୍ୟର ଜଣେ ପ୍ରସିଦ୍ଧ ଭ୍ରମଣ୍ଡ ସାହିତ୍ୟକାର ଥିଲେ ଗଲିଭର (Gulliver) । ତାଙ୍କ ରଚିତ ଭ୍ରମଣକାହାଣୀ 'Gulliver Travels' ବିଶ୍ୱ ସାହିତ୍ୟରେ ଖ୍ୟାତିଲାଭ କରିଥିଲା । କିଶୋର କିଶୋରୀମାନଙ୍କ ପାଇଁ ଏହା ଖୁବ୍ ସୁଖପାଠ୍ୟ ଥିଲା । ଲେଖକ ସୁନ୍ଦରଗଡ଼ରେ ଥିବା କାଳରେ ତାଙ୍କ ରଚିତ ଭ୍ରମଣ ପୁସ୍ତକଟିକୁ ସେ ଓଡ଼ିଆରେ ଅନୁବାଦ କରିସାରିଥିଲେ । ଉକ୍ତ ପୁସ୍ତକ ବିଷୟରେ ତା.୦୯.୦୯.୨୯ ମସିହାରେ ଲେଖକୀୟ ଅଭିବ୍ୟକ୍ତି 'ନିବେଦନ'ରେ ଲେଖିଛନ୍ତି:

"Gulliver's Travels" ଶିଶୁ ସଂସାରରେ ଖଣ୍ଡିଏ ବିଖ୍ୟାତ ବହି । ଯେତେ ସହଜରେ ଇଂରେଜୀରେ ଲେଖା ହୋଇଥିଲେ ବି ଏହା ଆମ ଦେଶର ପିଲାମାନଙ୍କର ମନକୁ ପାଏନାହିଁ । କାହିଁକିନା ଏହି ବହିଖଣ୍ଡିକ Gulliverଙ୍କର ଲେଖା । Gulliver ଜଣେ ବିଲାତୀଲୋକ । ବିଲାତର ଚଳିଚଳନ, ବିଲାତର ରୁଚି ନେଇ ସେ ବହି

ଲେଖିଯାଇଛନ୍ତି । ମୁଁ ଯଥାସାଧ୍ୟ ଚେଷ୍ଟାକରି ଆମ ସମାଜର ଚଳିଚଳନ୍, ଆମ ଦେଶ ଲୋକଙ୍କର ରୁଚି ଅନୁଯାୟୀ ବହିଖଣ୍ଡକ ଲେଖିଛି । ସେଥିପାଇଁ ମୋତେ କେତେ ଜାଗାରେ କେତେ କଥା ବାଦ୍ ଦେବାକୁ ପଡ଼ିଛି, କେତେ କଥା ବଦଳେଇବାକୁ ପଡ଼ିଛି । କେତେ ନୂଆକଥା ବି ଯୋଗ କରିବାକୁ ପଡ଼ିଛି । ସାହିତ୍ୟର ଜଟିଳ ପଥରେ ମୁଁ ନୂତନ ପଥିକ । ଏଥିରେ ମୋହର ଦୋଷଥିବ ଅନେକ, ଭ୍ରମ ବି ଥିବ ଯଥେଷ୍ଟ । ଆଶାକରେ ଦୋଷ ମୋର ମାର୍ଜ୍ଜନୀୟ ।

ତା.୦୯.୦୯.୨୯

ସୁନ୍ଦରଗଡ଼ (ଗାଙ୍ଗପୁର ଷ୍ଟେଟ) ଲେଖକ

ଏହା ଲେଖକଙ୍କ ନିଜସ୍ୱ ସିଦ୍ଧାନ୍ତ ଥିଲା । ପୁସ୍ତକଟିକୁ ଆମ ସାହିତ୍ୟରେ ଅଧିକ ପାଠକ ପ୍ରିୟ କରିବା ପାଇଁ ଏଭଳି ମତ ପୋଷଣ କରିଥିଲେ । କିନ୍ତୁ କୌଣସି ଲେଖକଙ୍କର ମୂଳ ରଚନାକୁ ସାମାନ୍ୟ ପରିବର୍ତ୍ତନ କରିବାକୁ ହେଲେ ବା ସଂଯୋଗ କରିବାକୁ ହେଲେ ମୂଳ ଲେଖକଙ୍କର ସମ୍ମତି ଲୋଡ଼ାହେବା ବିଧେୟ ।

ଉକ୍ତ ପୁସ୍ତକଟିର ଏକ ସଫଳ ଅନୁବାଦର ନମୁନା ହେଉଛି - "ସେ ଆଡ଼େ ଖାଲି ନୀଳରଙ୍ଗର ପାଣି । ଦୂରରେ - ଖୁବ୍ ଦୂରରେ ନୀଳ ସରଗରେ ନୀଳଦରିଆ ମିଶିଯାଇଛି, ସତେକି ଦିହିଁଙ୍କି ଦିହେଁ କାନରେ କ'ଣ କୁହାକୁହି ହେଉଛନ୍ତି । ଦେଖିଲେ ମନ ଭାରି ଖୁସିହୁଏ । କିନ୍ତୁ ତା'ର ବିରାଟ ଶରୀର, ଚଳନ୍ତି ଅସୁର ପରି ଲହରୀସବୁ ଦେଖିଲେ, ତାହାର ବିକଟ ହୁଙ୍କାର ଶୁଣିଲେ ଦେହ ଥରିଯାଏ । ଜାହାଜକୁ ଡରନାହିଁ, ଭୟନାହିଁ, ସେ ତୀର ପରି ଛୁଟି ଚାଲିଥାଏ । ଲହରୀ ଉପରେ ଲହରିସବୁ ଗର୍ଜି ଗର୍ଜି ଆସୁଥାନ୍ତି - ସତେକି ଜାହାଜକୁ ଗିଳିଦେବ । ମାତ୍ର ଜାହାଜକୁ ଗିଳିବେ କ'ଣ ? ଆସିଲାକ୍ଷଣ ଜାହାଜ ସେ ସବୁକୁ ଭାଙ୍ଗିଚୁରି ତାଙ୍କ ଉପରେ ଚଢ଼ିଯାଉଥାଏ । ଉପରେ ଆକାଶ, ତଳେ ଦରିଆ, ମଝିରେ ଆମ ଜାହାଜ । ଯା'ଛଡ଼ା ଆଉ କିଛି ଦେଖାଯାଉ ନଥାଏ । ବେଳେବେଳେ ଗୋଟାଏ ଗୋଟାଏ ପକ୍ଷୀ ଉଡ଼ିଉଡ଼ି ଆସି ପାଣିରେ ବସିପଡୁଥାନ୍ତି ।"

ଛୋଟଛୋଟ ବାକ୍ୟ । ସହଜ ସରଳ ଭାଷାବିନ୍ୟାସ, କାହାଣୀଧର୍ମୀ ବର୍ଣ୍ଣନା କିଶୋର କିଶୋରୀଙ୍କ ହୃଦୟକୁ ବେଶ୍ ସ୍ପର୍ଶ କରିଥାଏ । ପାଣ୍ଡୁଲିପିଟି ଅପ୍ରକାଶିତ ଅବସ୍ଥାରେ ରହିଯାଇଛି । ବର୍ଷା ବନ୍ୟା କବଳରୁ ଉଦ୍ଧାର ହୋଇଥିବା ପାଣ୍ଡୁଲିପିଟି ପ୍ରାୟ ନଷ୍ଟଭ୍ରଷ୍ଟ ହୋଇଯାଇଛି । ବହୁପୃଷ୍ଠା ନାହିଁ । ଯାହାବି ଅଛି ଲେଖାସବୁ ଅସ୍ପଷ୍ଟ ହୋଇଯାଇଛି । ପୂର୍ଣ୍ଣାଙ୍ଗ ଭାବରେ ଉଦ୍ଧାର କରିବା ଖୁବ୍ କଷ୍ଟସାଧ ।

ବଙ୍ଗଳା ଭାଷା ସାହିତ୍ୟରେ ତାଙ୍କର ଗଭୀର ଦଖଲ ଥିଲା । ବିବେକାନନ୍ଦ, ରାମକୃଷ୍ଣ, ରବୀନ୍ଦ୍ରନାଥ, ବଙ୍କିମ୍‌ଚନ୍ଦ୍ର, ଶରତଚନ୍ଦ୍ର, ତାରାଶଙ୍କର, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ରଚନା ପ୍ରତି ସେ ବହୁଭାବରେ ଆକୃଷ୍ଟ ହୋଇଥିଲେ । ରବୀନ୍ଦ୍ରନାଥଙ୍କ 'ଅଭିସାର', 'ଉର୍ବଶୀ' ଓ 'ଦେବତାର ଗ୍ରାସ' କବିତାକୁ ସେ ଓଡ଼ିଆରେ ଅନୁବାଦ କରିଥିଲେ । ଶରତଚନ୍ଦ୍ରଙ୍କ 'ଦତ୍ତା' ଉପନ୍ୟାସଟିକୁ ମଧ ସମ୍ପୂର୍ଣ୍ଣ ଅନୁବାଦ କରିଥିଲେ । ବିଶେଷକରି ରବୀନ୍ଦ୍ରନାଥ ଓ ଶରତଚନ୍ଦ୍ରଙ୍କ ସାହିତ୍ୟ ଦ୍ୱାରା ସେ ବହୁ ଭାବରେ ପ୍ରଭାବିତ ହୋଇଥିଲେ । ପାଣିଖିଆ ଅସ୍ପଷ୍ଟ ହୋଇଯାଇଥିବା ଉକ୍ତ ପାଣ୍ଡୁଲିପିକୁ ଉଦ୍ଧାର କରିବା ଅସମ୍ଭବ ଥିଲା । 'ହରିନାମ' କବିତାଟି ହିନ୍ଦୀ କବିତାରୁ ଅନୂଦିତ୍ ।



# ପଲ୍ଲୀବଧୂର ପତ୍ର

ପ୍ରିୟତମ ତୁମେ ଏଡ଼େ କପଟି ଗୋ ! ଜାଣି ତ ନ ଥିଲି ମୁହିଁ
ଜାଣି ତ ନ ଥିଲି ଅନୁଗତ ଜନେ ଛଳିବ କପଟ କରି,
କାହିଁକି ପୁଣି ଏ କପଟ ଛଳନା ଦାସୀ ପରିଜନଠାରେ ?
ଭାବି ଭାବି ମୁଁ ଗୋ ନୀରବ ରାତିରେ ମରମରେ ଯାଏଁ ମରି ।
ଅଛି ନା ମନରେ ? – ଗଲାଦିନ ତୁମେ ବୁକୁ ପରେ ଭିଡ଼ି ମତେ
ଆସନ୍ତା ଆଷାଢ଼ ଆସିବ ବୋଲିକି ଦେଇଯାଇଥିଲ ଆଶା,
କହି ଯାଇଥିଲ କେତେକରି ମୋର ଦେହ ଛୁଇଁ ପରା ଆଗୋ
ସବୁ ସମାଚାର ଲେଖି ପଠାଇବ ପ୍ରତି ସାତ ଦିନେ ଭାଷା ?
କେତେ ଯେ ଆଷାଢ଼ କେତେ ସାତଦିନ ଗଲାଣି ମୋ ଆଗେ ବିତି,
କେତେଥର କେତେ ପରବାସୁ ଆସି ଫେରିଗଲେଣି ପରବାସେ,
ଆସିବ, ସେ କଥା ଦୂରେ ଥାଉ ପଛେ, ଲେଖା ପଦକ ବି ନାହିଁ,
ସତେ କ'ଣ ମୋତେ ଭୁଲିଗଲ ଆଗୋ ? ମରଣ ବି ନାହିଁ ଆସେ ।
ଆସଇ ଆଷାଢ଼, ଗରଜଇ ମେଘ, ଚମକେ ବିଜୁଳି ମେଘେ,
ଘର ପଛଆଡ଼େ ନୀପ ଡାଳେ ଡାଳେ ବସଇ ଫୁଲର ହାଟ,
ମେଘ ଗରଜନେ ଲାଗଇ ଚମକ, ଥର ଥର କରେ ଛାତି,
ବଡ଼ ଯେ ଏକାକୀ ଲାଗେ ସଖା ମୋତେ ଘରେ ଯାମିନୀଟା ଯାକ ।
ଆଷାଢ଼ ପଛକୁ ଆସେ ଶିରାବଣ ସବୁ ମେଘ ଯାକ ଧରି,
ମଥାନ ଉପରେ କଖାରୁ ଗଛରେ ଅସରନ୍ତି – ଧାରା ଝରେ,
ଘାରି ହୁଏ ହିଆ, ମନ ହୁଏ ଖାଲି ଆଅନ୍ତ କି ତୁମେ ଆଜି,
କେ ଜାଣେ କାହିଁକି ରାତିଯାକ ଖାଲି ଆଖି ଝରଝର କରେ ।
ବରଷା ରାତିରେ କିପରି ଗୋ ତୁମେ ଏକାକୀ ଶେଯରେ ଶୁଅ ?
ଦୂର ବିଦେଶରେ ନିଛାଟିଆ ଘରେ କିପରି କଟାଅ ଦିନ ?

ଭଲରେ ମନ୍ଦରେ ଦିନେ ହେଲେ ମୋର କଥା ପଡ଼େନାହିଁ ମନେ ?
ହୀନ କପାଳୀ ମୁଁ ଜନମ-ଦୁଃଖିନୀ, କରମ ମୋହରି ହୀନ ।
ଶିରାବଣ ଗଲେ ଆସଇ ଭୋଦୁଅ ଓଷା ବାର ବ୍ରତ ଧରି,
ଘରେ ଘରେ ହୁଏ କେତେ ଭୋଗରାଗ ଦେବ ଦେବୀ ଆରାଧନ,
ଏ ଦିନରେ ତୁମେ ଥାଆନ୍ତ କି ଘରେ, କରି କେତେ ପିଠାପଣା
ପାଖରେ ବସି ମୁଁ ଖୁଆନ୍ତି ତୁମକୁ, ହୁଏ ମୋର ଭାରି ମନ ।
ଅଶିଣ ମାସରେ ସବୁ ଝଲମଲ, ସରଗ କେମନ୍ତ ଦିଶେ,
ସଞ୍ଜ ନ ହେଉଣୁ ରାଣୀଫୁଲ ପରି ପଡ଼ଇ କୁଆଁରୀ ଜହ୍ନ,
ବାଡ଼ମାନଙ୍କରେ କେଡ଼େ ସରାଗରେ କେତେ ଜାତିଫୁଲ ଫୁଟେ,
ଟେଁ'ଟେଇ' ଡାକେ ଗାଁ - ତଳ ବିଲେ, ଛନ ଛନ ହୁଏ ମନ ।
ବଡ଼ି ସକାଳରୁ ଗାଧୋଇ ଯାଏ ମୁଁ ଠାକୁର-ପୋଖରୀ ଘାଟେ,
ଉଛୁଳୁ ମୁଛୁଳୁ ହେଉଥାଏ ତହିଁ କାଚଧାର ପରି ପାଣି,
ପୋଖରୀ ଭିତରେ ଫୁଟି ଯାଇଥାଏ ଭଳି ଭଳି କଇଁଫୁଲ
'ଭଦଭଦଳିଆ' ଡାକୁଥାଏ ତେଣେ "ଆସ ଗୋ ଶରତ ରାଣୀ" ।
ନିତି ଦେଖେ ତହିଁ 'ଚକୁଆ ଚକୋଇ' ଦୁଇଟି ପରାଣୀ ମେଳେ
କଇଁଫୁଲ ତଳେ ଲାଗିଥାଏ ତାଙ୍କ କେତେ ସୁଖ ଭୁଞ୍ଜା ଭୁଞ୍ଜି,
କେତେ ସୋହାଗରେ କେତେ ଆଦରରେ ଥରଥର କରି ଆସି
ମରାଳ ଥଣ୍ଟରେ ମରାଳୀଟା ଖାଲି ଦେଉଥାଏ ଥଣ୍ଟ ଗୁଞ୍ଜି ।
ଶରତ ସରିଲେ ଆସଇ ହେମନ୍ତ କାକର-ବରଷା ଧରି,
ଗହୀର ବିଲରେ ଧାନଗଛ ସବୁ ମଥା ନଇଁନଇଁ ଝୁଲେ,
କାକର-ବତୁରା ପବନେ ଆସଇ ପାକଲା ଧାନର ବାସ,
ନଦୀକୂଳ ଦିଶେ ବଡ଼ ଶୋଭାବନ ସୋରିଷର ସୁନାଫୁଲେ ।
ମଗୁଶିର ମାସେ ପ୍ରଥମାଷ୍ଟମୀ, ନୂଆଲୁଗା ପିନ୍ଧାପିନ୍ଧି
ଏ ଶୁଭଦିନରେ ତୁମକୁ ନ ଦେଖି ମା'ଙ୍କର ଲୁହ ଝରେ ।
କେଉଁ ପରବାସେ କେତେ ଦୂରେ ଯାଇ ପଡ଼ିଛ ଏକାକୀ ବୋଲି
ତୁମ ଲାଗି ତାଙ୍କ ଜୀବନ ଝୁରଇ, ଆଖି ଛଳ ଛଳ କରେ ।

ବିବରତା କରି ସରଗ଼ ଶଶିର ଆସଇ କାକର ପରେ,
କି ଜାଣେ କି ଦୁଃଖେ ମଉଳିଯାଏ ଗୋ ବସୁମାତାଙ୍କର ମୁଖ,
ବେଳ ବୁଡ଼ ବେଳେ ବଡ଼ ଉଦାସିଆ ଲାଗୁଥାଇ ମୋତେ ଖାଲି,
ଲାଗଇ ସତେକି ସରିଲାଣି ମୋର ଜୀବନର ଯେତେ ସୁଖ ।
ଉତ୍ତରା ପବନ ମେଳେ ଘୋଟି ଆସେ କୁହୁଡ଼ି ସୁଦୂର ଦିଗୁ,
ବେଳ ଥାଉ ଥାଉ ମାଡ଼ିଆସେ ଦୂରୁ ସନ୍ଧ୍ୟା ଉଦାସୀ ଛାୟା,
କେଜାଣେ କି କଥା ଉଦାସିନୀ ଧରା ଭାଳେ ନିଶବଦେ ବସି ?
ଚଉଦିଗେ ଖେଳେ ଚିର ନିଶବଦ ସପନ ପୁରୀର ମାୟା ।
ଗଭୀର ରାତିରେ ଥର ଥର ଶୁଭେ ବିଲୁଆ-ବିକଳ-ଡାକ,
ଘୁମ ଘୋରେ ମୁଁ ଗୋ ସପନେ ତୁମକୁ ଦେଖଇଁ ସୁପତି ତଳେ,
ସପନ ଭାଙ୍ଗିଲେ ଦେଖେଁ ମତେ ମୁହିଁ ଏକାକିନୀ ଅନାଥିନୀ,
ଶେଯ ମୋ ଭିଜଇ, ବସନ ଭିଜଇ ବିକଳ ନୟନ ଜଳେ ।
ଶିଶିର ସରିଲେ ଆସଇ ସଖୀ ଗୋ ମଧୁର ମଳୟ କାଳ,
ଗଛଲତା ମେଳେ ପଡ଼ିଯାଏ ହୁଡ଼ି ନୂଆ ସଜବାଜ ପାଇଁ,
ଗଛରେ ଲତାରେ ମେଲଇ ସଲାଜେ କୁସୁମ ନୟନ ପତା,
ପ୍ରଜାପତି ବୁଲେ ଡେଣା ମେଲି ଦେଇ ଫୁଲେ ଫୁଲେ ଧାଇଁ ଧାଇଁ ।
ମୁକୁଳ ମହକ, ବକୁଳର ବାସ, କୋକିଳର ଡକା ଡକି,
ଗଛ ଡାଳେ ଡାଳେ ନବ ପଲ୍ଲବର ମନଭୁଲା ଚାରୁ ଛବି,
ଫୁଲବାସ ଭରା ଚପଳ ମଳୟ, ରୂପେଲି ପୁନେଇ ରାତି
କେତେ ଯେ ଯାତନା ଆଣଇ ପରାଣେ ଜାଣେ ସେ ଯେ ଅନୁଭବୀ ?
ଫୁଲବିନୋଦିଆ ଫଗୁଣ ମାସରେ ଦୋଳ ଉତ୍ସବ ଆସେ,
ତରୁଣ ତରୁଣୀ ମେଳେ ଲାଗିଯାଏ ଫଗୁଖେଳ ଘରେ ଘରେ,
ଦୂରଦେଶରେ ଗୋ, କା ଘେନି ମୋ ଫଗୁଖେଳ ?
ଫଗୁ ଜର ଜର ସଜନୀ ମେଳରେ ତୁମେ ତ କରୁଣ ଅଶ୍ରୁ ଅଥୟ କରେ ।
ବଇଶାଖ ମାସ ତପତ ଖରାରେ ତାତିଯାଏ ବସୁନ୍ଧରା,
ଝିଲିମିଲି ଦିଶେ ଦୂର ଦିଗ ଭାଗ ମରୀଚିକା ଛାୟା ତଳେ,

କେଉଁ ରାଇଜର ଅଜଣା, ପଥରେ ପଥ ଚାଲୁଥିବ ତୁମେ,
ତୁମ ଭାବନାରେ ଖରା ବେଳଯାକ ମନ ଦକ ଦକ କରେ ।
ବଇଶାଖ ଶେଷ ନିତି ନିତି ସଞ୍ଜେ ଗରଜେ ଧୂମାଳ ବାଆ,
ଗରଜେ ସରଗେ କଳା ମେଘମାଳା ଦୂର ରାଇଜରୁ ଆସି,
ଚାତକିନୀ ଡାକେ ବଡ଼ ବିକଳରେ, ଶୋଷରେ ଫାଟଇ ଛାତି,
ମନସାଥୀ ସେ ମୋ, ବିକଳ ତାହାର ଆସଇ ସୁଦୂରୁ ଭାସି ।
ଷଡ଼ ଋତୁ ଘେନି ବାର ମାସ ମେଳେ ବରଷ ଯାଉଛି ଗଡ଼ି
ଅଭାଗୀର ଏଇ ବ୍ୟଥିତ ବୁକୁରେ ଅରପି ଗଭୀର ବ୍ୟଥା,
କି ମେଘେ ମଳୟେ ତୁମ ପାଇଁ ଖାଲି ଘାରି ହେଉଥାଇ ମନ,
କି ଶୀତେ ଶରଦେ ସବୁବେଳେ ଖାଲି ମନେ ପଡ଼େ ତୁମ କଥା ।
ସତେକି ମୋ କଥା ମନରୁ ମୁରୁଛି ଦେଲ ଚିରଦିନ ଲାଗି ?
କି ଅପରାଧରେ ଅପରାଧିନୀ ମୁଁ ଜାଣିତ ପାରିଲି ନାହିଁ ?
ଅନୁଗତ ଜନ ଆଚରଇ ଯଦି ଦୋଷ ଅଜାଣତେ ବାରେ
ତାହା ପାଇଁ କି ଗୋ ହୃଦୟରେ ତବ କ୍ଷମା ବିହିବାକୁ ନାହିଁ ?
ଅପରାଧିନୀ ମୁଁ, ଅବହେଳିତା ମୁଁ, ଭୁଲିଗଲ ଅବା ମୋତେ,
କି କଥା କଲେକି 'ଉମା ହରି' ତୁମ ଭାଇ ଭଉଣୀଟି ମାନେ
ନିଦାରୁଣ ହୋଇ ଭୁଲିଗଲ ତାଙ୍କୁ ସାତ ପର କଲା ପରି ?
ବରଷକେ ହେଲେ ଥରେ ତାଙ୍କ କଥା ପଡ଼େ ନାହିଁ ତୁମ ମନେ ?
ଉମା ପଚାରଇ, "ନୂଆବୋଉ ଆଗୋ, ଭାଇ ତ ଆସିଲେ ନାହିଁ ?"
ହରିଟି ପଚାରେ ନିତି ନିତି ମୋତେ 'କାହିଁକି ଆସୁନି' ଭାଇ ?"
ଲୋତକ ଉଛୁଳେ ନୟନରୁ ମୋର, ମୁହଁ ପଛକରି ପୋଛେଁ,
କି କହି ବୋଧିବି ଅବୋଧ ଶିଶୁରେ ଭାବି ମୁଁ ପାରଇ ନାହିଁ ।
କାଶଫୁଲ ହସେ ମଧୁର ଶରତେ ତୁମ ଗାଁ ଚାରିପାଖ,
କଇଁ କୋକନଦ ଶେଫାଳୀ ଶିଉଳି ନାନା ଜାତି ଫୁଲଫୁଟେ,
ଫଗୁଣେ ମୁକୁଳ ଆକୁଳେ ମୁକୁଳି ସହକାରେ ଉଠେ ପୂରି,
ଫୁଲବାସ ଧରି ଅଥୟ ମଳୟ ଗାଁ ଗୋହିରୀରେ ଛୁଟେ ।

ଅଗଣରେ ନାଲି ସୁନେଲି ବଉଦ ସରଗେ ରଚଇ ଛବି,
ଗଛ ଶିଖେ ଶିଖେ ସୁନାଝରି ଖରା ବେଳ ବୁଡ଼େ ଝକ ଝକେ,
ରକତ ଗୁଲାଲ ଦିଶଇ ଚଇତେ ପଲାଶ କାନନ ଦୂରୁ
ସଜ ସକାଳରୁ ତାହାରି ଭିତରେ କୋଇଲି ଆକୁଳେ ଡାକେ ।
ପଲ୍ଲୀପୁରରେ କେତେ ଗଛ ଲତା - ବକୁଳ, ତମାଳ, ତାଳ,
ଡେଙ୍ଗା ନାରୀକେଳ, ବୁଢ଼ା ବରଗଛ ଚଳଦଳ ତରୁ ତୁଲେ,
କେତେ ଜାତି ପକ୍ଷୀ-କଳକାକଳିରେ ଉଛୁଳି ପଡ଼ଇ ଦିଗ,
ଗଛ ଲତା ଦିଶେ ମନ ଭୁଲାଣିଆ ଫୁଟା ଦର ଫୁଟା ଫୁଲେ ।
ପାଶୋରି ଏ ଋରୁ ପଲ୍ଲୀପୁରର ଏ ମଧୁ ମଦିରମାୟା,
ବାରମାସ ମେଳେ ଷଡ଼ଋତୁଙ୍କର ମୋହନ ମଦିର ଛବି,
କିପରି ଗୋ ତୁମେ ଧୂଆଁ ଧୂଳିଭରା ନଗରର କୋଳାହଳେ
ଅଚିହ୍ନା ଲୋକଙ୍କ ମେଳେ ଦେହ ଧରି ରହିଅଛ ତୁମେ ପଡ଼ି ?
ଏଇ ପୁରେ ତବ ଜନମ ପରା ଗୋ ? ଏହାର ବୁକୁରେ ତୁମେ
ପାଦ ରଖି ରଖି ଶିଖିଥିଲ ଋଲି ପହିଲିକି ପିଲାବେଳେ,
ଏହାରି ଧୂଳିରେ ଏହାରି କୋଳରେ କେତେ ଧୂଳି ଘର କରି
ଦୂର ଶଇଶବେ କେତେ ଖେଳିଥିଲ ସାଙ୍ଗସାଥିଙ୍କର ମେଳେ ।
ପଲ୍ଲୀ ଯେ ତବ ଜନନୀ ଗୋ ସଖା ସରଗରୁ ଗରିୟସୀ,
ଶରୀର ତୁମର ବଢ଼ିଛି ଏହାରି ସୁନ୍ଦର ଫଳ ଜଳେ,
ଜନକ, ଜନନୀ, ଭାଇ ଓ ଭଉଣୀ ତୁମରି ଆଦର କରି -
ରଖିଛ ଯତନେ ଆବୋରି ତାହାର ଶ୍ୟାମ ଅଞ୍ଚଳ ତଳେ ।
ଧୂଳିକଣା ଯାର କନକ କଣିକା କିପରି ଭୁଲିଲ ତାକୁ ?
ପାଶୋରିଲ ଅବା କିପରି ଗୋ ତୁମେ ଏଡ଼େ ଉପକାରୀ ଜନେ ?
ଶରତରେ ଯାର ମନଭୁଲା ଠାଣି, ମଳୟେ ମୋହନ ଛବି
ଦୂର ବିଦେଶରେ ରହିଲ ବୋଲି କି ପଡ଼େ ନାହିଁ ତୁମ ମନେ ?
ତୁମରି ପାଇଁ ଗୋ ପ୍ରିୟତମ ମୋର ପରାଣ ଯାଉଛି ପୋଡ଼ି,
ବୁକୁର ରକତ ଲୁହ ହୋଇ ଝରି ପଡ଼ଇ ନୟନ ପଥେ,

ଝରି ଦିନରାତି, ଋହିଁ ତୁମ ପଥ ସୁନା ଦେହ ହେଲା ଚୂନା
ଜୀବନର ଯେତେ ସୁଖର ସପନ ଲିଭିଲା ମରମ ଗତେ ।
ତୁମରି ଜନଟି ତୁମରି ସଖୀଟି ହେବ ଏତେ ସରି ସଖା
ଭଲ ହେବକି ଗୋ ତୁମକୁ ଏ କଥା ? କି ବୋଲି ବୋଲିବେ ଜନେ ?
ତୁମ ଭାବନାରେ ସରିଯିବ ଜଣେ ଭଲ କି ଦିଶିବ ଏହା ?
ଆସିବ ଗୋ ସଖା, ଆସିବ ମୋ ରାଣ, ନ ବିଋରି କିଛି ମନେ ।
'ତୁମେ ସଖା ଦିନେ ଆସିବ' ଆଶାରେ ରହିଛି ଜୀବନ ଧରି,
ଆତୁରା ଋତକୀ ସାଗର ସେପାରି ବାଦଲେ ରହିଛି ଋହିଁ,
ଆସିବନି ସଖା ? ପିଆସାରେ ଯେ ଗୋ ଫାଟିଯିବ ମୋର ବୁକୁ,
ସେ ଆଶା ଲିଭିଲେ ମୋ ଜୀବନ ଦୀପ ଲିଭିଯିବ ତୁମପାଇଁ ?

*(ପଲ୍ଲୀମଙ୍ଗଳ /୧୦ମଭାଗ / ୬ଷ୍ଠ ସଂ / ଜ୍ୟେଷ୍ଠ-୧୩୪୦/ଜୁନ୍-୧୯୩୩)*

# ମେଘ

କଳାମେଘରେ କଳାମେଘ ତୋ କେଉଁ ରାଇଜେ ଘର ?
କେଉଁ ପାହାଡ଼ ଶିଖରେ ମେଘ କରୁ ତୁ ବସବାସ ?
କାଳନିଦାଘ ଅତ୍ୟାଚର ପ୍ରବଳ ହେଲା ଦେଖି,
ଧାଇଁ ଆସୁ ତୁ ଦର୍ପଭରେ ହେଲେ ଆଷାଢ଼ ମାସ ।

କେତେ ଯେ ତୋର ସୈନ୍ୟସେନା ଗଣନା କରି ନୋହେ,
ଦଳକୁ ଦଳ ଆସନ୍ତି ମାଡ଼ି, ସରଗ ଥରହର,
ବାଦ୍ୟ ବାଜେ, ନିଶାଣ ଉଡ଼େ, ବହଇ ପ୍ରଭଞ୍ଜନ,
କଳାଘୁମର ଠାଣି ତୋହର ଦେଖିଲେ ମାଡ଼େ ଡର ।

ଅଭୟବାଣୀ ଶୁଣାଉ ଜନେ ବ୍ରଜନାଦ କରି,
ଧାରା ବରଷା-ତୀର ବରଷି ନିଦାଘ କରୁ ନାଶ,
ନଈ ପୋଖରୀ ଉଚ୍ଛୁଳେ ପୁଣି ଦୁନିଆ କରେ ଆହା,
ସବୁଜ ଘାସ ବସନ ପିନ୍ଧି ଧରଣୀ ହସହସ ।

ଗୁଳ୍ମଲତା ନିଦାଘ ତାପେ କୁଆଡ଼େ ଥିଲେ ଲୁଚି,
ତୋହରି ସ୍ନେହ ସିଞ୍ଚନରେ ଭୂଇଁରୁ କାଢ଼ି ମଥା,
ସବୁଜ ଶିରୀ ଧାରଣକରି ଲଗାଇ ଦେଇ ଭିଡ଼,
ମନଖୁସିରେ ହୁଅନ୍ତି ବସି ଏଣୁ ତେଣୁକା କଥା ।

ଶୂନ୍ୟ ଭୂମି ପୂର୍ଣ୍ଣ ହୁଏ ସବୁଜ ଧାନ ଗଛେ,
ନୁଖୁରାମାଟି ବଦଳିଯାଏ, ଚହଟ ରୂପ ଧରେ,

କୃଷକଭାଇ ମନଫୁଲଣା ରାଗିଣୀ ଦିଏ ଛାଡ଼ି,
ଗାଈ ବାଛୁରୀ ଥାକୁଲ ଥୁକୁଲ ଘାସରେ ପେଟ ଭରେ ।

ବଗବଗୁଲୀ ସୁଖସରାଗ କହିଲେ ନ ସରଇ,
ଡାହୁକ ମହାଉଲ୍ଲାସରେ କରଇ କଳରୋଳ,
ବେଙ୍ଗୁଲୀ ନାନୀ ହୁଲହୁଲିରେ ଉଛୁଳିପଡ଼େ ମହୀ,
ବତାସିଆର ବିରାମ ନାହିଁ, ଆନନ୍ଦରେ ସେ ଭୋଳ ।

କଳାମେଘରେ କଳାମେଘ ତୁ କେଡ଼େ ମଉଜ ଜାଣୁ,
ଦିଗ ଆବୋରି ଅନ୍ଧାର କରି ବରଷୁ ଝରଝର,
ପିଢ଼ା ଉପରେ କଖାରୁ ଗଛ ଟୁପୁରଟାପୁର କରେ,
ରାତିରେ ଶୋଇ ଶୁଣିଲେ ମୋତେ ଲାଗଇ ଭାରି ଡର ।

ତୋହରି ଲାଗି ଫୁଟିଲାଣିରେ କିଆ କେତକୀ କେତେ,
ହରଗଉରା, କଇଁ, ଟଗର ଫୁଟଇ କୋଟି କୋଟି,
ଶୋଭାର ହାଟ ବସିଗଲାଣି କଦମ୍ବର ଡାଳେ,
କାମିନୀ ଫୁଟି ମୁଠାମୁଠାକି ଭୂଇଁରେ ଯାଏ ଲୋଟି ।

ଥରେ ଥରେ ତୁ ବାଇଆ ହୋଇ ଘୋର ବରଷା ଢାଳୁ,
ସବୁ କଥା ତୋ ଭଲରେ ମେଘ ଏଇ କଥାଟି ଛାଡ଼ି,
ପ୍ରବଳବାରି ନ ପାରି ଧରି ତଟିନୀ ଅସମ୍ଭାଳ,
ବୁଡ଼ାଇ ବିଲ ଭସାଇ ଗ୍ରାମ ବନ୍ୟା ଆସେ ମାଡ଼ି ।

ବନ୍ୟା ଆସେ ମାଡ଼ିରେ ମେଘ ଭସାଇ ନିଏ କ୍ଷେତ,
ଗାଁକୁ ଗାଁ ଉଜୁଡ଼ିଯାଏ ରାଇଜ ହୁଏ ଚୂନା,
ଛି ଛି ତୁ ଏପରି ଆଉ କରିବୁ ନାହିଁ କେବେ,
ଦେଖି ରହିଁକି ପାଳିବୁ ମେଘ ରାଇଜ ହେବା ସୁନା ।

*('ବିଶ୍ୱଶିଶୁ' / ୧ମବର୍ଷ / ତୃତୀୟ ସଂଖ୍ୟା / ୧୯୭୧)*

# ପ୍ରଣୟୀ

କିଏ ତୁମେ ସୁନ୍ଦରୀ ସରଗର ତାରା ଗୋ
ଚିତ୍ତଚୋରା ସୁନ୍ଦର ବରଣୀ
କିଏ ତୁମେ କିଶୋରୀ ଗୋ ଚଳିଯାଅ ଶୋଭାଇ
ରଙ୍ଗା ରକତ ଫୁଲେ ସରଣୀ ?୧।

ଲଜ୍ଜାବତୀ ଗୋ ତୁମେ କାହିଁ ପାଇଁ ଉଡ଼ାଅ
ମନ୍ଦ ସମୀରେ ଚାରୁ ଚିକୁର
କାହିଁପାଇଁ ସେ ଅଧରେ ଖେଳାଅ ଗୋ ପାଷାଣୀ
ବିକଶିତ ବନ୍ଧୁଲିର ମଧୁର ?୨।

ଝିନବାସ ତଳେ ତୁମେ କାହିଁ ପାଇଁ ମେଲ ଗୋ
କୁଞ୍ଚିତ ଘନ କଳା କବରୀ
କାହିଁକି ଗୋ ଚାଲ ତୁମେ ଚଞ୍ଚଳ ଚରଣେ
ରୁଣୁଝୁଣୁ ତାନେ ଦିଗ ମୁଖରି ?୩।

ବିକଶିତ ଆଗେ ତୁମେ କାହିଁ ପାଇଁ ନିଜନେ
ଉଭାହୁଅ ଚଇତାଳ ପବନେ ?
ଗୋଲାପୀ ବସନ ତବ ଆକୁଳି ଉଠଇ ଗୋ
ବଡ଼ବ୍ୟଥା ଲାଗେ ଏ ମୋ ମରମେ।୪।

ମରମେ ଶିହରି ଯେବେ ଚାଲିଯାଅ ଅଥଯେ
କାହିଁକି ସେ ଅଞ୍ଜନ ନୟନେ
ଫେରି ଫେରି ଥରେ ଥରେ ଚାହିଁ ଯାଅ ସରମେ
ହାଣି ବାଣ ଏ ବିଧୁର ପରାଣେ ?୫।

× × × ×

ଛଳୟସୀ ମରୀଚିକା ଛଳିନିଏ ପଥିକେ
ଜଳ ଦେବ ବୋଲି ଦେଇ ଭରସା
ନେଇ ନେଇ ଦୂର ପଥେ ଦୂର ମରୁପୁରରେ
ଛାଡ଼ିଯାଏ କରି ଶେଷେ ନିଆଶା ।୬।

ଚତୁରୀ ତୁମେ ଗୋ ସହି ଧରିଲଣି ଆଜିଠୁ
କହି ମୁଁ ଗୋ ପ୍ରାଣ ଧରେଁ କେସନେ
ଆଶାଦେଇ ଶେଷେ ମୋତେ ଛଳି ଦେଲେ ଏପରି
ଆଖିପାଣି ସାର ହେବ ଜୀବନେ ।୭।

ଏତେ କଥା ଥିଲା ଯଦି ତୁମ ମନ-ବରଜେ
କାହିଁକି କହିଲ ଆଖି କ'ଣରେ ?
ଆସ ଆସ ନାଗରୀ ଗୋ ତୁମ ପାଇଁ ମୋହର
ସାରା ନିଶି ବିତିଯାଏ ଜାଗରେ ।୮।

× × × ×

ଭଲ ନାହିଁ ଲାଗେ ଯଦି ତେବେ କିଆଁ କହ ଗୋ
ଆଡ଼ ନୟନରେ ଫେରି ଅନାଅ
କାହିଁକି ଗୋ ହସି ଥରେ ସରମରେ ଚମକି
ସାରା ଶରୀ ବାସ ତଳେ ଲୁଚାଅ ?୯।

ଆଜିଠାରୁ ତୁମ ପାଦେ କରୁଛି ଗୋ ମିନତି
ନ ଚାହିଁବ ମୋତେ ଆଉ ନୟନେ
ସେ ବନ୍ଧୁଲି ଓଠ ଧାରେ ନହସିବ କେବେ ଗୋ
ନ ଥରିବ ମୋତେ ଦେଖି ସରମେ ।୧୦।

ଦିନେ ହେଲେ ଆଉ କେବେ ସେ ଚରଣ କମଳେ
ନ ଲେଖିବ ଅଳତାର ଗାର ଗୋ
ସାନ୍ଦ୍ର ବାଦଲ ରାତେ ଆଉ କେବେ ସଜନୀ
ନ ଘେନିବ ଯୂଥିକାର ହାର ଗୋ ।୧୧।

ଆଉକେବେ ସେ ଯୁଗଳ ଭୂଲତାର ଭିତରେ
ନ ଘେନିବ କଜଳର ତିଳକ
ଜଗିରହ ଯେପରି ଗୋ ନ ଉଡ଼ିବ କେବେ ବି
ମନ୍ଦ ସମୀରେ ତୁମ ଅଳକ ।୧୨।

ଆଉଦିନେ ନ ମେଲିବ ତୁମ ଘନ କବରୀ
ମତୁଆଲା ଚଇତାଳ ପବନେ
ଯଉବନ-ଉଚ୍ଛୁଳା ସେ ଶରୀ ଆବରିବନି
ଗୋଲାପୀ ବରଣ ଝୀନ ବସନେ ।୧୩।



## ଚାତକ

କାହା ଅଭିଶାପେ ତୁରେ ସରଗ ଦେବତା
ଆସିଛୁ ସରଗ ଛାଡ଼ି ଏ ମର ଭୁବନେ,
ଆଉ କେତେଦିନେ ତୋର ଦୁଃଖର ରଜନୀ
ପାହିଯିବ ? କେବେ ଆଉ ଯିବୁତୁ ନନ୍ଦନେ ?

ସରଗର ଜୀବ ତୁହି ବାସ ତହିଁ ତୋର
ସେଥିପାଇଁ କିରେ ତୋତେ ଲାଗେ ନାହିଁ ଭଲ ?
ମନ୍ଦାକିନୀ-ଝରୁ-ଧାରା ପିଉଥିଲୁ ବୋଲି
ଅପବିତ୍ର-ପରଶା ଏ ଧରଣୀର ଜଳ ?

ଝରୁ ବା ନଝରୁ ସଦା ରହୁଥାଉ ଚାହିଁ
ସରଗ ପୁରର ସେହି ମେଘ-ଝରା-ବାରି
କେବେ ହେଲେ ପରଶୁନା ଏ ମର୍ତ୍ତ୍ୟ ସଲିଳ
ତୃଷାରେ ପଛକେ ବୁକୁ ଯାଉରେ ବିଦରି ।

ଦେବତାର ଅଭିମାନ ତୁଟି ନାହିଁ କିରେ
ଆଜିଯାଏ ତୋ ହୃଦରୁ ? ରଖିଅଛୁ ମନେ ?

ଦେବତାର ଆଭିଜାତ୍ୟ ଧରି ହୃଦୟରେ
କହରେ ଧରାରେ ତୁହି ଚଳିବୁ କେସନେ ?
ଭୁଲିଯା ଭୁଲିଯା ତୁରେ ସରଗର କଥା
ସ୍ମୃତିପଟୁ ପୋଛିପକା ଦେବତା ବାସନା
ଦିନେ ତୁ ଦେବତା ଥିଲୁ ଭୁଲି ଯା ଏକଥା
ନ ହେଲେରେ ତୋ ପରାଣେ ଲାଗିବ ବେଦନା ।
ଚୈତ୍ର ପ୍ରଦୋଷେ ଯେବେ ଚଇତାଳି ମେଘ
ମାଳେ ମାଳେ ଭାସିଉଠେ ଦୂର ନଭତଳେ,
କାହିଁ ପାଇଁ, କାହାପାଇଁ କାନ୍ଦୁ ତୁହି ଏତେ
ଉଡ଼ିଉଡ଼ି ମେଘତଳେ ଏପରି ବିକଳେ ?

ମରମ-ବିଦରା ତୋର ଏ କାନ୍ଦଣା ଶୁଣି
ଅନାଥର ବେଶେ ତୋତେ ଦେଖିରେ ଚାତକ,
ବଉଦର ଅନ୍ତରାଳେ ରହି, ମନ ଦୁଃଖେ
ଦେବ-ବାଳା ଝରଝର ଝରାଏ ଲୋତକ ।

କିଏ ସେହି ଦେବ-ବାଳା ? କିଏ ସେ ତୋହର ?
କାହିଁକିରେ ତୋହ ପାଇଁ ତା' ହୃଦ ବିକଳେ,
ନିତିନିତି ଆସି ସେହୁ ତରଳ-ତିମିରେ
ତିନ୍ତାଏ ଧରଣୀ-ବୁକୁ ନୟନର ଜଳେ ?

କହନି ଚଢ଼କ ଆରେ, କାହିଁପାଇଁ ଏତେ
ଝୁରୁଥାଉ ସରଗରୁ ତୁଙ୍ଗ-ତରୁ-ଶିରେ ?
ଉଡ଼ିଯିବୁ ସରଗକୁ ତେଜି ଏ ଧରଣୀ
ସରଗ ସୁନ୍ଦରତର ଧରଣୀରୁ କିରେ ?

ସେଠାରେ କି ଅଛି ଦୂର-କାନ୍ତ-ଗିରିମାଳା ?
ଗିରିପାଦ ତଳେ ସେଠି ଝରେ କି ଝରଣା ?
ନଦୀକୂଳେ ତରୁଡାଳେ ଫୁଲେ ସାଜି ଦେହ
ଝୁଲେ କି ଲତିକା-ସଖୀ ମଞ୍ଜୁଳ ବରଣା ?

ଶରତେ ଫୁଟେ କି ସେଠି କାଶତଣ୍ଡି ଫୁଲ
ବସନ୍ତେ ବିକଶେ କିରେ ଚୂତର ମଞ୍ଜରୀ ?
ବରଷାରେ ବାରିଧାରା ଝରେ କି ସରଗୁ
ହେମନ୍ତେ ମେଲେ କି ବାସ ତମାଳ ମୁଞ୍ଜରି ?

ନଥିବରେ ନଥିବରେ ଏ ଶୋଭା-ପସରା
ଦେବତାର ଗନ୍ତାଘର ନନ୍ଦନ-କାନନେ,
ତେବେ କାହିଁପାଇଁ ଆରେ ଝୁରୁ ତୁ ସରଗ
ପାସୋରି ଏ ଗିରିଝର, ବନ ଉପବନେ ?

× × × ×

ଶାପଭ୍ରଷ୍ଟ ଦେବତାରେ ବୁଝିଲି ବୁଝିଲି
ବୁଝିଲି ବୁଝିଲି ତୋର ବେଦନାର କଥା

ସରଗର ଶୋଭାପାଇଁ ନୁହେଁ, ଯାହାପାଇଁ
ଦିନରାତି ବୁକୁ ତୋର କରଇରେ ବଥା ।

ବାଦଲ-ପୁରୀରେ ଥାଇ ଚୈତ୍ର-ପ୍ରଦୋଷେ
ଝରାଏ ଲୋତକ ଯେହୁ ତୋହପାଇଁ ଦୁଃଖେ
ଅଭିଶପ୍ତ ଦେବତାରେ ତାହାଲାଗି ତୋର
ଲୋତକର ପାରାବାର ଉଚ୍ଛୁଳଇ ବୁକେ ।

ବୁଝିଲି ଚାତକ, ତୋତେ ବରିଥିଲା ଯେହୁ
ପ୍ରାଣପତି ପଦେ ଦିନେ ନନ୍ଦନ-କାନନେ
ପାରିଜାତ-ମାଳା ଦେଇ ସୁରଧୁନୀ-ତୀରେ,
ଆଜି ସେହି ପ୍ରିୟତମ କଥା ପଡ଼େ ମନେ ।
ମନେପଡ଼େ ଆଜି ତାର ସେହି କଥା ସଦା
କେସନେ ଯୁଗଳ-ପ୍ରାଣୀ, ନବୀନ-ଯୌବନେ
ପ୍ରାଣ ବିକାବିକି ହେଲ ବାସର-ଶେଯରେ
ଏକକୁ ଆରେକ କରି ସାକ୍ଷୀ ମନେମନେ ।
ମନେପଡ଼େ ଆଜି ତା'ର ସେ ଘନ-କବରୀ
ନିଦ୍ରା-ନିମୀଳିତ-ନୀଳ-ନୀଳାବ୍ଜ-ନୟନ,
ସେ ବାହୁ-ଯୁଗଳ କେହ୍ନେ ଜଡ଼ାଏରେ ଗ୍ରୀବା
ପରାଣ-ପାଗଳକରା ମଧୁର ଆନନ ।
ବିଦାୟ ଦିନର ସେହି କାତର-ଚାହାଣି
ଅଶ୍ରୁ-ଧାରା ନୟନର ଧାରା-ବାରି ପରି,

ଥରଥର ପୋଛିଦେଲେ ଥରଥର ପୁଣି
ନୟନୁ ଉଚ୍ଛୁଳି ଗଣ୍ଡେ ପଡୁଥିଲା ଝରି ।
କିଏ ସେ ନାରକୀ, ଆହା, କେଉଁ ଅପରାଧେ
ଚିରଦିନ ପାଇଁ ତୋର ହରିନେଲା ସୁଖ ?
ତୋର ଏ ବିକଳ ଦେଖି ପରାଣେ ପରାଣେ
କରୁଣା ଉଚ୍ଛୁଳି ଉଠେ, ଉପୁଜଇ ଦୁଃଖ ।
ଶାପଭ୍ରଷ୍ଟ ଦେବତା ତୁ ଚିର-ବିରହର
ସେଥିପାଇଁ ତୋ ଦେବତା-ପରାଣ ବିକଳେ
ମେଘତଳେ, ତରୁଡାଳେ, ତୁଙ୍ଗ-ଗିରି ଶିରେ
ଦିନରାତି, ବିହଗର ପକ୍ଷପୁଟ ତଳେ ।

(ସହକାର-୧୨ଶ ଭାଗ / ୧୧ଶ ସଂଖ୍ୟା / ଫାଲ୍‌ଗୁନ - ୧୩୩୯ ସାଲ
(୧୯୩୨) ମସିହା)

# ଜୀବନ-ସଙ୍ଗୀତ

କହନା କାତର କଣ୍ଠେ "ବୃଥା ଏ ଜନମ
ଏ ଜୀବନ ଅଳୀକ ସପନ"
ନିଷ୍କର୍ମା ମାନବ ଲଭେ ଜୀବନ୍ତ ମରଣ
ବୃଥା ଚିନ୍ତା କରେ ଅବସନ୍ନ ।

କର୍ମମୟ ଏ ଜୀବନ୍ ଏକାନ୍ତ ବାସ୍ତବ
ମୃତ୍ୟୁ ଯାର ନୁହେଁ ପରିଣତି,
"ମିଶିବ ଧୂଳିରେ ଦିନେ ଧୂଳିର ଶରୀର"
ପ୍ରଯୁଜ୍ୟ ଏ ନୁହେଁ ଆତ୍ମା ପ୍ରତି ।

ଭୋଗ ଓ ବିଳାସ କିମ୍ବା ଦୁଃଖ ଓ କଷଣ
ନୁହେଁ ଆମ ଲଲାଟ-ଲିଖନ,
ପ୍ରତ୍ୟହ ଉଦ୍ୟୋଗବଳେ ଆଚରି କରମ
ସମୁନ୍ନତ କରିବା ଜୀବନ ।

ଅନନ୍ତ ବିଦ୍ୟା ଓ ଜ୍ଞାନ, କ୍ଷୀଣ ଏ ଜୀବନ
ପରମାୟୁ ପ୍ରତିକ୍ଷଣେ ସରେ,
ହୃଦୟ-ସ୍ପନ୍ଦନ ଅଟେ ପଦପାତ-ଧ୍ୱନି
ଜୀବନର ମରଣ ପଥରେ ।

ସଂସାର-ବିସ୍ତୃତ-କ୍ଷେତ୍ରେ ଜୀବନ-ଯୁଦ୍ଧର
ସଙ୍କଟ ଓ ଜଞ୍ଜାଳ ଗହନେ
କାତର ନହୁଅ କେଭେ ଭୀରୁ ଜନ ସମ
ବୀରହୁଅ କର୍ମ ସଂପାଦନେ ।

ଭବିଷ୍ୟତ ସ୍ୱର୍ଣ୍ଣ-ସ୍ୱପ୍ନେ ନହୁଅ ମଗନ
ଅତୀତକୁ ପକାଅ ବିସ୍ମରି,
ଉର୍ଦ୍ଧ୍ୱେ ଭଗବାନ, ହୃଦେ ଦୃଢ଼ ବ୍ରତଧରି
ଉପସ୍ଥିତ-କର୍ମ ଯାଅ କରି ।

ମହାଜନ-ଚରିତରୁ ମିଳଇ ଇଙ୍ଗିତ
ଆମେ ମଧ ହୋଇବା ମନସ୍ୱୀ
ସମୟ-ସାଗର-ତୀରେ ପଦଚିହ୍ନ ଲେଖି
ଆମେ ମଧ ହୋଇବା ଯଶସ୍ୱୀ ।

ଜୀବନ-ସମୁଦ୍ରେ କେଉଁ ଦୁର୍ଭାଗା-ଜନର
ଚୂର୍ଣ୍ଣିଭୂତ ହୁଏ ଯଦି ତରୀ,
ବିଜନ-ବେଳାରେ ଦେଖି ପଦାଙ୍କ ଆମରି
ଆଶା ତାର ଉଠିବ ମଞ୍ଜରି ।

ଲାଗିଯିବା ଆସ ତେବେ କର୍ମ-ସମ୍ପାଦନେ
ଚିନ୍ତାନାହିଁ ଯା ଘଟିବ ଘଟୁ,
ନିରଳସ କର୍ମପରି ଅରଜିବା ଯଶ
ଧୈର୍ଯ୍ୟଧରି ହେବା କର୍ମପଟୁ ।

*ଅନୂଦିତ* ***"A Pslam of life"...... H.W. Longfellow.***

# କୃଷ୍ଣା

ଆସ ଗୋ ଆସ ସନ୍ଧ୍ୟା ସାଥି ଶାନ୍ତିମୟୀ ରାଣୀ
ଅୟି ପ୍ରେୟସୀ କୃଷ୍ଣା ମୋର ବାଦଲପୁରୀ ବାଳା,
ତୁମକୁ ମୁଁ ଗୋ ନେଇଛି ବରି କିଶୋର କାଳୁଁ ପ୍ରାଣେ
ଦେଇ ତୁମକୁ ସୋହାଗ-ପ୍ରୀତି ସ୍ନେହ-ସରାଗ-ମାଳା ।

ସନ୍ଧ୍ୟାବଧୂର ଅଧରଧାରୁ ଥୋପି ପଡ଼ଇ ରକ୍ତ
ସରଗପୁରୀ ଅଳତା ରଂଗେ ରଂଗା ଚାରୁ ଚରଣ
ପ୍ରିୟେ ଗୋ ତୁମ ଅଧର ଧାର ବଧୂଲି ରାଗେ ରଞ୍ଜା
ଲକ୍ଷ୍ମୀପାଦ କମଳେ ଖେଳେ ଅଳତା ମଧୁ ବରଣ ।

ସନ୍ଧ୍ୟାବଧୂ କାନରେ ପିନ୍ଧେ ସରଗ-ଫୁଟା-ତାରା
ସରାଗ ମନେ ପିନ୍ଧଇ ନିତି ରକତ-ରଂଗ-ବାସ
ରକତ ବାସ ପିଆରୀ ତୁମେ କାନରେ ଝୁଲେ ହୀରା
ସନ୍ଧ୍ୟାରାଣୀର ସଂଗୀ ପ୍ରିୟେ ଆସ ଗୋ ତୁମେ ଆସ ।

ଦୀପ୍ତ ଦିବାର ଝଲସା ରୂପେ ମନ ମାନେ ନା ତିଳେ
ଉଦାସ ମନ ଲୋଡ଼ଇ ସଦା ସନ୍ଧ୍ୟା-ମଧୁ-ମୂରତି
କନକ ଗୋରୀ ସମାଜେ ମୋର ପିୟାସୀ ଆଖି ସଦା
ତୁମକୁ ଖୋଜେ ନପାଏ ଯଦି ହିଆ ହୁଅଇ କରତି ।

କଜଳ-କଳା ବାଦଲ ଦେଖି ମୟୂର ନାଚେ ପ୍ରେମେ
କି ଗୁଣ ଅଛି କାଳିଆ ମେଘେ ମନ ତା ତହିଁ ମଜେ,
ତୁମରି କମ କାନ୍ତ ମୁଖେ କି କଥା ଅଛି ସହି,
ଦେଖିଲେ ମୋର ପରାଣ-ପୁରେ ମଧୁର ବୀଣାବାଜେ ।

ଶରତ-ସଫା ସରଗେ କେତେ କମଳ ଧଳା ମେଘ
ଧାଡ଼ିକିଧାଡ଼ି ଯା'ନ୍ତି ଭାସି ବୃନ୍ଦାବନର ବ୍ରଜେ
ମୟୂର ମନ ମାନେ ନା ତହିଁ ଝୁରଇ କଳାମେଘ,
କନକଗୋରୀ ରହେଁନା ମନ ତୁମରି ରୂପେ ମଜେ ।

ଆଷାଢ଼ ମାସର ବଉଦମାଳା ହେଉ ପଛକେ କଳା
ବରଷି ବାରି ଶୀତଳ କରେ ତପତ ଆମ ଧରା
କନକଗୋରୀ ଦାମିନୀ ବାଳା ଝଲସା ରୂପ ତଳେ
ଲୁଚାଇ ଥାଏ ବଜ୍ର ବାଣ ବନପାହାଡ଼-ଜଳା ।

ଶ୍ୟାମଳ ରୂପ ପାଗଳ କରେ ଯୁବା ଯୁବତୀ ମନ
ବରଜ ପୁରେ ବରଜ ନାରୀ କାଳିଆ ପାଦତଳେ
ଜଣ ଜଣକି ଜୀବନ ମନ ଅରପି ଦେଇଥିଲେ ଗୋ,
କାଳିଆ ବିନେ ନୟନ ତାଙ୍କ ଭରଇ ଅଶ୍ରୁଜଳେ ।

ପ୍ରିୟେ ଗୋ ତୁମ ଶ୍ୟାମଳ ରୂପେ ପରାଣ-ରାଧା ମୋର
ପାଗଳ ହୋଇ ତୁମରି ପଛେ ଛୁଟିଛି ଦିନରାତି
ନିଜନେ ମୁହିଁ ବସଇ ନିତି ଦେଖିବା ପାଇଁ ବାରେ
ତୁମରି ପାଦ ନୂପୁର ତାନେ ପରାଣ ଉଠେ ମାତି ।

ସେଥିପାଇଁ ଗୋ କାନ୍ତା ମୋର ସବୁକୁ ଦଳି ପାଦେ
ଦିବସ ରାତି ହୋଇଛି ମୁଁ ଗୋ ତୁମ ରୂପର ଭକ୍ତ
ତୁମରି ଝୀନ ଗୋଲାପି କାନି ପଡ଼ିଲେ ନୟନ ପ୍ରାନ୍ତେ
ସାରା ଶରୀରେ ମତ୍ତ ହୋଇ ନାଚଇ ମୋର ରକ୍ତ ।

ସନ୍ଧ୍ୟା ରାଣୀ ଆସିଲେ ଦିନ ଶେଷେ ଏ ଧରା-ପୁରେ
ଦେବତା ପୁରେ ଆରତି ସାଥେ ନବ ଆନନ୍ଦ ଜାଗେ
ମୁଞ୍ଜରଇ କୁସୁମ ସଖୀ ସପନ ଦେଖି ସଞ୍ଜେ
ବିଶ୍ୱପୁର ମଦିର ମାୟା - ମଧୁର ଚିତ୍ରେ ସାଜେ ।

ଅୟି ଗୋ ମୋର ତପ୍ତ ପ୍ରାଣେ ବରଷ ଝରା-ଧାରା
ଦେଖିଲେ ତବ କାନ୍ତ ମୁଖ ପରାଣ ଯାଏ ପୂରି
ପରାଣ ଭରି ପରାଣ ପୁରେ ଛନ୍ଦହରା ଗାଥା
ଉଠଇ କେତେ, ଆହ୍ଲାଦରେ ପୁଲକି ଉଠେ ଶରୀ ।

ପରାଣ ପୁରେ ସାଇତିଛି ମୁଁ ତୁମରି ପାଇଁ ଥାନ
ଆସ ଗୋ ଆସ କୃଷ୍ଣା ମୋର, ପ୍ରୀତି ପିଆରୀ ପ୍ରିୟେ,
ସନ୍ଧ୍ୟା-ମଧୁ ବରଣ ମୋତେ ଲାଗଇ ବଡ଼ ଭଲ
ବକ୍ଷେ ନେବି ତୋଳି ତୁମକୁ ପ୍ରୀତି ସୋହାଗ ସ୍ନେହେ ।

*(ସହକାର - ୧୨ଶଭାଗ / ୫ମସଂଖ୍ୟା / ଭାଦ୍ର - ୧୩୩୮ ସାଲ*
*(୧୯୩୧ ମସିହା)*

# ସନ୍ନ୍ୟାସୀ ଉପଗୁପ୍ତ

ମଥୁରା ନଗରୀ ପ୍ରାଚୀରର ତଳେ
ଏକଦା ନିଶୀଥେ ସୁପ୍ତ,
ନଗରୀର ଦୀପ ଲିଭିଛି ପବନେ
ଦୁଆର ରୁଦ୍ଧ ପୌର ଭବନେ,
ନିଶୀଥର ତାରା ଶ୍ରାବଣ ଗଗନେ
ଘନ ଶେଯେ ଅବଲୁପ୍ତ ।

କାହାର ନୂପୁର ଝଳିତ ଚରଣ
ସହସା ବାଜିଲା ଗାତ୍ରେ
ଚମକି ଜାଗିଲେ ସନ୍ନ୍ୟାସୀବର
ସ୍ୱପ୍ନ ଜଡ଼ିମା ଗଲା ସତ୍ୱର
ଆଲୋକ ପଡ଼ିଲା ରୂଢ଼ ପ୍ରଦୀପର
କ୍ଷମା ସୁନ୍ଦର ନେତ୍ରେ ।

ନଗରୀର ନଟୀଯାଏ ଅଭିସାରେ
ଯୌବନ ମଦେ ମତ୍ତା
ଅଂଗେ ବସନ ସୁନୀଳ ବରଣ
ରୁଣୁଝୁଣୁ ରବେ ବାଜେ ଆଭରଣ
ସନ୍ନ୍ୟାସୀ ଦେହେ ପଡ଼ିଲେ ଚରଣ
ଥମକେ ବାସବଦତ୍ତା

ପ୍ରଦୀପ ଧରି ୦ଏ ଦେଖିଲା ତାଙ୍କ
ନବୀନ ଗୌର. କାନ୍ତି
ସୌମ୍ୟ ସହାସ ତରୁଣ ବଦନ
କରୁଣା କିରଣେ ବିକଚ ନୟନ
ଶୁଭ୍ର ଲଲାଟେ ଇନ୍ଦୁ ସମାନ
ବିରାଜେ ସ୍ନିଗ୍ଧ ଶାନ୍ତି ।

କହିଲା ରମଣୀ ଲଳିତ କଣ୍ଠେ
ନୟନେ ଜଡ଼ିତ ଲଜ୍ଜା
'କ୍ଷମାକର ମୋତେ, କୁମାର କିଶୋର,
ଦୟାକରି ବାରେ ପୁରେ ଚାଲ ମୋର
ଏ ଧରଣୀ ତଳ କଠିନ କଠୋର
ଏ ନୁହେଁ ତୁମର ଶଯ୍ୟା ।'

ସନ୍ନ୍ୟାସୀ କହେ କରୁଣ ବଚନେ
'ଅୟି ଲାବଣ୍ୟ ପୁଞ୍ଜେ
ଏ ଯାଏ ମୋହର ସମୟ ହୋଇନି
ଯାଉଅଛ ଯହିଁ ଯାଅ ତୁମେ ଧନୀ
ସମୟ ଯେ ଦିନ ଆସିବ ସଜନୀ
ଯିବି ମୁଁ ତୁମର କୁଞ୍ଜେ ।'

ସହସା ଝଞ୍ଝା ତଡ଼ିତ ଶିଖାରେ
ମେଲିଲା ବିପୁଳ ଆସ୍ୟ
ରମଣୀ ଶିହରି ଉଠିଲା ତରାସେ
ପ୍ରଳୟ ଶଙ୍ଖ ବାଜିଲା ବତାସେ
ଆକାଶେ ବଜ୍ର ଘୋର ପରିହାସେ
ହସିଲା ଅଟ୍ଟହାସ୍ୟ ।

ବର୍ଷା ସେଯାଏ ହୋଇନାହିଁ ଶେଷ
ଆସିଛି ଚୈତ୍ର ସଂଧ୍ୟା,
ମଳୟ ହୋଇଛି ମତ୍ତ ଆକୁଳ
ପଥ ତରୁଡାଳେ ଧରିଛି ମୁକୁଳ
ରାଜ ଉପବନେ ଫୁଟିଛି ବକୁଳ
ମାଳତୀ ରଜନୀଗନ୍ଧା ।

ଅତିଦୂରୁ କାହୁଁ ଆସଇ ପବନେ
ମୂରଲୀ ମଦିର-ମନ୍ଦ୍ର
ଜନହୀନପୁରୀ ବକ୍ଷେ ସରବେ
ମଧୁବନେ ଠୁଳ ଫୁଲ-ଉତ୍ସବେ
ଶୂନ୍ୟ ନଗରୀ ନିରେଖି ନୀରବେ
ହସଇ ପୂର୍ଣ୍ଣଚନ୍ଦ୍ର ।

ନିର୍ଜନ ପଥେ ଜ୍ୟୋସ୍ନା-ଆଲୋକେ
ସନ୍ନ୍ୟାସୀ ଏକା ଯାତ୍ରୀ
ମୁକୁଳ ଗହଳେ ତରୁ ବୀଥିକାର
ପିକ କୁହୁତାନ ଉଠେ ବାରବାର
ଏତେଦିନ ପରେ ଆସିଛିକି ତାର
ପ୍ରୀତି ଅଭିସାର ରାତ୍ରି ?

ନଗରୀ ଲଙ୍ଘି ସନ୍ନ୍ୟାସୀ ଗଲେ
ବାହାର ପ୍ରାଚୀର ପ୍ରାନ୍ତେ
ଉଭାହେଲେ ଆସି ପରିଖାର ପାରେ
ଆମ୍ର କାନନ-ଛାୟା ଅନ୍ଧାରେ
କିଏ ସେ ରମଣୀ ପଡ଼ିଗଲା ଧୀରେ
ସନ୍ନ୍ୟାସୀ ପଦପ୍ରାନ୍ତେ ?

ନିଦାରୁଣ ରୋଗେ, ବିଷମୟ ବ୍ରଣେ
ଭରିଯାଇଛି ତା' ଅଙ୍ଗ,
ରୋଗ ନିପୀଡ଼ିତ ତନୁ କଦାକାର
ପୁରବାସୀ ଦେଖି କରି ଛିଛିକାର
କରିଦେଇଛନ୍ତି ନଗରୁ ବାହାର,
ବିଷାକ୍ତ ତାର ସଂଗ ।

ସନ୍ନ୍ୟାସୀ ବସି ମସ୍ତକ ତାର
ତୋଳିନେଲେ ନିଜ ଅଙ୍କେ
ଢାଳିଦେଲେ ବାରି ଶୁଷ୍କ ଅଧରେ
ମନ୍ତ୍ର ସୁମରି ଦେଲେ ଶିରପରେ
ଲେପିଦେଲେ ଧୀରେ ଆପଣାର କରେ
ଶୀତ ଚନ୍ଦନ ପଙ୍କେ ।

ଝରଇ ମୁକୁଳ କୂଜଇ କୋକିଳ
ଯାମିନୀ ଜ୍ୟୋସ୍ନା-ମତ୍ତା
ନାରୀ କହେ ଆଗୋ "କିଏ ଦୟାମୟ ?"
ସନ୍ନ୍ୟାସୀ ଦେଲେ ନିଜ ପରିଚୟ
"ଆଜି ରଜନୀରେ ହୋଇଛି ସମୟ
ଆସିଛି, ବାସବଦତ୍ତା ।"

*(କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କ ବଂଗଳା 'ଅଭିସାର' କବିତାରୁ ଅନୂଦିତ ।)*

# ହରିରାମ

ଏଇ ସେ ନାମର ବୃନ୍ଦାବନେ
ନିର୍ବାସ କରେ ବ୍ରଜର ବନ୍ଧୁ
ଗୀତା ଗୌର ଚନ୍ଦ୍ରାନନେ
ନାରଦ ବୀଣାର ସୁରର ମଧୁ ।
ମୁକ୍ତ ମଠର କଳ୍ପତରୁ
ଅକ୍ଷୟ ଫଳ ଆପେ ସେ ଝରେ,
ହୁଏ ସେ ସୁଧାରେ ସିକ୍ତ ମରୁ
ବୋଲରେ ହରେକୃଷ୍ଣ ହରେ ।
ଉଦ୍ଧାରର ଏ ମନ୍ଦାକିନୀ
ଶ୍ୟାମର ସରଳ ବଂଶୀ-ଧାରା
ମୁମୂର୍ଷୁର ଏ ସଞ୍ଜିବନୀ
ଅନ୍ଧଜନର ନୟନତାରା ।
ଶୋକର ପ୍ରଲେପ ଦୁଃଖର ସାଥୀ
ଜୀବନ ମରଣ ସଫଳ କରେ
ଅନ୍ଧାର ହୃଦର ଉଜ୍ଜ୍ୱଳ ରାତି
ବୋଲରେ ହରେକୃଷ୍ଣ ହରେ
ଏଇତ ଜୀବନ ଗଙ୍ଗା ଗୟା
ମନ୍ତ୍ରଜପ ଓ ଯଜ୍ଞ ଆରେ
ଏଇତ ଗୌର ନିତାଇ ମାୟା
ବୋଲରେ ହରେକୃଷ୍ଣ ହରେ ।

*(କୌଣସି ଏକ ହିନ୍ଦୀ କବିତାରୁ ଅନୂଦିତ)*

# ଉଷା

ନିତି ନିଶି ଶେଷ ଯେବେ,
ପରାଚୀ ଗଗନେ
ଝିଲିମିଲି ଅନ୍ଧାର ଉଢାଳେ
ଆହେ ପଦ୍ମାନନେ,
ଗୋଲାପୀ ଅଞ୍ଚଳ ତବ ଶୁଭ୍ର ଅପଘନେ
କମ୍ପିଉଠେ ପ୍ରଭାତ ତପନେ ।

ଦେଖିଦେଖି ହୃଦୟ ପୂରେନା
ଉଷା ତୁମେ ଅନନ୍ତ ଯୌବନା
ତବ କାନ୍ତି ଚାରୁରୂପ
ମୋହିଦିଏ କ୍ରୂର କାଳ-ହିଆ

ଅତୁଳ ଯୌବନ
ସର୍ବନାଶୀ କାଳର ଅନ୍ତର
ପାଇବାକୁ ତବ ଅଙ୍ଗ ପରଶକୁ
ବଳେନା ତା ମନ
ଆଗୋ ଗୋଲାପୀ ବରଣା
ଉଷା ତୁମେ ଅନନ୍ତ ଯୌବନା !



# ମହାନଦୀ

ହେ ଗିରି-ସ୍‌ମ୍ରାଟ ସୁତା
ତରଙ୍ଗ ତାଣ୍ଡବୀ !
ବିନ୍ଧ୍ୟର ଗଗନଭେଦୀ ତୁଙ୍ଗ ଚୂଡ଼ାତଳୁ
ଛୁଟିଆସ ଯେତେବେଳେ ନବୀନ ଉଦ୍ଦାମେ
ଗର୍ଜି ଘନଘନେ
କମ୍ପିଯାଏ ଧରାଧାମ ଥରଥର ଥରେ
ତବ ପଦ ଭାରେ ।

ଆଗୋ ସୁକାନ୍ତି ମହର୍ଷି ତପସିଦ୍ଧ ଧାରା
ଜନ-ମନୋହରା !
ନବୀନ ରମ୍ୟ ଆଷାଢ଼େ
ପ୍ରଥମ ପ୍ରାବୃଟେ
ଭାସିଉଠେ ଯେତେବେଳେ ନବୀନ ଜଳଦ
ପଶ୍ଚିମାଶା ତଟେ,
ବୋଳିତ ଅଞ୍ଜନ ସମ ଧରାର ନୟନେ,
ଯୌବନର ଦାମିନୀ ଝଲକ
ନ ପଡୁଣୁ ନୟନ ପଲକ
ଖେଳିଯାଏ ତବ ଅପଘନେ;

ହୁଏ ତବ ମନ ଛନଛନ
ଯଥା, ଫଗୁଣ ପ୍ରଥମ ଦିନେ ମଳୟ ପବନ;

ପାଅ ଯେବେ ନୀଳାମ୍ବର ସରାଗ ପତର
ହୃଦୟର ସୁପ୍ତ ତନ୍ତ୍ରୀ ତବ
କମ୍ପଇ ସଘନେ,
ଯୁବକର ପ୍ରେମଭରା ମଧୁ ସମ୍ବୋଧନେ -
କମ୍ପଇ ସଘନେ ଯଥା
ତରୁଣୀ ଅନ୍ତର;
ଗୋଲାପୀ ବରଣ ବାସେ ଶରୀର ଆବରି
ସଜଫୁଟା ମଲ୍ଲିକାର ଫୁଲେ
ଉଦ୍ଦାମ ପ୍ରଫୁଲ୍ଲେ
ମଣ୍ଡିଥାଅ ସୁନ୍ଦର-କବରୀ,
ଯୌବନର ଉଦ୍ଦାମ କାମନା
ଜଳିଉଠେ ଅନ୍ତରେ ତୁମରି,
ଦୀର୍ଘ ବିରହର ପରେ କମ୍ପିତ ହୃଦୟେ
ଧରି କରେ ଭକ୍ତିଭରେ ପ୍ରେମର ପିଆଲା
ପତି ଦରଶନ ଆସେ ହୁଅ ତରତର
ଆଗୋ, ସୁନ୍ଦରୀ ସ୍ୱର୍ଗର !

ଯୌବନର ଦୃପ୍ତ ଆଶା ଖରେ
ଜଳିଉଠେ ତୁମରି ଅନ୍ତରେ,
ଉଲ୍ଲସି ଉଠଇ ହିଆ
ଯୌବନର ରଂଗିନ୍ ସପନେ
ନାଚିନାଚି ବହିଚାଲ
ଗୁରୁଗୁରୁ ଡମରୁ ଡିଣ୍ଡିମେ ।

*(ଅସଂପୂର୍ଣ୍ଣ ରଚନା : ତା୧୪.୧୦.୧୯୨୮)*

# ଷୋଡ଼ଶୀ

କିଏ ତୁମେ ଦେବବାଳା ସୁନ୍ଦରୀ ଷୋଡ଼ଶୀ
ନନ୍ଦନ ପାରିଜାତ ଅପରୂପା ରୂପସୀ
ଗଢ଼ା ତୁମେ ସରଗର ଗୌରବେ
ଭରା ତୁମେ ପାରିଜାତ ସୌରଭେ
ସରଗର ତାରା ପରି ହସିଯାଅ ଭାସି ଗୋ
କିଏ ତୁମେ ସୁନ୍ଦରୀ କାହୁଁଅଛ ଆସି ଗୋ ?

ଚାହିଁଥାଅ ଅନିମିଷେ ଦୂର ନୀଳ ଗଗନେ
ଫୁଲବାସ ଚହଟଇ ସଂଧ୍ୟାର ପବନେ
ଆଖିଆଖି ମିଳିଗଲେ ଭରମେ
ଅଞ୍ଜନ ଘେନା ଆଖି ସରମେ
ନିମିଳିତ କରି ତୁମେ କାହିଁଯାଅ ସରି ଗୋ
କୁହୁକିଆ ମନ୍ତରେ ମନ ଚୋରି କରି ଗୋ ।

ଲୋଟଣି ପାରାରି ପଛେ ଚଞ୍ଚଳ ଚରଣେ
ଛୁଟ ଯେବେ ଅଞ୍ଚଳ ଉଡ଼ିବୁଲେ ପବନେ
ନୀଳମଣି ଜିଣା ନୀଳ ଅଞ୍ଚଳ
ଦେଖିହୁଏ ଶିଶୁପରି ଚଞ୍ଚଳ
ତବ ଘନ କୁନ୍ତଳ ଫିଟିଯାଏ ଲୋଟି ଗୋ
କୁମାରର ମାର ଜିଣା ପ୍ରାଣ ଯାଏ ତୁଟି ଗୋ !

ଆନମନେ ବାତାୟନେ ଚାହିଁ ରହ ଗଗନେ
ନୀଳ ଇନ୍ଦିବର ନିନ୍ଦି ଉଦାସିଆ ନୟନେ
ସମୀରଣ ଦୂରୁ ଆସେ ପହଁରି
ଚିକୁର ସରମେ ଉଠେ ଶିହରି
କି ଭାବନା ଭାବ ତୁମେ ନିର୍ଜନରେ ବସି ଗୋ
ଦୂର ଦିଗେ ଉଠେ ଚାନ୍ଦ ମଧୁ ହାସ ହସି ଗୋ !

ଶିରୀଷ କୁସୁମ ସରି ସୁକୁମାରୀ କୋମଳା
ଗରିବର ଲକ୍ଷ୍ମୀ ଗୋ ଭିଖାରିର କମଳା
ଅନ୍ତର ସଦା ତବ ହରସ
ଲାଗି ଗଲେ ପୁରୁଷର ପରସ
ଲାଜକୁଳି ଲତା ପରି ଲାଜେ ଯାଅ ସଢ଼ି ଗୋ
କିଏ ତୁମେ ଶରତର ନୀଳକଇଁ କଢ଼ି ଗୋ ?

ତୁମ ନିରବତା ବନ୍ଧୁ ମୋ ମରମ ଭଙ୍ଗା
ଗୋଲାପର ରଙ୍ଗ ଜିଣି ତବ ମୁଖ ରଙ୍ଗା
କୌମୁଦି ନଭ ତଳେ ମିଳନ
କମ୍ପନ ଦେହେ ଖେଳେ ସଘନ
ମୋହନ ମଦିରା ନିଶା ଭରେ ଶିରାଶିରା ଗୋ
ବୟସର ବିଷଡାକ ବଡ଼ ବୁକୁଚିରା ଗୋ
ଯୌବନ ବନ୍ଧୁ ଗୋ ନିଶୀଥର ପତନ
ଅନ୍ତର ତିୟାରି ଗୋ ଯୁବା ଜୀବ ଜୀବନ
ବସନ୍ତର ମଞ୍ଜରୀ ରସାଳ
ଲତା କୋଳେ ମୁଞ୍ଜରା ତମାଳ
କୁଆଁରୀର ଚାରୁଶଶୀ ଶରତ ପ୍ରଭାତ ଗୋ
କିଏ ତୁମେ ନନ୍ଦନ ଫୁଟା ପାରିଜାତ ଗୋ ?

*ରଚନା ତା.୩୧.୦୪.୧୯୨୯*
*(ସହକାର - ୧୦ମ ଭାଗ / ୪ମ ସଂ / ବୈଶାଖ - ୧୩୩୬)*

# ବିରହ-ରାଗିଣୀ

ଦିଗ୍‌ବଳୟେ ଲିଭିଗଲା ଶେଷ ରଶ୍ମିରେଖା
ଅସ୍ତାଚଳେ ଭାସିଉଠେ ରକ୍ତାରୁଣ ଶିଖା ।

ସାଗର ସେପାରେ କେଉଁ ଅଳକାର ପୁରୀ
ଆଲୋକିବା ପାଇଁ ଧୀରେ ରବିଗଲେ ଢଳି ।

ଧୀର ପଦପାତେ ସନ୍ଧ୍ୟା-ବାଳା ଆସିଲାଣି
ତରଳ ତିମିରେ ସୃଜି ମାୟା ଉଦାସିନୀ ।

ଚହଳ ପକାଇ ନୀଡ଼େ ବାହୁଡ଼ିଲେ ପକ୍ଷୀ
ଏକଦା ମୁଁ ବସିବସି ଥିଲି ଯେ ନିରେଖି ।

× × ×

ସମ୍ମୁଖେ ମୋ ବୈତରଣୀ ସ୍ଥିର ବାରିଧାରା
ଅମାବାସ୍ୟା ସିନ୍ଧୁ ସତେ ଉଛୁଳିଲା ପରା ।

ମନେହୁଏ ସତେ ଅବା ଯୁଗଯୁଗ ଧରି
ଶାନ୍ତ ଏ ତଟିନୀ ଅବିରାମ ଝରିଝରି

ଉତ୍ତାନେ ରହିଛି ପଡ଼ି ପଥଶ୍ରାନ୍ତ ସମ
ଜୁଆର ଭଟ୍ଟାରେ କେବେ ନହୁଏ ତା' ଭ୍ରମ ।

ନଦୀର ସେ ବାଙ୍କେ ଦୂରେ ଭାସଇ ତରଣୀ
କ୍ଳାନ୍ତ ନାଉରିଆ ବାହେ ତାହାର କ୍ଷେପଣୀ ।

ନିତି ଦେଖେ, କେଜାଣେ ସେ କି ପକ୍ଷୀ ଦୁଇଟି
ନଦୀ ଆରପାରୁ ଧୀରେ କ୍ଳାନ୍ତ ଡେଣା ପିଟି -

ସନ୍ଧ୍ୟା ଆଗମନେ ନୀଡ଼େ ଆସନ୍ତି ବାହୁଡ଼ି
କେତେ ମନ୍ତେ ନିଜ ମେଳେ ସମ୍ଭାଷଣ କରି ।

ଉଡ଼ୁଉଡ଼ୁ ଯଦି ପଛେ ପଡ଼ିଯାଏ ଏକ
ସଙ୍ଗସୁଖେ ଉଲ୍ଲସିତ କରଇ ଆରେକ ।

ଡେଣାରେ ଲଗାଇ ଡେଣା ଆସନ୍ତି ବାହୁଡ଼ି
ମୁହୂର୍ତ୍ତକେ ଛାଡ଼ି ଛାଡ଼ି ରହେନା କାହାରି ।

ଆଜି କିନ୍ତୁ ଦେଖିଲି ମୁଁ ପକ୍ଷୀଟେ ଏକାକୀ
ଫେରୁଛି ନୀଡ଼କୁ ତାର, ନାହିଁ ଆନ ପକ୍ଷୀ ।

ନୀରବ ନିଥର କଣ୍ଠ, ଉଦାସ ତା' ଗତି
କିଏ ସେ ପାଷାଣ ଏଡ଼େ, ବଧିଲା ତା' ସାଥୀ ?

କିପରି କାଟିବ ଦିନ ଗୋଟିଏ ପରାଣୀ
ନିଃସଂଗ ଜୀବନେ ବାଜେ ବିରହ ରାଗିଣୀ ॥



# ଅସାର ସଂସାର

ଅଳୀକ ଅସାର ଲାଗେ ଏ ସଂସାର
ଆସୁଛି ଅନ୍ଧାର ଘୋଟି ଏ
ଅନ୍ତରେ ଜାଗ୍ରତ ମହା କୋଳାହଳ
ନାଚନ୍ତି ତାଣ୍ଡବ ନଟୀଏ ।

ଜଳିଯିବ ତୋର ଏ ତନୁ ସକଳ
ହୃଦୟର ଧନ ଜୀବନ
ଆଶାର ବିପଣୀ, ବିଳାସର ଘର
ହୋଇଯିବ ମିଛ ସପନ ।



# ବୁଝି ମୁଁ ପାରେନା

ଜାଣେନା ମୁଁ ତିଳେ ଚରଣ ପୂଜିବା ପାଇଁ କେଉଁ ଦେବତାର
ହରଷ, ସରାଗ ସରିଯାଇଅଛି ଜୀବନ-ଦେଉଳୁ ମୋର ।

ଅଶ୍ରୁ-ଝରଣା ଶୁଖି ଯାଇଅଛି ଝୁରିଝୁରି ଦିନରାତି
ବ୍ୟଥା ଓ ବେଦନା ସହିସହି ମୋର ପଥର ହୋଇଛି ଛାତି ।

ଅଧରର କୋଣୁ ହରି ନେଇଅଛି ହସଟିକ କେଉଁ ଚୋର
ବୁଝିନାହିଁ କେହି, ବୁଝିବ ନାହିଁଟି ଅନ୍ତର ବ୍ୟଥା ମୋର ।

ଜୀବନେ ମୋହର ଅପରାଧ କା'ର କେବେହେଲେ କରିନାହିଁ
କଟୁକଥା କହି ଅନ୍ତରେ ତା'ର ବିଷ ମୁହିଁ ଭରିନାହିଁ ।

ତଥାପି କାହିଁକି ହୃଦୟ-ଗଗନେ ଘୋଟିଆସେ ଅବସାଦ
ବୁଝିପାରେ ନାହିଁ ତୁଟିଅଛି କିଆଁ ଜୀବନର ମଧୁ ସ୍ୱାଦ ?

*(ପ୍ୟାରୀମୋହନ ଏକାଡ଼େମୀର ଶେଷବର୍ଷର*
*ଛାତ୍ର ଥିବାବେଳେ ଏହି କବିତାଟି ତା.୭.୫.୨୬ରେ ରଚିତ ।)*

# ଅଭିସାରିକା

ଗଭୀର ରଜନୀ, ଝିଲ୍ଲୀ କରେ ସାଇଁସାଇଁ
ନାଚିବୁଲେ 'ବିଭୀଷିକା' ପଥ ଓ ପ୍ରାନ୍ତରେ;
ଶିବା ଦଳ ଘନଘନ ଡାକଇ ଉନ୍ମାଦେ -
'ବିଭୀଷିକା' ଦେବତାର ମାଂଗଳିକ ଗାଥା ।

ଊର୍ଦ୍ଧ୍ୱେ ତେଣେ ମହାଶୂନ୍ୟେ ଘଟଇ ପ୍ରଳୟ
ଗ୍ରହ ଉପଗ୍ରହ ମେଳେ ଲାଗଇ ସଂଘର୍ଷ,
ଅଗ୍ନିକଣା ଉଡ଼ିବୁଲେ ଆକାଶ ଆବରି,
ଚତୁର୍ଦ୍ଦିଗେ ବିରାଜଇ ମହା ନିରବତା ।

ଗୁରୁ ଭୟେ ଭୀତ ଧରା ଏକାନ୍ତ କାତର
ଆପଣାର ପଦପାତ ଶବଦେ ଚମକି
ପ୍ରଣୟୀ ସନ୍ଧାନେ ଆସେ କେ ଅଭିସାରିକା
ଏହି ଘନ ଅନ୍ଧକାରେ ଏକା ଏ ସମୟେ ?

"କେମନ୍ତେ ଆସିଲ ସଖି ଏତେ ପଥ ବାହି ?"
"ଯାହା ଲାଗି ପରାଣରେ ଲାଗଇ ଚମକ
ସେହି ତ ଅଭୟ ଦେଲା ଚାଲିବାକୁ ପଥ"
ପାଗଳ କରିଲା ପ୍ରାଣ ଆସିବାକୁ ଏଥି ।
ଝିଲ୍ଲୀ ଯେବେ ଚଉଦିଗେ କରେ ସାଇଁସାଇଁ
ଲାଗେ ମୋତେ ଯେତେ ଯହିଁ ମୋ ସମ-ବୟସୀ
ଯାଉଛନ୍ତି ଅଭିସାରେ ଅପଥ ଆବରି ।

ଚଞ୍ଚଳ ଚରଣେ ଦୁଇ କନକ ନୂପୁର
ରୁଣୁଝୁଣୁ ନାଦେ ବାଜେ, ଶୁଭଇ ଶିଞ୍ଜନ,
ରଜନୀ ମୋ ସହଚରୀ, ବୁଝଇ ପରାଣ
ସାରାଦିନ ଯାଏ ମୋର ପ୍ରତୀକ୍ଷାରେ ତାର ।

ଜାଣେନାହିଁ ଏ ଜଗତେ ପ୍ରୀତି କି ଦରବ,
ଲକ୍ଷ ଆଖି ଜଗିରହେ ମୋର ସରଣୀ ଯେଣୁ
ତିମିରର ବନ୍ୟା ସୃଜି ବୁଡ଼ାଏ ଧରଣୀ
ମଦିର ଅଞ୍ଜନ ବୋଳି ନୟନେ ନୟନେ -
ନିଦ୍ରିତ କରଇ ଧରା, ମୋହରି ସରଣୀ
ବିଜନ କରିବା ଲାଗି, ସଖୀ ସେ ଯେ ମୋର
ଗଭୀରୁ ଗଭୀର ହେଲେ ଉଲ୍ଲସଇ ବୁକୁ ।

ବାତାୟନ ମେଲି ଚାହେଁ, ନୀରବ ଆକାଶେ
ଜ୍ୟୋତିପୁଞ୍ଜ ଖସିପଡ଼େ ଏଣେତେଣେ କେତେ
ମୋତେ ଲାଗେ ସୁରପୁରେ ନନ୍ଦନକାନନେ
ଦେବଦେବୀ ମେଳେ ହୁଏ କଉତୁକ ଲୀଳା ।

ଲୁଚକାଳି ଖେଳୁଖେଳୁ ସୁରବାଳା ଗଳେ
ଦୋଳାୟିତ କଣ୍ଠହାରୁ ମାଣିକ ମୁକୁତା
ଖସିପଡ଼େ ଏଣେତେଣେ ଆଲୋକି ଅନ୍ଧାର ।

ଚଇତ୍ର ମଳୟ ବହେ ଫୁଲଗନ୍ଧ ଧରି
ଅଯାଚିତେ ଭରିଦିଏ ପୁର ଓ ପ୍ରାଙ୍ଗଣ
ବକୁଳ, ମାଳତୀ, ମଲ୍ଲୀ, ମୁକୁଳ ମହକେ
ବିଞ୍ଚିଦେଇ ଯାଏ ଶେଯେ କୁସୁମ ପରାଗ ।

ଶିହରି ଉଠଇ ତନୁ ଅନଙ୍ଗ ଆଶ୍ଳେଷେ
ଛନକି ଉଠଇ ମନ, ଉଛଳଇ ପ୍ରାଣ
ଲାଗେ ଖାଲି କିଏ ବସି ବିରହ ରାଇଜେ
ମିଳନ ମୁରଲୀ ଗାଏ କାହିଁ କେତେ ଦୂରେ ।

ରଜନୀ କହଇ କାନେ ବାରବାର କରି
"ଆସ ସଖି, ଆସ ଚାଲି, ପଥେ ନାହିଁ କେହି,
କାହା ନେତ୍ର ଜଗିନାହିଁ ସରଣୀ ତୁମର"
ପାଗଳ ହୁଅଇ ଚିତ୍ତ, ଲାଜ ମାନ ଭୟ
ହଜେ କାହିଁ, ଆସି ମୁହିଁ ପଥେ ହୁଏ ଉଭା ।

× × ×

ତୁମେ ଏକ ଚୁମ୍ବକର ହିମାଦ୍ରି ବିଶାଳ
କେମନ୍ତେ ରହନ୍ତି ମୁହିଁ ଲୌହ-ଶଳାକା ଯେ
ସ୍ଥିର ହୋଇ ଦୂରେ ସଖା, ଆପଣା ମନ୍ଦିରେ ?"



# କିଶୋରୀ

ଫୁଲର ମଧୁ ଚିବୁକେ ଛୁଇଁ
ଚମକି ଉଠେ ଭରମେ
ନବୀନା ବାଳା ସରମେ ।
ସପନପୁରୀ ଗୋପନ କଥା
ଭାଳଇ ବାଳା ହରଷେ
ନୂଆ ପୀରତି ପରଶେ ।

ଅତୀତ ଗଲା ଅତୀତେ ରହି
ଟେକିଲା ବାଳା ବଦନ
ନବୀନା ଯୁବା ନୟନେ ତାର
ନୟନ ହେଲା ମିଳନ,
ସରମରେ ସେ ସରମି ଗଲା
କନକ ଶରୀ ଘରମି ଗଲା
ବିଜୁଳି ସମ ଚମକି ଉଠି
ଶିହରି ଗଲା ପରାଣ ।

ଲାଜ ସରମେ ବସନ ଟାଣି
ଲାଜ ସରମ ତରଳା
ନୂଆ କିଶୋରୀ ସରଳା
ସରମ ତାପେ ଝାଉଁଳି ଗଲା
ମରମ ତାର ବିଳପି ଗଲା
ଭରସି ଆଉ ପାରେନା
ପାଦ ତା' ବୋଲ ମାନେନା ।

ପଣତ ତାର ପବନେ ଉଡ଼େ
ଚାହାଣୀରେ ତା' ଦାମିନୀ ଖେଳେ
କହଇ କଥା ସେ କେତେ ଛଳେ
ଚାଲଇ କେତେ ଛଟକେ
ମଦିରା ଭରା ଅଧରେ ତାର
କଜଳ କଳା ଚିକୁରେ ତାର
ଯୁବକ ମନ ଅଟକେ ।

ସରାଗ ମନେ ଚୋରା ପବନେ
ଫଗୁଣ ଆସି ଖେଳଇ
ଆମ୍ବ ବଉଳ ମହକ ତଳେ
ବାଳାର ମନ ଦୋଳଇ
ଆସିଲେ ଭାସି କୋଇଲି କୁହୁ
ଉଛୁଳି ଉଠେ ପୀରତି ମହୁ
ଭାଳଇ, କେବେ ପ୍ରେମିକ ବାହୁ
ସରାଗେ ଦେବ ବଢ଼ାଇ
ହୃଦୟ ତଳେ ପୁଲକ ଭରି
ଅସରା ଆଶା ମନରେ ଧରି
ବୁକୁରେ ନେବ ଜଡ଼ାଇ ॥

◆⁘◆

# ପ୍ରେୟସୀ

ନ ଦେଖିଲେ ତାକୁ ଦିନକ ପାଇଁ
ସଂସାରେ ଅସାର ଲାଗେ ଜୀବନ
ନିତିନିତି ମୁହିଁ ଦେଖେଁ ତାହାକୁ
ରଙ୍କୁଣୀ ପରି,
ତେବେ ଦେଖିବାକୁ ହୁଅଇ ମନ
ସୁନ୍ଦରୀ ପଣରେ ଯାଇଛି ସରି
ଚାହିଁଥାନ୍ତା ମୋତେ, ମୁହିଁ ତାହାକୁ
ଅନାଇ ଦେଖନ୍ତି ହୃଦୟ ଭରି ॥

ନ ଆସନ୍ତା ନିଦ ଆଖିକୁ ମୋର
ରାତି ଯାଇପଛେ ହେଉ ପାହାନ୍ତି
କି କଥା କଲେ ମୁଁ କି ତପ କଲେ
ପାଇବି ତାକୁ,
କହିଦିଅ ମୋତେ ହରଗଉରୀ
କହିଦେଲେ ଦେବି ଜୀବନଟାକୁ ।

ଆପଣାର ବୋଲି ପାଆନ୍ତି ଯଦି
ତାହାକୁ ମୋର
ସୁଖ ସୁହାଗରେ ଯାଆନ୍ତା ଦିନ
ସେ ହୁଅନ୍ତା ସହୀ, ମୁଁ ତ ତାହାର,
ଅଳତା ଗୋଡ଼ରେ ନାଆନ୍ତା ବସି
ଗଳାରେ ପିନ୍ଧନ୍ତା କୁସୁମ ହାର ।।

ବେଣୀ ବାନ୍ଧିଥାନ୍ତା ଦର୍ପଣେ ଦେଖି
ଏକାକୀ ବସି
ସୁହାଗେ ଡାକନ୍ତି ତାହାକୁ ମୋର
"ଆସଗୋ ଆସଗୋ ଆସ ପ୍ରେୟସୀ ! !"

ତାହାପାଇଁ ମୁହିଁ ଭାବଇ ଏତେ
ଦିବସ ରାତି;
ମୋ କଥା କି ସେହୁ ଭାବଇ କେବେ ?
ଭାବିଲେ ହୃଦୟ ହୁଏ କରତି ।।



# ଗିରିବର

କହ ଗିରିବର ଦୂର ରାଇଜରୁ
କଳା ମେଘମାଳା ଆସି
ଦୂର ରାଇଜର କି ବାରତା କହେ
ତୋହରି ଚୂଳିରେ ବସି ?

ଆକାଶକୁ ତୁହି ନୀରବ ମନରେ
ସଦା ରହିଥାଉ ଚାହିଁ
ଉଦାସ ପରାଣ ଉଦାସ ନୟନ
କେହି ତ ଜାଣିଲେ ନାହିଁ ।

ବରଷୁ ବରଷା ଚମକୁ ବିଜୁଳି
ସରାଗେ ଗରଜୁ ଘନ
ବହୁ ପଛେ ବାଆ ନଟଳଇ କେବେ
ତୋ ମନ, ତୋ ଯୋଗାସନ ।

ତୋ ଶରୀର ସିନା ପଥରରେ ଗଢ଼ା
ତୋ ପାଦରେ ଭାରି ଦମ୍ଭ
ତୋ ଶରୀରୁ ବହେ ଝରଣାର ଧାରା
ଚିତ୍ତ ତୃପ୍ତ ହୁଏ ଆମ୍ଭ ।



# ନିରାଶ ପଥିକ

ନୀରବେ ଲୋତକ ଅଞ୍ଚଳେ ପୋଛି ବିଜନେ
ଏକାକୀ ବୁଲେ ମୁଁ ସଂସାର ପଥେ ନୀରତେ,
ବେଦନାର ଗୁରୁ ପରାସ ଲାଗଇ ହୃଦୟେ
ଆପଣାର ହୋଇ ପଚାରେନି କେହି କିଞ୍ଚିତେ ।

ନିଦାଘ ମରୁରେ ଭ୍ରାନ୍ତ ତୃଷିତ ପଥିକ
ଜଳ ଲାଗି ଯେବେ ଜୀବନ ହୁଏ ମୋ ବିକଳ,
ଜଳଦେବ ବୋଲି ଛଳିଦିଅ ମୋତେ କାହିଁକି
ମାୟା ମରୀଚିକା ଦେଖାଇ ଲଭ ଗୋ କି ଫଳ ?

ମନେମନେ ଭାବେ, ଏଡ଼େ ଅଭାଗା ମୁଁ ଜଗତେ
ନାହିଁ ମୋର କିଛି ଯାପାଇଁ କରିବି ଗରବ,
କପାଳ ମୋହର ଏଡ଼େ ନିଆଁଲଗା କାହିଁକି ?
ଯେ ଦେଖିବ ମୋତେ ତାହାରି କରୁଣା ଝରିବ !

ଝରିପଡ଼େ ଲୁହ ଶୁଷ୍କ ନୟନୁ ଦି'ଧାରେ
କେହି କେବେ ଦିନେ ମୋ ଠାରେ କରୁଣା କରିଲେ;
ଆକାଶରେ ଯେବେ ଘୋଟିଥାଏ ଘନ ଜଳଦ
ବରଷେ ବରଷେ ଶୀକର ପବନ ବହିଲେ ।

ଯେତେଥିଲେ ମୋର ସଂଗୀ କିଶୋର ବୟସେ
ନବ ଯଉବନେ ପରଶେ ସରବେ ହରଷ,
ବେଦନା ଓ ବ୍ୟଥା, ମରମ ବିଦରା ନିରାଶା
ଉଛୁଳା ପରାଣ କରିନାହିଁ ତାଙ୍କୁ ପରଶ ।

ସୁଖର ସପନେ ସରବେ ଗୋ ଆଜି ବିଭୋର
ହରଷ ଗଙ୍ଗା ଯମୁନା ଝରଇ ବୁକୁରୁ
ଦାରୁଣ ଏ କଥା, ବଡ଼ ଦାରୁଣ ମୋ ଦେବତା
ହସର ରେଖାଟି ହରିନେଲେ ମୋର ଅଧରୁ ।

ଅଗାଧ ଜଳରେ ବୁଡ଼ିଗଲା ଲୋକ ଯେପରି
ଆଗରେ ଯା ପାଏ ଧରିବସେ ତାକୁ ବକଳେ,
ନିରାଶା ତିମିରେ ଶଙ୍କିତ ମୋର ଜୀବନ
ଧାଇଁଯାଏ ଥରେ ଆଶାର ଆଲୋକ ଦେଖିଲେ ।

ଛଳନା ଗୋ ସବୁ ଛଳନା, ଦାରୁଣ ତିମିର
ଆଶାର ଆଲୋକେ ଭରିଯାଏ ଘନ ତମସା,
ତିମିର ପରଶେ ଲିଭିଆସେ ପ୍ରାଣ ପ୍ରଦୀପ
ହେବନିକି କେବେ ଜୀବନେ ଆଲୋକ ବରଷା ??



# ଉର୍ବଶୀ

ନୁହଁ ମାତା, ନୁହଁ କନ୍ୟା, ନୁହଁ ବଧୂ, ସୁନ୍ଦରୀ ରୂପସୀ,
ହେ ନନ୍ଦନବାସିନୀ ଉର୍ବଶୀ !
ଗୋଷ୍ଠେ ଯେବେ ସନ୍ଧ୍ୟା ଆସେ ସ୍ୱର୍ଣ୍ଣାଞ୍ଚଳେ ଶରୀର ଆବରି
ତୁମେ କେଉଁ ଗୃହପ୍ରାନ୍ତେ ଜାଳ ନାହିଁ ସନ୍ଧ୍ୟା-ଦୀପ ଧରି,
ଦ୍ୱିଧା ବିଜଡ଼ିତ ପଦେ, କମ୍ପ୍ରବକ୍ଷେ, ଆନତ ନୟନେ
ନିର୍ଜନ ଲଗନେ
ଉଷାର ଉଦୟ ସମ ଅନବଗୁଣ୍ଠିତା
ତୁମେ ଅକୁଣ୍ଠିତା ।

ବୃନ୍ତହୀନ ପୁଷ୍ପସମ ଆପଣାକୁ ଆପଣେ ବିକାଶି
କେବେ ତୁମେ ଫୁଟିଲ ଉର୍ବଶୀ !
ଆଦିମ ବସନ୍ତ ପ୍ରାତେ ଉଠିଥିଲ ମନ୍ଥିତ ସାଗରେ
ଦକ୍ଷ କରେ ସୁଧାପାତ୍ର, ବିଷଭାଣ୍ଡ ଘେନି ବାମ କରେ
ତରଙ୍ଗିତ ମହାସିନ୍ଧୁ ମନ୍ତ୍ର-ଶାନ୍ତ ଭୁଜଙ୍ଗମ ବତ
ପଡ଼ିଥିଲା ପଦପ୍ରାନ୍ତେ ଉଚ୍ଛ୍ୱସିତ ଫଣା ଲକ୍ଷଶତ
କରି ଅବନତ ।
କୁନ୍ଦଶୁଭ୍ର ନଗ୍ନକାନ୍ତି ସୁରେନ୍ଦ୍ର ବନ୍ଦିତା
ତୁମେ ଅନିନ୍ଦିତା ।

କେବେହେଲେ ନ ଥିଲକି ମୁକୁଳିକା ବାଳିକା ବୟସୀ
ହେ ଅନନ୍ତ ଯୌବନା ଉର୍ବଶୀ !
ଅନ୍ଧାର ପାତାଳପୁରେ କାହାଘରେ ବସି ଗୋ ନିରୋଳା
ମାଣିକ୍ୟ ମୁକୁତା ଘେନି କରିଥିଲ ଶୈଶବର ଖେଳା,
ରତ୍ନ-ଦୀପ ଦୀପ୍ତକକ୍ଷେ ଶୁଣି ସିନ୍ଧୁ କଲ୍ଲୋଳ କବିତା

ଅକଳଙ୍କ ହାସ୍ୟମୁଖେ ପ୍ରବାଳ ପଲଙ୍କେ ତୁମେ ହୁଅ ଗୋ ନିଦ୍ରିତା
କାହା କୋଳାଗ୍ରତେ
ଜାଗିଲ ବିଶ୍ୱରେ ଯେବେ, ଯୌବନେ ଗଠିତା,
ପୂର୍ଣ୍ଣ ପ୍ରସ୍ଫୁଟିତା ।
ଯୁଗ ଯୁଗାନ୍ତରୁ ତୁମେ କେବଳ ଯେ ବିଶ୍ୱର ପ୍ରେୟସୀ,
ଗୋ ଅପୂର୍ବ ବରଣା ଉର୍ବଶୀ !
ମୁନିଗଣ ଧ୍ୟାନଭାଂଗି ଦିଏ ପଦେ ତପସ୍ୟାର ଫଳ
ତୁମରି କଟାକ୍ଷପାତେ ତ୍ରିଭୁବନ ଯୌବନ-ଚଞ୍ଚଳ,
ତୁମରି ମଦିରା ଗନ୍ଧେ ଅନ୍ଧବାୟୁ ବହଇ ଚକିତେ
ମଧୁମତ୍ତ ଭୃଙ୍ଗସମ ମୁଗ୍ଧ କବି ଫେରେ ଲୁବ୍ଧ ଚିତ୍ତେ
ଉଦ୍ଦାମ ସଂଗୀତେ ।
ନୂପୁର ଗୁଞ୍ଜରି ଯାଅ ଆକୁଳ ଅଞ୍ଚଳା
ବିଦ୍ୟୁତ-ଚଞ୍ଚଳା ।

ସୁରସଭା ତଳେ ଯେବେ ନୃତ୍ୟକର ପୁଲକେ ଉଲ୍ଲସି
ଗୋ କଲ୍ଲୋଳ-ହିଲ୍ଲୋଳା ଉର୍ବଶୀ !
ଛନ୍ଦେଛନ୍ଦେ ନାଚିଉଠେ ସିନ୍ଧୁ ବକ୍ଷେ ତରଙ୍ଗର ଦଳ
ଶସ୍ୟଶୀର୍ଷ-ପୁଲକରେ କମ୍ପିଉଠେ ଧରାର ଅଞ୍ଚଳ,
ତବ ସ୍ତନହାରୁ ନଭେ ଖସିପଡ଼େ ଇତସ୍ତତଃ ତାରା,
ଅକସ୍ମାତ ପୁରୁଷର ବକ୍ଷସ୍ଥଳେ ଚିତ୍ତ ଆତ୍ମହରା
ନାଚେ ରକ୍ତଧାରା ।
ଦିଗନ୍ତେ ମେଖଳା ତବ ଛିଡ଼େ ଆଚମ୍ବିତେ
ଅୟି ଅସମ୍ବୃତେ !

ସୂର୍ଯ୍ୟର ଉଦୟାଚଳେ ମୂର୍ତ୍ତିମତୀ ତୁମେ ଗୋ ଉଷସୀ,
ଗୋ ଭୁବନ ମୋହିନୀ ଉର୍ବଶୀ !
ଜଗତର ଅଶ୍ରୁଧାରେ ଧୌତ ତବ ତନୁର ସୁଷମା

ତ୍ରିଲୋକର ହୃଦରକ୍ତେ ଅଙ୍କାତବ ଚରଣ ଶୋଣିମା
ମୁକ୍ତବେଣୀ, ବିବସନା, ବିକଶିତ ବିଶ୍ୱବାସନାର
ଅରବିନ୍ଦ ମଧ୍ୟସ୍ଥଳେ ପାଦପଦ୍ମ ରଖିଛ ତୁମର
ଅତି ଲଘୁଭାର ।
ଅଖିଳ ମାନସ-ସ୍ୱର୍ଗେ ଅନନ୍ତ ରଂଗିନୀ
ଗୋ ସ୍ୱପ୍ନ-ସଂଗିନୀ !

ଶୁଣ ଆଗୋ, ଚତୁର୍ଦ୍ଦିଗେ ତୁମ ଲାଗି କାନ୍ଦୁଛି କ୍ରନ୍ଦସୀ,
ଗୋ ନିଷ୍ଠୁରା ବଧିରା ଉର୍ବଶୀ !
ଆଦ୍ୟଯୁଗ ପୁରାତନ ଏ ଜଗତେ ଫେରିବକି ଆଉ ?
ଅତଳ ଅକୂଳ ଗର୍ଭୁ ସିକ୍ତ କେଶେ ଉଠିବକି ଆଉ ?
ପ୍ରଥମ ସେ ତନୁରୂପ ଦେଖାଯିବ ପ୍ରଥମ ପ୍ରଭାତେ,
ସର୍ବାଙ୍ଗ କାନ୍ଦିବ ତୁମ ନିଖିଳର ନୟନ-ଆଘାତେ
ବାରିବିନ୍ଦୁ ପାତେ ।
ଅକସ୍ମାତ୍ ମହାମ୍ବୁଧି ଅପୂର୍ବ ସଂଗୀତେ
ଗାଏ ପୁଲକିତେ ।

ଫେରିବନି, ଫେରିବନି, ଅସ୍ତଗାମୀ ସେ ଗୌରବ ଶଶୀ
ଅସ୍ତାଚଳବାସିନୀ ଉର୍ବଶୀ !
ତେଣୁ ଆଜି ଧରାତଳେ ବସନ୍ତର ଆନନ୍ଦ-ଉଚ୍ଛ୍ୱାସେ
କାହା ଚିର ବିରହର ଦୀର୍ଘଶ୍ୱାସ ମିଶି ବହି ଆସେ,
ପୂର୍ଣ୍ଣିମା ନିଶିଥେ ଯେବେ ଦଶଦିଗ ଉଚ୍ଛୁଳାଇ ହସି
ଦୂର ସ୍ମୃତି କେଉଁଦିଗୁ ବଜାଏ ତା ବ୍ୟାକୁଳ ବଇଁଶୀ
ଝରେ ଅଶ୍ରୁରାଶି ।
ତେବେ ଆଶା ଜାଗି ରହେ ପ୍ରାଣର କ୍ରନ୍ଦନେ
ଅୟି ଅବନ୍ଧନେ !

*( କବିଗୁରୁ ରବୀନ୍ଦ୍ରନାଥଙ୍କ 'ଚିତ୍ରା' କବିତାଗ୍ରନ୍ଥରୁ 'ଉର୍ବଶୀ' କବିତାର ଭାଷାନ୍ତର )*

# ଦେବତାର ଗ୍ରାସ

ଗ୍ରାମେଗ୍ରାମେ ଏଇ ବାର୍ତ୍ତା ରଟିଗଲା କ୍ରମେ
ମିଶ୍ର ମହାଶୟ ଯିବେ ସାଗର ସଂଗମେ ।
ତୀର୍ଥସ୍ନାନ ଲାଗି ସଂଗୀଦଳ ଗଲେ ଜୁଟି
ବାଳବୃଦ୍ଧନରନାରୀ, ନୌକା ଦୁଇଟି
ପ୍ରସ୍ତୁତ ରହିଲା ଘାଟେ । ପୁଣ୍ୟ ଲୋଭାତୁର -
ମୋକ୍ଷଦା କହିଲା ଆସି, "ହେ ମିଶ୍ର-ଠାକୁର !
ମୁଁ ତୁମର ହେବି ସାଥି ।" ବିଧବା ଯୁବତୀ,
ଦୁଇଟି କରୁଣ ଆଖି ମାନେନା ଯୁକତି,
କେବଳ ମିନତି କରେ - ତାର ଅନୁନୟ
ଏଡ଼ିବା କଠିନ ବଡ଼ । "ସ୍ଥାନ କାହିଁ କହ ?"
ମିଶ୍ର ଯେ କହିଲେ ତାକୁ । ତାଙ୍କ ପାଦ ଧରି
ବିଧବା କହିଲା କାନ୍ଦି, "ସ୍ଥାନ ନେବି କରି
ଯେକୌଣସି ମତେ ଟିକେ ।" ସିକ୍ତ ହେଲା ମନ
ତଥାପି ଯେ ଦ୍ୱିଧାଭରେ କହିଲେ ବ୍ରାହ୍ମଣ,
"ନାବାଳକ ପିଲାଟି ତୋ ରହିବ କିପରି ?"
ଉତ୍ତର କରିଲା ନାରୀ, କେତେ ଆଶାଧରି
"ଗୋପାଳ ? ରହିବ ତାର ମାଉସୀ ପାଖରେ
ଭୋଗିଥିଲି ବହୁଦିନ ସୂତିକା ଜ୍ୱରରେ,
ବଞ୍ଚିବି ନଥିଲା ଆଶା ତା'ର ଜନ୍ମ-ପରେ
ଅନ୍ନଦା ସେକାଳେ ତାକୁ ନିଜ ପିଲାପରି
ସ୍ତନ୍ୟ ଦେଇ ସ୍ନେହ ଦେଇ କରିଛି ଏପରି,
ମଣିଷ କରିଛି ତାକୁ ସ୍ନେହ ଯତ୍ନ ଭରେ
ମାଆ କୋଳ ଛାଡ଼ି ତେଣୁ ମାଉସୀ ଆଦରେ ।

ଦୁର୍ଦ୍ଦାନ୍ତ, ମାନେନା କାʼକୁ, କରିଲେ ଶାସନ
ମାଉସୀ ତାʼ ଅଶ୍ରୁ ଜଳେ ଭସାଇ ନୟନ
କୋଳେ ତାକୁ ନିଏ ଟାଣି, ସେ ରହିବ ସୁଖେ
ମାʼଠାରୁ ଆପଣାର ମାଉସୀର ବୁକେ ।"

ସମ୍ମତ ହୋଇଲେ ବିପ୍ର । ମୋକ୍ଷଦା ସତ୍ୱର
ପ୍ରସ୍ତୁତ ହୋଇଲା ବାନ୍ଧି ଜିନିଷ-ପତର ।
ପ୍ରଣମିଲେ ଗୁରୁଜନେ, ସଖୀ ଦଳବଳେ
ଭସାଇ ବିଦାୟ କାଳେ ଶୋକ ଅଶ୍ରୁ ଜଳେ ।
ଘାଟେ ଆସି ଦେଖେ, ତାର ଆଗେ ଆସି ସେଠି
ଗୋପାଳ ରହିଛି ବସି ତରୀପରେ ଉଠି
ନିଶ୍ଚିନ୍ତ ନୀରବେ । "ତୁହି ଏଠି କାହିଁକିରେ ?"
ମାଆ ପଚାରିଲେ କହେ "ଯିବି ମୁଁ ସାଗରେ ।"
"ସାଗରକୁ ଯିବୁ ଆରେ ଦୁଷ୍ଟ ଅମାନିଆ ?
କହୁଛି ମୁଁ ନଉକାରୁ ଧୀରେ ଓହ୍ଲାଇଆ ।"
ସେ କହିଲା ସେହିକଥା - "ଯିବି ମୁଁ ସାଗରେ ।"
ଯେତେ ତାʼ ମାଆ ବାହୁଧରି ଟଣାଟଣି କରେ
ଧରେ ନଉକାକୁ ଭିଡ଼ି । ତେଣୁ ଅବଶେଷେ
ବ୍ରାହ୍ମଣ କରୁଣ ସ୍ନେହେ କହିଲେ ଆଶ୍ୱାସେ
'ହଉ ଆସୁ ।' ମାʼ ତାର କହେ କ୍ରୋଧ ଛଳେ -
"ଚାଲ୍ ତୋତେ ଦେଇଦେବି ସାଗରର ଜଳେ ।"
ଯହୁଁ ଏହିକଥା ଗଲା ଆପଣାର କାନେ
ମାଆ ହୃଦ ହାଣିହେଲା ଅନୁତାପ ବାଣେ ।
ମୁହୂର୍ତ୍ତେ ଉଠିଲା କାନ୍ଦି ମୁଦି ତାʼ ନୟନ
'ନାରାୟଣ ନାରାୟଣ' କରିଲା ସ୍ମରଣ ।
ପୁତ୍ରକୁ କୋଳରେ ଧରି ତାର ସର୍ବ ଦେହେ
କରୁଣ କଲ୍ୟାଣ ହସ୍ତ ବୁଲାଇଲା ସ୍ନେହେ ।

ମିଶ୍ରେ ତାଙ୍କୁ ଡାକି ଧୀରେ ଥିରିଥିରି କହେ,
'ଏହିପରି କଥା କେବେ କହିବାର ନୁହେଁ ।'

ଗୋପାଳ ସଂଗରେ ଯିବ ସ୍ଥିର ହେଲା କଥା
ଅନ୍ନଦା ଲୋକଙ୍କ ମୁଖୁ ଶୁଣି ସେ ବାରତା
ଛୁଟିଆସେ କହେ, ବାପ, କାହିଁ ଯିବୁ ଆରେ ?
ଗୋପାଳ କହିଲା ହସି, ଯିବି ମୁଁ ସାଗରେ,
ଫେରିବି ପୁଣି ମାଉସୀ । ପାଗଳ ପରାଏ
ଅନ୍ନଦା କହିଲା ଡାକି, ମିଶ୍ର ମହାଶୟ,
ବଡ଼ ଯେ ଅଝଟ ପିଲା ଗୋପାଳ ମୋହର
କେ ତାହାକୁ ସମ୍ଭାଳିବ ! ଜନ୍ମରୁ ତାହାର
ମାଉସୀକୁ ଛାଡ଼ି ସେତ କେଭେ ରହିନାହିଁ
କେଉଁଠିକି ନେଇଯିବ, ଦିଅ ହେ ଫେରାଇ ।

ଗୋପାଳ କହିଲା, ମୁହିଁ ଯିବି ତ ସାଗରେ
ପୁଣି ମୁଁ ଆସିବି ଫେରି । ବିପ୍ର ସ୍ନେହଭରେ -
କହିଲେ, "ମୁଁ ଯେ ପର୍ଯ୍ୟନ୍ତ ସଂଗେ ଅଛି ରହି
ତୁମର ଗୋପାଳ ଲାଗି କିଛି ଭୟ ନାହିଁ ।
ଏବେତ ଶୀତର ଦିନ, ଶାନ୍ତ ନଦୀ ନଦ,
ଅନେକ ଯାତ୍ରୀଙ୍କ ମେଳା, ବାଟରେ ବିପଦ
କିଛିନାହିଁ । ଯାତାୟାତେ ମାସ ଦୁଇକାଳ -
ପରେ ମୁଁ ଫେରାଇ ଦେବି ତୁମର ଗୋପାଳ ।

ଶୁଭକ୍ଷଣେ ଦୁର୍ଗା ସ୍ମରି ନୌକା ଦେଲା ଛାଡ଼ି
ଘାଟରେ ରହିଲେ ଠିଆ ଯେତେ କୁଳନାରୀ,
ଅଶ୍ରୁସିକ୍ତ ହେମନ୍ତର ପ୍ରଭାତ ଶିଶିରେ
ଛଳଛଳ କରେ ଗ୍ରାମ ଚୂର୍ଣ୍ଣୀନଦୀ ତୀରେ ।

ଯାତ୍ରୀଦଳ ବାହୁଡ଼ିଲେ ଶେଷ ହେଲା ମେଳା
ତରଣୀ ତୀରରେ ବନ୍ଧା, ଅପରାହ୍ଣ ବେଳା
ଜୁଆରକୁ ଚାହିଁ । କୌତୂହଳ ଅବସାନ,
କାନ୍ଦୁଅଛି ଗୋପାଳର ଗୃହଗତ ପ୍ରାଣ
ମାଉସୀ ପଡ଼ଇ ମନେ । ଚତୁର୍ଦ୍ଦିଗେ ଜଳ
ଦେଖିଦେଖି ଚିତ୍ତ ତାର ହୋଇଛି ବିକଳ ।
ମସୃଣ ଚିକ୍‌କଣ କୃଷ୍ଣ କୁଟିଳ ନିଷ୍ଠୁର
ଲୋଲୁପ ଚଞ୍ଚଳ ଜିହ୍ୱା ସର୍ପସମ କ୍ରୂର
ଖଳ ଜଳ ଛଳ-ଭରା, ଟେକି ଲକ୍ଷ ଫଣା
ଫଁ ଫଁ ଗରଜଇ, କରଇ କାମନା -
ମୃତ୍ତିକାର ଶିଶୁଙ୍କର ଲାଳାୟିତ ମୁଖ ।
ହେ ମାଟି ହେ ସ୍ନେହମୟୀ, ଅୟି ମୌନ-ମୁକ,
ଅୟି ସ୍ଥିର, ଅୟି ଧ୍ରୁବ, ଅୟି ପୁରାତନ,
ସର୍ବ-ଉପଦ୍ରବ ସହା ଆନନ୍ଦ ଭବନ
ଶ୍ୟାମଳ-କୋମଳା, ଯହିଁ ଯେ କେହି ବି ଥାଉ
ଅଦୃଶ୍ୟ ଦିବାହୁ ମେଲି ତାକୁ ଟାଣି ନେଉ
ଅହରହ ଅୟି ମୁଗ୍‌ଧେ, କି ବିପୁଳ ସ୍ନେହେ
ଦିଗନ୍ତ ବିସ୍ତୃତ ତବ ଶାନ୍ତ ବକ୍ଷେ ଆହେ !

ଚଞ୍ଚଳ ବାଳକ ଆସି ପ୍ରତି କ୍ଷଣେକ୍ଷଣେ
ଅଧୀର ଉତ୍ସୁକ କଣ୍ଠେ ପୁଛଇ ବ୍ରାହ୍ମଣେ
"ଗୋସାଇଁ ହେ କେତେବେଳେ ଆସିବ ଜୁଆର ?"
ସହସା ନିଶ୍ଚଳ ଜଳେ ଆବେଗ ସଞ୍ଚାର
ଦୁଇକୂଳ ଚେତାଇଲା ଅଶାର ସମ୍ବାଦେ
ବୁଲିଗଲା ତରୀମୁଖ, ମୃଦୁ ଆର୍ତ୍ତନାଦେ ।
କାଛିରେ ପଡ଼ିଲା ଟାଣ, କଳଶବ୍ଦ ସ୍ୱରେ
ସିନ୍ଧୁର ବିଜୟ ରଥ ପଶିଲା ନଦୀରେ

ଆସିଲା ଜୁଆର । ମାଝି ଦେବତାରେ ସ୍ମରି
ସହସା ଉତ୍ତର ମୁଖେ ମେଲିଦେଲା ତରୀ ।
ବାଳକ ଗୋପାଳ ଆସି ବ୍ରାହ୍ମଣେ ପଚାରେ -
"ଘରେ ଯାଇ ପହଞ୍ଚିବା କେତେଦିନ ପରେ ?"

ସୂର୍ଯ୍ୟ ଅସ୍ତ ନ ଯାଉଣୁ, କ୍ରୋଶ ଦୁଇପରେ
ଉତ୍ତର ବାୟୁର ବେଗ ବଢ଼ିଲା ପ୍ରଖରେ ।
ରୂପନାରାୟଣ ମୁହେଁ ପଡ଼ି ବାଲିଚର
ସଂକୀର୍ଣ୍ଣ ନଦୀର ପଥେ ଲାଗିଲା ସମର
ଜୁଆରର ସ୍ରୋତ ଆଉ ଉତ୍ତରା ସମୀରେ
ଉତ୍ତାଳ ଉଦ୍ଦାମ । 'ତରୀ ଭିଡ଼ାଅ ହେ ତୀରେ'
ଉଚ୍ଚକଣ୍ଠେ ବାରମ୍ବାର କହେ ଯାତ୍ରୀଦଳ ।
କାହିଁ ତୀର ! ଚତୁର୍ଦ୍ଦିଗେ କ୍ଷିପ୍ତୋନ୍ମତ ଜଳ
ଆପଣାର ରୁଦ୍ର ନୃତ୍ୟେ ଦିଏ କରତାଳି
ଲକ୍ଷଲକ୍ଷ ହାତେ । ଦେଇ ଆକାଶକୁ ଗାଳି
ଫେନିଳ ଆକ୍ରୋଶେ । ଏକ ଦିଗେ ଯାଏ ଦେଖା
ଅତିଦୂର ତଟପ୍ରାନ୍ତେ ନୀଳ ବନରେଖା,
ଅନ୍ୟଦିଗେ ଲୁବ୍‌ଧ କ୍ଷୁବ୍‌ଧ ହିଂସ୍ର ବାରିରାଶି
ପ୍ରଶାନ୍ତ ସୂର୍ଯ୍ୟାସ୍ତ ଦିଗେ ଉଠୁଛି ଉଚ୍ଛ୍ୱସି
ଉଦ୍ଧତ ବିଦ୍ରୋହ ଭରେ ନ ମାନେ ଆହୁଲା
ଟଳମଳ ହୁଏ ତରୀ କ୍ଷିପ୍ତ ମତୁଆଲା
ମୂଢ଼ ସମ । ବହେ ତୀବ୍ର ଶୀତଳ ପବନ
ମହାତ୍ରାସେ କମ୍ପୁଛନ୍ତି ନର ନାରୀଗଣ ।
ଅଚାନକ ପରିସ୍ଥିତି କେହି ହତବାକ୍
କେହିବା କ୍ରନ୍ଦନ କରେ ଛାଡ଼ି ଊର୍ଦ୍ଧ୍ୱେଡାକ
ଡାକି ଆତ୍ମଜନେ । ମିଶ୍ରେ ଶୁଷ୍କ ପାଂଶୁ ମୁଖେ
ଚକ୍ଷୁ ମୁଦି ଜପେ ରତ । ଜନନୀର ବୁକେ

ଗୋପାଳ ଲୁଚାଇ ମୁହଁ କମ୍ପୁଛି ନିରବେ ।
କହିଲା ବିପନ୍ନ ମାଝି ଚେତାଇ ସରବେ -
"କେ ତୁମ ଭିତରୁ ଫାଙ୍କି ଦେଇଛ ବାବାଙ୍କୁ
ମାନସିକ ଯା' କରିଛ ଦେଇନାହଁ ତାଙ୍କୁ ।
ଅସମୟେ ଏ ତୋଫାନ, ଅଶୁଭ ଏ ବେଳା,
ମାନସିକ କର ରକ୍ଷା, କରନାହିଁ ଖେଳା -
କ୍ରୁଦ୍ଧ ଦେବତାର ସଂଗେ ଥିଲା ଯାର ଯାହା
ଅର୍ଥ-ବସ୍ତ୍ର ଫିଙ୍ଗିଦେଲେ ଜଳେ ସବୁ ତାହା
ନ କରି ବିଚାର । ତେବେ, ସାମାନ୍ୟ ପଲକେ
ତରୀରେ ପଶିଲା ଜଳ ଦାରୁଣ ଝଲକେ ।
ମାଝିକହେ ପୁନର୍ବାର, ଦେବତାର ଧନ
ଫେରାଇ କେ ନେଇଯାଏ ମୋ କଥାଟି ମାନ ।
ବ୍ରାହ୍ମଣ ସହସା ଉଠି କହିଲେ ଝଟତି
ମୋକ୍ଷଦାକୁ ଲକ୍ଷ୍ୟକରି, ଏହି ସେ ଯୁବତୀ,
ଦେବତାଙ୍କୁ ସଁପିସାରି ଆପଣାର ପୁଅ
ଚୋରିକରି ନେଇଯାଏ । ତାକୁ ଫିଙ୍ଗିଦିଅ ।
ଏକ ବାକ୍ୟେ ଗର୍ଜିଉଠି କହନ୍ତି ନିଷ୍ଠୁର -
ଯାତ୍ରୀ ସବୁ, କହେ ନାରୀ, ହେ ଗୋସାଇଁ ବର,
ରକ୍ଷାକର, ରକ୍ଷାକର । ଦୁଇ ଦୃଢ଼କରେ
ଗୋପାଳକୁ ପ୍ରାଣପଣେ ବକ୍ଷେ ଚାପିଧରେ ।
ଭର୍ତ୍ସନାରେ ଗର୍ଜିଉଠି କହିଲେ ବ୍ରାହ୍ମଣ,
"ମୁହିଁ ତୋର ରକ୍ଷାକର୍ତ୍ତା!" ରୋଷେ ଅଚେତନ ।
"ମା' ହୋଇ ନିଜ ପୁତ୍ରେ ଦେଲୁ ଦେବତାକୁ
ଶେଷକାଳେ ମୁହିଁ ରକ୍ଷା କରିବି ତାହାକୁ ?
ଶୁଝ ଦେବତାର ଋଣ, ଅନ୍ୟ ଗତି ନାହିଁ
ସତ୍ୟ ଲଙ୍ଘି ଏତେ ପ୍ରାଣୀ ମାରିବୁ ବୁଡ଼ାଇ ?"
ମୋକ୍ଷଦା କହିଲା, "ଅତି ମୂର୍ଖ ନାରୀ ମୁହିଁ

କି କହିଛି ରାଗବଶେ ଆହେ ବିଶ୍ୱସାଇଁ
ସେହି ସତ୍ୟ ହେଲା ! ସେ ଯେ ମିଥ୍ୟା କେତେ କାହିଁ
ଶୁଣି କିନ୍ତୁ ସେ କଥା କି ବୁଝନା ଗୋସାଇଁ ?
ଖାଲିକି ମୁଖର ବାକ୍ୟ ଶୁଣିଛ ଦେବତା ?
ଶୁଣିନକି ଜନନୀର ଅନ୍ତରର କଥା ?
କହୁକହୁ ନୌକାବାହୀ ମାଝି ସବୁ ମିଳି
ବଳାତ୍କାରେ ଝିଙ୍କିନେଲେ ମା' କୋଳରୁ କାଢ଼ି
ଅବୋଧ ଗୋପାଳେ । ମିଶ୍ର ମୁଦି ଦୁଇଆଖି
ରହିଲେ ବୁଲାଇ ମୁଖ କାନେ ହାତ ଢାଙ୍କି
ଦାନ୍ତରେ ଦାନ୍ତକୁ ଚିପି । କେ ତାଙ୍କୁ ସହସା
ମର୍ମେମର୍ମେ ଆଘାତିଲା ବିଦ୍ୟୁତର କଶା ।
ଦଂଶିଲା ବୃଶ୍ଚିକ ଦଂଶ । 'ମାଉସୀ ! ମାଉସୀ !'
ବିନ୍ଧିଲା ବହ୍ନି-ଶଳାକା ରୁଦ୍ଧ କର୍ଣ୍ଣେ ଆସି
ନିରୁପାୟ ଅନାଥର ଅନ୍ତିମ ସେ ଡାକ ।
ଚିତ୍କାର କରିଲେ ବିପ୍ର, 'ରଖ ! ରଖ ! ରଖ !'
ଚକିତେ ଦେଖିଲେ ଚାହିଁ ମୂର୍ଚ୍ଛିଅଛି ପଡ଼ି
ମୋକ୍ଷଦା ଚରଣେ ତାଙ୍କ । ମୁହୂର୍ତ୍ତେ ନଗଡ଼ି
ଫେନୀଳ ତରଙ୍ଗ ମେଳେ ମେଲି ଆର୍ତ୍ତ ଆଖି
ବୁଡ଼ିଲା ବାଳକ ଥରେ 'ମାଉସୀଲୋ' ଡାକି -
ଅନନ୍ତ ତିମିର ତଳେ । ଦୁଇ ହାତ ମୁଠି
ଅତ୍ୟନ୍ତ ବ୍ୟାକୁଳ ଭରେ ଊର୍ଦ୍ଧ୍ୱଆଡ଼େ ଉଠି
ଆକାଶେ ଆଶ୍ରୟ ଖୋଜି ବୁଡ଼ିଲା ହତାଶେ ।
'ଫେରାଇ ଆଣିବି ତୋତେ' - କହି ଊର୍ଦ୍ଧ୍ୱଶ୍ୱାସେ
ବ୍ରାହ୍ମଣ ମୁହୂର୍ତ୍ତ ମଧ୍ୟେ ଲମ୍ଫଦେଲେ ଜଳେ,
ଆଉ ଉଠିଲେନି ସୂର୍ଯ୍ୟ ଗଲେ ଅସ୍ତାଚଳେ ।

*(କବିଗୁରୁ ରବୀନ୍ଦ୍ରନାଥଙ୍କ 'କଥା' କବିତାଗ୍ରନ୍ଥରୁ 'ଦେବତାର ଗ୍ରାସ' କବିତାର ଓଡ଼ିଆ ରୂପାନ୍ତର)*

# ଆଷାଢ଼

ଏଇ ଆଷାଢ଼ର ସାନ୍ଦ୍ର ବାଦଲ ମେଘ ଗରଜନ ଥରେ
ଦେଇ ଯାଇଥିଲା କବିର ପରାଣେ ଗଭୀର ବିରହ ବ୍ୟଥା
କେତେ ଯୁଗତଳେ ଗାଇଥିଲା କବି କି ଗୀତ କାତର ପ୍ରାଣେ
'ମେଘଦୂତ' ଆଜି ଲାଳିତ ଛନ୍ଦେ ଗାଉଅଛି ସେହି ଗାଥା ।
ସେହି ପୁଣି ଆଜି ଆସିଛି ନୟନେ କଳା ଅଞ୍ଜନ ମାଖି
ବିରହ-ଅଧୀର ଚିରସୁନ୍ଦର ଛଳଛଳ କରି ଆଖି ।

× × ×

କଜଳ ନୟନେ କଳା ଅଞ୍ଜନ ଘେନି ରେ ଆଷାଢ଼, ଆସିଲା
ସାଥିହରା ନବ ତରୁଣ ତରୁଣୀ ଅନ୍ତର ଏବେ ଥରିବ,
ଗଗନେ ଗଗନେ ମନ୍ଦ୍ର ମଧୁର ମେଘଡମ୍ବରୁ ବାଜିଲା
ପ୍ରିୟତମ ଯାର ପରବାସେ ତାର ନୟନରୁ ବାରି ସରିବ ।

ଆଷାଢ଼ ଗଗନେ ନୀଳ ନବଘନ ଦେଖି ସୁକୁମାର ତରୁଣ
ପରବାସୀ ଆହା, କେତେ ଯେ କି କଥା ଉଚ୍ଛୁଳି ପଡ଼ିବ ଜୀବନେ,
ବରଷା ସଜଳ କୁସୁମେ କାହାର କାତର ଲୋତକ ବିଲୋକି
ସମବେଦନାର କାତର ଅଶ୍ରୁ ଉଚ୍ଛୁଳି ଉଠିବ ନୟନେ ।

ପ୍ରେୟସୀର ସାଥେ ଉଡ଼ି ଯାଉଥିବ କଳାମେଘ ତଳେ ବଳାକା
ନବବଧୂ ବସି ବାତାୟନ ପଥେ ଦେଖିବ କାତର ନୟନେ,
ଦୂରଦିଗ ତଳୁ ଆସୁଥିବ ଉଠି କଳା ମେଘମାଳା ହାଇରେ !
ନାହିଁ ପ୍ରିୟତମ, ତିନ୍ତି ଲୋତକେ ମରିବ ମରମେ ମରମେ ।

ମୟୂର ଆଜିରେ କେତେ ଯେ ନାଚିବ ପ୍ରେୟସୀକୁ ଧରି ବନରେ,
ମରାଳ-କାନରେ ସରସୀରେ କେତେ କି କଥା କହିବି ମରାଳୀ,
ତିମିରେ କୀଚକ- କୁଞ୍ଜେ କାହାରେ କେତେ ଯେ ଡାକିବି, ଡାହୁକ,
ପ୍ରେୟସୀରେ ଘେନି ଗହୀର ପାଟରେ ସପନ ରଚିବ ସରାଳୀ ।

ବନେ ବନେ ଆଜି ଲାଗିଯିବ କେଉଁ ବିରହିଣୀ ନୀଳ ଅଳତା,
ନୀପ ଡାଳେ ଡାଳେ ଫୁଟିଯିବ କେତେ ବାରିବିନୋଦିଆ କଳିକା
କିଆ ସହଚରୀ କେତକୀ କିଶୋରୀ ପୁଷ୍ପିତା ଆଜି ହେବ ଗୋ
ସରମେ ଶିହରି ରଜନୀ ତିମିରେ ଫୁଟିବ ସଜନୀ ଯୂଥିକା ।

ଆଷାଢ଼ ଯାମିନୀ ମଧୁଯାମିନୀ ଗୋ ଝରଝର ହେବ ବରଷା
ଚହଟି ଉଠିବ ଯୁଥି ପରିମଳ ରହିରହି ଆଜି କାନନେ
ଏଇ ପଥେ ଆଜି ଅଭିସାର କରି ରାଇରାଣୀ ଯିବେ ଯମୁନା
କିଆ କେତକୀର ସଜଳ ଗନ୍ଧ ମହକି ଉଠିବ ପବନେ ।

ତଟିନୀପ୍ରିୟର	କି କଥା ଆଷାଢ଼	କହିବ ତଟିନୀ କାନରେ
ଶିହରି ଉଠିବ	ଅଙ୍ଗ ସଖୀର	ଛନକି ଉଠିବ ମନ ଗୋ
ସ୍ୱୈରିଣୀ ପରି	ଧାଇଁବ ଅଧୀରେ	ଯୌବନ ମଦେ ମତ୍ତା
ଗୋଲାପୀ ବରଣ	ବସନେ ଆବୋରି	ସୁନ୍ଦର ଅପଘନ ଗୋ ।

କାହାର ବାରତା	ନବୀନ ବରଷା	ଦେବ ଧରଣୀରେ ଆଣିକି
ନବବଧୂ ପରି	ପୁଲକି ଉଠିବ	ଶ୍ୟାମାସୁନ୍ଦରୀ ଆଜି ଗୋ
ସାରା ଶର୍ବରୀ	ବାସର ଜାଗିବ	ନିଦ୍ରାବିହୀନ ଚକ୍ଷେ
ଅଙ୍ଗବସନ	ଯତନେ ସଜାଡ଼ି	କବରୀ କୁସୁମେ ସାଜି ଗୋ ।

ବଳାକାମାଳାର	ମାଳା ଘେନି ଗଲେ	ଉତ୍ତରୀ ମେଲି ଗଗନେ
ଆସ ଆସ ଆସ	ବିରହୀ ବନ୍ଧୁ,	ନୀରବ ଭୁବନ ରଜା ହେ,
ମେଘମହ୍ଲାର	ରାଗିଣୀରେ କରି	ବିଶ୍ୱର ହିଆ ପାଗଳ
ନୀଳ ନବଘନ	କେଳିକୁଞ୍ଜରେ	ମୋହନ ମୁରଲୀ ବଜା ହେ ।

*(ସହକାର - ୧୨ଶ ଭାଗ / ୩ୟ ସଂଖ୍ୟା / ଆଷାଢ଼ - ୧୩୩୮ ସାଲ)*

# ଶୁଆର ଦୁଃଖ

ବଡ଼ଭାଇ -

ଛାଡ଼ିଦେ ଛାଡ଼ିଦେ ଛାଡ଼ିଦେ ଶଶୀରେ
ମୋ ସୁନା ଭାଇଟି ପରା
ଛାଡ଼ିଦେ ତାହାକୁ ଉଡ଼ିଯାଉ ସେ ରେ
ସରୁ ତା ଦୁଃଖ ଅ-ସରା ।
ସୁନେଲି-ଶାଗୁଆ- ସୁନ୍ଦର ଦେହଟି
ଶୁଖିଗଲାଣିରେ ଅନା
ଲୁହା ପିଞ୍ଜରାରେ ଅଣ ଓସାରିରେ
ଲଭୁଛି ବଡ଼ ଯାତନା ।
ଛାଡ଼ିଦେ ଛାଡ଼ିଦେ ଛାଡ଼ିଦେ ଶଶୀରେ
ଉଡ଼ିଯାଉ ଦୂରବନେ
ମାଆ ଭାଇ ସଂଗେ ଯେଉଁ ବନେ ଥିଲା
ପଡୁଥିବ ତାର ମନେ ।

ସାନଭାଇ -

ନାହିଁ ନାହିଁ ଭାଇ, ସେକଥା କହନା
ଛାଡ଼ି ମୁଁ ତ ଦେବିନାହିଁ
ଛାଡ଼ିଦେଲେ ଯାକୁ ଏପରି ଶୁଆଟି
ଖୋଜିଲେ ପାଇବି କାହିଁ ?

କେତେ ଖୋଜି ଖୋଜି ଏତେ ଦିନକକରେ
ପାଇଛି ଶୁଆଟି ମୁହିଁ
ଯେତେ ବୁଝାଇଲେ କହିଲେ କି ହେବ
ଛାଡ଼ି ମୁଁ ତ ଦେବିନାହିଁ ।

ବଡ଼ଭାଇ -

କଟକରୁ ମୁଁ ରେ ଛୁଟିରେ ଆସିଲେ
କେତେ ବହି କେତେ ଛବି
କେତେ ଭଲ ଚିଜ ସୁନ୍ଦର ଖେଳଣା
ତୋହ ପାଇଁ ଆଣି ଦେବି ।
ଲୁହା ପିଞ୍ଜରାର ଗାରଦରେ ରହି
ସରିଯିବ ତା ଜୀବନ
ନିଦୋଷ ଜୀବକୁ କଷଣ ଦେଲେ ରେ
ହୁଏ ବଡ଼ ଅଧରମ ।

ସାନଭାଇ -

କି କଷଣ ତାକୁ ଦେଉଅଛି ଭାଇ,
ଅଧରମ ହେବ ମୋର
ଭଲ ପିଞ୍ଜରାରେ ଘର ଭିତରେ ମୁଁ
ରଖିଛି କରି ଆଦର ।
କେତେ ଆତ୍ତୁ କେତେ ଫଳ ମୂଳ ଆଣି
ଦିଏ ତାକୁ ଖାଇବାକୁ
ତେବେ କିବା ଦୁଃଖ ହେଉଛି ତାହାର
କହୁଛ ଛାଡ଼ି ଦେବାକୁ ।

ବଡ଼ଭାଇ -

କି ଦୁଃଖ ତାହାର ହେଉଛି ଶଶୀରେ
ଜାଣିବୁ ତୁହି କିପରି
କି ଯାତନା ତାର ପରାଣ ପୋଡୁଛି
ହେଉଛି ସେ କେତେ ସରି ?
ମାଆ ଭାଇ ଠାରୁ ନେଇ ଯାଇ ତୋତେ
ଦୂର ଦେଶେ ଯଦି କେହି
ହାତ ଗୋଡ଼େ ତୋର ବେଡ଼ି ଦେଇଥାନ୍ତା
'କି ଦୁଃଖ' ଜାଣନ୍ତୁ ତୁହି ।
କଥା କହିପାରେ - ନାହିଁ ବୋଲି ସିନା
କହିପାରୁ ନାହିଁ କିଛି
ତା ଦୁଃଖ ଯଦି ସେ କହନ୍ତା, ଥକନ୍ତୁ
ନେତ୍ରୁ ଲୁହ ପୋଛିପୋଛି ।
ଦିନେ ନ ଦେଖିଲେ ମାଆ ଭଉଣୀଙ୍କୁ
ଥକୁଛୁ ତୁ କାନ୍ଦି କାନ୍ଦି
ମାଆ ଭଉଣୀଙ୍କ ସଂଗ-ଛଡ଼ା କରି
ରଖିଛୁ ତାହାକୁ ବାନ୍ଧି ।
ଭୋକ ଲାଗୁଥିଲେ ଖାଉଥାନ୍ତା କେତେ
ପାଚଲା ରସାଳ ଫଳ
ଶୋଷ କରୁଥିଲେ ପିଉଥାନ୍ତା ଆସି
ଶୀତଳ ଝରଣା ଜଳ ।
ପେଟ ଭୋକ ଏଠି ମରେ ତା ପେଟରେ
ମନକଥା ମନେ ମରେ
ଯିଏ ଯାହା ଦିଏ ରୁଚୁ ବା ନ ରୁଚୁ
ଖାଏ ପେଟ ବିକଳରେ ।

ନିଆଶ୍ରା ଜୀବକୁ ଧରି ବାନ୍ଧି ରଖି
କରି ଏତେ କଳବଳ
ଜୀବନର ସବୁ ସୁଖ ସାରି ଦେବା
ନୁହେଁ ଏକା କେବେ ଭଲ ।

ସାନଭାଇ -

ନାହିଁ ନାହିଁ ଭାଇ, ଛାଡ଼ିଦେଲେ ଯାକୁ
ଦୁଇ ଦିନେ ଯିବ ମରି
ଆନନ୍ଦ ହରଷ ଏତେ ସୁଖ ତାର
ଯିବ ଏକାବେଳେ ସରି ।
ନିତି ତାକୁ କିଏ ଖାଇବାକୁ ଦେବ
ପିଇବାକୁ ଦେବ ପାଣି
ରୋଗ ବଇରାଗେ କିଏ ସେ ଦେଖିବ
ରୋଗହେଲା ବୋଲି ଜାଣି ?
ବଇଶାଖ-ମାସ- ଖରାରେ ଯେ କାଳେ
ତାତି ଯାଉଥିବ ମହୀ
ସୁକୁମାର ଜୀବ କିପରି ରହିବ
ବଇଶାଖ ଖରା ସହି ?
ଝଡ଼ ବରଷାରେ ଅନ୍ଧାର ରାତିରେ
କେଉଁଠି ମୁଣ୍ଡ ଗୁଞ୍ଜିବ
ଆଶ୍ରା ନାହିଁ ଯାର କେହି ସଂସାରରେ
ବଡ଼ ଯାତନା ଭୁଞ୍ଜିବ ।
ଆଷାଢ଼ ମାସରେ ସୁଉସୁଉ ଯେବେ
ବହିବ ବତାସୀ ବାଆ
ମେଘୁଆ ରାତିରେ ପଥର ପଡ଼ିଲେ
କିଏ ହେବ ତାର ସାହା ?

ହିମ ଶୀତ ଦେହ ଥୁରୁଥୁରୁ କରି
ମାଡ଼ି ଆସିବ ଯେ କାଳେ
କେଉଁଠି ରହି ଏ ରାତି କଟାଇବ ?
ଥରିଯିବ ଗଛ ଡାଳେ ।
ନାହିଁ ଯାର ଘର ନାହିଁ ଖାଇବାକୁ
ସାହା ନାହିଁ କେହି ହେଲେ
ମରିଯିବ ଦୁଃଖ ସହି ସହି ବନେ
ନ ବିଚାରି ଛାଡ଼ିଦେଲେ ।

ବଡ଼ଭାଇ -

କି ସୁଖ ଶାନ୍ତି ଏ ପାଉଛି ଏଠି ରେ
ଛାଡ଼ିଦେଲେ ଯିବ ସରି
କି ଅମୃତ ନିତି ଖାଉଛି ବା ଏଠି
ନ ପାଇ ତା ଯିବ ମରି ?
ଜଗତେ ଜନମ ଦେଇଅଛନ୍ତି ଯେ
ଖାଇବାକୁ ଦେବେ ସେହି
ପେଟ ବିକଳରେ ଏ ଭୂମଣ୍ଡଳରେ
ଗଡ଼ି ମରେ ନାହିଁ କେହି ।
ବିଧାତା ତା ପାଇଁ ଗଛ ଡାଳେ ଡାଳେ
ଦେଇଛନ୍ତି କେତେ ଫଳ
କାଚଧାର ସରି ଗିରି ଝରଣାରେ
ଭରି ରଖିଛନ୍ତି ଜଳ ।
ଭୋକ କଲେ, ବନେ ଉଡ଼ି ଡାଳେଡାଳେ
ଖାଇବ ରସାଳ ଫଳ
ଶୋଷକଲେ, ଆସି ଗିରି ଝରଣାରୁ
ପିଇବ ଶୀତଳ ଜଳ ।

ଗହନ ବନରେ ଗଛ ଗହଳରେ
ସୁଲୁସୁଲୁ ବହେ ବାଆ
ଖରାଦିନେ ସେଠି ନ ପଡ଼ଇ ଖରା
କି ଦିବ୍ୟ ଶୀତଳ ଆହା !
କଅଁଳ-ପତର- ଗହଳ କୁଞ୍ଜରେ
ଖରାବେଳେ ବେଳ ନେବ
ବଇଶାଖ ମାସ ମୁଣ୍ଡଫଟା ଖରା
କାହିଁକି ତାକୁ ବାଧିବ ?
ଆଷାଢ଼ ମାସର ଘୋର ବରଷାରେ
ବହିଲେ ବତାସୀ ବାଆ
ଜଗତକରତା ପ୍ରଭୁ ଜଗନ୍ନାଥ
ହୋଇବେ ତାହାର ସାହା ।
ପୁଷମାସ ଯେବେ ଦେହ ଥରା ଶୀତ
ରାତିରେ ମାଡ଼ି ଆସିବ
ଗହନ ବନରେ ଗଛ କୋରଡ଼ରେ
ରାତି ତାର ବିତିଯିବ ।
ଶେଯ ସୁପାତିରେ ଯେଡ଼େ ସୁଖେ ତୁହି
ଶୋଉ ପାହାନ୍ତି ରାତିରେ
ତାହା ଠାରୁ ବଳି ସୁଖେ ଶୋଇବ ସେ
ବୁଢ଼ା ଗଛ କୋରଡ଼ରେ ।
କୁଟାରେ କାଠିରେ ଡେଙ୍ଗା ବରଡାଳେ
ରହିବ ଯେ ବସା କରି
ତୋ ଭଲ ପିଞ୍ଜରା କେଉଁ ଗୁଣେ ହେଲେ
ହେବ ନାହିଁ ତାର ସରି ।
ଭାବିଛୁ ତୁ ତାକୁ ରଖିଛୁ ଯତନ
ରହିଛି ସେହୁ ସୁଖରେ
କିନ୍ତୁ ଶଶି, ତା'ର ପକ୍ଷୀ ପରାଣଟି
ପୋଡ଼ି ଯାଉଛି ଦୁଃଖରେ ।

ସାଆନ୍ତ ମା -

କାହିଁକି ତାକୁ ରେ ଏତେ ଭୁଲାଉଛୁ
କହୁଛୁ ଦେବାକୁ ଛାଡ଼ି
କି ଦୁଃଖ କି କଷ୍ଟ ପାଉଛି ଏଠି ସେ
ପଡୁଅଛି ତୋତେ ମାଡ଼ି ?
ମାସକ ଭିତରେ କହି ଶିଖିଲାଣି
"ରାମ ହରି ଚକ୍ରଧର"
ଆଉ କେତେ ଦିନେ କହି ଶିଖିବ ସେ
"କର ହରି ମୋତେ ପାର ।"
ପକ୍ଷୀ-ଜନମରୁ ପାର ପାଇଯିବ
ସରିଯିବ ତାର ଦୁଃଖ
ଚିରଦିନ ପାଇଁ ସରଗରେ ବସି
ଭୁଞ୍ଜିବ ସରଗ-ସୁଖ ।

ବଡ଼ଭାଇ -

ପଶୁପକ୍ଷୀଙ୍କର ଉପରେ ତୁମର
ଅଛି ମା', କି ଅଧିକାର ?
ସମାନ ସରବେ ପ୍ରଭୁଙ୍କ ଆଖିରେ
ସର୍ବେ ସନ୍ତାନ ତାଙ୍କର ।
ଅସାର ନୁହେଁ ଗୋ ପଶୁ ପକ୍ଷୀ କୀଟ -
ପତଙ୍ଗଙ୍କର ଜୀବନ
ପକ୍ଷୀଟି କୀଟଟି ଗଢ଼ିବାକୁ ହେଲେ
ଲୋଡ଼ା ଜଣେ ଭଗବାନ ।
ପକ୍ଷୀ ଜାତିଟା ସେ 'ଭଗବାନ କିଏ'
ଏ କଥା ଜାଣିବ କାହିଁ ?

ତାଙ୍କ ନାମ ନେଲେ ଯାଆନ୍ତି ନିସ୍ତରି
ସେ ତ ଏହା ଜାଣେନାହିଁ ।
କି କଥା କହୁଛି କା ନାମ ଗାଉଛି
ଜାଣେ ନାହିଁ ସେ ଗୋ କିଛି,
ନାମର ମହିମା ନ ଜାଣି ଜପିଲେ
ସେଥିରେ କି ଲାଭ ଅଛି ?
ହରି ନାମ ଗୁଣ ତୁମେ ଜାଣ ବୋଲି
ଲାଗୁଛି ତୁମକୁ ଭଲ,
ସେହି କଥା ପଦେ ଶୁଣି ଶୁଣି ତାକୁ
ଲାଗୁଅଛି କଲବଲ ।
ପକ୍ଷୀ ଜାତି ସେ ଗୋ, ସାଂଗସାଥୀ ସଂଗେ
ରହଇ ଗହନ ବନେ
ହିଂସା, ଅହଂକାର କପଟ କି ମିଛ
ନାହିଁ ଥିଲେ ତାର ମନେ ।
ବନରେ ଥିଲେ ସେ ସୁଖରେ ଥାଆନ୍ତା
ବନ ଫଳ ମୂଳ ଖାଇ
ଏଠି ସେ ନରକ ଯାତନା ଭୋଗୁଛି
ତୁମରି ମାନଙ୍କ ପାଇଁ ।
ମିଛେ ମିଛେ ଆହା ଜନମଟା ତାର
ଦେଉଛ ଦୁଃଖରେ ସାରି
ଜୀଇ ଥାଉ ଥାଉ ନିଆଶ୍ରା ଜୀବକୁ
ପକାଉଛ ତୁମେ ମାରି ।

ସାନଭାଇ -

ଏତେ ଦିନ ହେଲା ରହିଲାଣି ଏଠି
ଦିନେ ହେଲେ ସେ ତ ଭାଇ,
ଉଡ଼ିଯିବ ବୋଲି ଜନମ ବନକୁ
କେବେ ମନ କରୁ ନାହିଁ ?

ମହା ଆନନ୍ଦରେ ଖାଉଛି ପିଉଛି
ରଟୁଅଛି ସାରା ଦିନ
ଜଣାପଡ଼େ ନା ତ କେବେ ହେଲେ ତାର
ବିକଳ ହେଉଛି ମନ ?

ବଡ଼ଭାଇ -

ଦେଖୁଛି କି ରେ ଶଶି, ବେଳେ ବେଳେ ସେହି
କିପରି ବିକଳ ହୋଇ
ପାରୁ ପରିଯନ୍ତେ କରେ ଛଟପଟ
ବନେ ଉଡ଼ିଯିବା ପାଇଁ ।
ସବୁବେଳେ ସେ ରେ ଲୁହା ପିଞ୍ଜରାକୁ
କାଟିବାରେ ଲାଗିଅଛି
କଟିଗଲେ ଲୁହା ଉଡ଼ିଯିବ ବୋଲି
ମନରେ ସଦା ଭାବୁଛି ।
ଦିନ ପରେ ଦିନ ମାସ ପରେ ମାସ
ଗଲାଣି ରେ କେତେ ବିତି
ସୁନ୍ଦର ଥଣ୍ଟି ଘୋରି ଗଲାଣି ରେ
ପିଞ୍ଜରୀରେ ଘଷି ନିତି ।
ସବୁବେଳେ ଶୁଆ ରଟୁଅଛି ବୋଲି
ମନରେ ଭାବିଛୁ ଯାହା
ନୁହେଁ ନୁହେଁ ଶଶି, ନୁହେ କେବେ ନୁହେ
ଆନନ୍ଦ ରଟନା ତାହା ।
ନୁହେଁ ଶଶି, ତାହା ଆନନ୍ଦର ଗୀତ
ମନ-ଫୁଲାଣିଆ କଥା
କହୁଛି ସଦା ସେ କାନ୍ଦି କାନ୍ଦି ତାର
ହୃଦୟର ଯେତେ ବଥା ।

ଛାଡ଼ିଦେ ଛାଡ଼ିଦେ ଛାଡ଼ିଦେ ଶଶି ରେ,
ଭଗବାନ ଖୁସୀ ହେବେ
ମନରେ ଆନନ୍ଦ ହୃଦୟରେ ଶାନ୍ତି
ଆଶୀର୍ବାଦ ତୋତେ ଦେବେ ।
ଭାଇ କଥା ସବୁ ଶଶୀର ମନକୁ
ଗୋଟି ଗୋଟି ଗଲା ପାଇ
ସେହିକ୍ଷଣି ଆପେ ଯାଇ ନିଜ ହାତେ
ପିଞ୍ଜରା ଦେଲା ଫିଟାଇ ।
ଫିଟିଗଲା କ୍ଷଣି ମନ ଆନନ୍ଦରେ
ଗାଇ ଗାଇ କେତେ ଗୀତ
ଉଡ଼ିଗଲା ଶୁଆ ଦୂର ସରଗକୁ
ମନରେ ମହା ଉଷତ ।

ବଡ଼ଭାଇ -

ଦେଖୁଛୁ ଶଶି ରେ, କେଡ଼େ ହରଷରେ
ସରଗେ ଉଡ଼ି ଯାଉଛି
କେତେ ଗୀତ କେତେ ମନ-ଫୁଲା କଥା
କେତେ ରଂଗେ ସେ ଗାଉଛି ।
ଏଣୁ ତେଣୁ କିଛି ଗାଉନାହିଁ ସେ ରେ
କରୁଛି ତୋତେ କଲ୍ୟାଣ
ସୁଖୀ ହୁଅ ଭବେ ରଖିଥାନ୍ତୁ ଟେକି
ସଦା ଦିନେ ଭଗବାନ ।
ଦେଖୁ ଦେଖୁ ଶୁଆ ନୀଳ ସରଗରେ
କେତେ ଗୀତ ଗାଇ ଗାଇ
ଦୂର ପରବତ ପାଖ ସରଗରେ
ଲୁଚିଗଲା କାହିଁ ଯାଇ ।

*( ଜହ୍ନମାମୁଁ - ୨ୟବର୍ଷ / ୨ୟ ସଂଖ୍ୟା / ଚୈତ୍ର - ୧୩୪୦ସାଲ*
*(୧୯୩୩ ମସିହା)*

# ଭୁଲ୍

॥ ଏକ ॥

ଦିନର ଆଲୁଅ ସେତେବେଳକୁ ଲିଭି ଆସୁଥାଏ । ବାପା କାହିଁ ଯାଇଥାନ୍ତି, ବୀଣା ନୂଆକରି ସେଦିନ ଶାଶୁଘରକୁ ଯାଉଥାଏ ବୋଲି ବୀଣା ବୋଉ ମୋ ବୋଉକୁ ଡାକି ନେଇଯାଇଥାନ୍ତି । ଝରୁ ବି ବୋଉ ସାଙ୍ଗରେ ତାଙ୍କ ସାଇକୁ ଯାଇଥାଏ । ଅନୁ ସେତେବେଳ ଯାଏ ଝଟଶାଳୀରୁ ଫେରିନାହିଁ, ଘରେ ଥାଉ କେବଳ ଆମେ ଦି'ଜଣ ।

ଶରତର ଉଚ୍ଛୁଳା ନଈଟା ଝରକା ପାଖକୁ ଦିଶୁଥାଏ । ଝରକା ପାଖରେ ବସି 'ଉତ୍କଳ-ସାହିତ୍ୟ'ରୁ ମୁଁ କ'ଣ ଗୋଟାଏ ଗଳ୍ପ ପଢୁଥାଏ, ସେ ମୋ ଦେହରେ ଦେହକୁ ଢଳେଇ ଦେଇ ବସି ଶୁଣୁଥାଏ । ଗଳ୍ପର ମଝାମଝିରେ ଆସି ଆମେ ହେଇଚୁ, ଦାଣ୍ଡ କବାଟ ସଶବ୍ଦରେ ଠେଲିଦେଇ ଅନୁ ଆସି ଘରେ ପହଞ୍ଚିଲା । ଝଟଶାଳୀରୁ ଛୁଟିହେଲେ ପିଲାଙ୍କର ଯେତେ ଆନନ୍ଦ, ଯେତେ ଫୂର୍ତ୍ତି, ଅନୁର ଆଜି ତାହାର ଡବଲ । ବହିପତ୍ର ସେମିତି କାଖରେ ଧରା ହୋଇଥାଏ, ଦୌଡ଼ି ଦୌଡ଼ି ଆସି କହିଲା, 'ନୂଆବୋଉ, ତୁମ ଦାଦି ଆସିଛନ୍ତି ।' ସମସ୍ତଙ୍କ ଆଗରୁ ନୂଆବୋଉକୁ ଗୋଟାଏ ନୂଆଖବର ଦେବ ବୋଲି ଅନୁର ଏତେ ଦୌଡ଼ାଦୌଡ଼ି, ନୂଆବୋଉକୁ ଭଲକଥା ଗୋଟାଏ ଶୁଣେଇବ ବୋଲି ତାହାର ଏତେ ଆନନ୍ଦ ।

ବନ୍ଧୁଜନ ଜଣେ ଆସି ଦୁଆରେ କେତେବେଳୁ ଠିଆ ହୋଇଚନ୍ତି, ମୁଁ ଏଇ ଘର ଭିତରେ ଅଛି ଅଥଚ କିଛି ଜାଣେ ନା । ମନରେ କ'ଣ ଭାବୁଥିବେ ସେ । ଲାଜରେ ଦୁଃଖରେ ମନଟା ମୋର କିମିତିକା ହୋଇଗଲା । ବହି ବନ୍ଦକରି ଉଠିପଡ଼ି ପଚାରିଲି, 'କାହାନ୍ତି ? କେତେବେଳୁ ଆସିଲେଣି ?'

"କେଜାଣେ କେତେବେଳୁ ଆସିଲେଣି ? ମୁଁ ଦେଖି ଆସିଲି – ବାପା, ସେ, ଆମ ମାଷ୍ଟ୍ରେ ଠିଆହୋଇ କଥାବାର୍ତ୍ତା ହଉଥିଲେ । ଝଟଶାଳୀ ଛୁଟିହେଲା ଯେମିତି ମୁଁ ମୋର ପଳେଇ ଆସିଲି । ଏଇସାତ୍ ଆସିଲେ ପରା ।"

ଅନୁରେ ଏତକ ଶୁଣି ଲାଜ ଅପମାନରୁ ତ୍ରାହି ପାଇଲି ମୁଁ ।

ସେ ଏଇସାତ୍ ଆସି ଘରେ ପହଞ୍ଚିଲେ ତାଙ୍କୁ ଭକ୍ତିର ସହ ଭୂମିଷ୍ଠ ପ୍ରଣାମ କରିବାକୁ ହେବ । ତାହାଙ୍କର ପ୍ରତି କଥାରେ ବିନୟର ସହିତ ଉତ୍ତର ଦେବାକୁ ହେବ । ୟା ପରେ ତାଙ୍କ ଆଗରେ ଠିଆହୋଇ କଥା କହିଲାବେଳେ ସଂସାରଯାକ ସରମ ସଂକୋଚ ଏକାବେଳକେ ଘୋଟି ଆସିବ - ମୁହଁକୁ ଯେତେ ଉପରକୁ କଲେ ମଧ୍ୟ ସଂକୋଚ ଭାରାରେ ତଳକୁ ନଇଁ ପଡୁଥିବ । ଏତେ ଜଞ୍ଜାଳକୁ ପାରେ କିଏ ! - ବିଶେଷତଃ ଏଇ ମଧୁର ଶରତ ସଞ୍ଜରେ । ତରତର କରି ଦେହରେ ପତଳା ଗେଞ୍ଜି ଖଣ୍ଡେ ଚଢ଼େଇ ଦେଇ ନଈକୂଳରେ ଟିକିଏ ବୁଲିଆସିବା ପାଇଁ ବାହାରି ପଡ଼ିଲି । ଆମ ଗାଁକୁ ଖଣ୍ଡେ ଦୂରରେ ବୈତରଣୀର ଧାରା ।

ଘରୁ ବାହାରିପଡ଼ି ଦେଖେତ ବାପାଙ୍କ ସାଂଗରେ ଜଣେ କିଏ ଆସୁଛନ୍ତି । ମୁଁ ଜଞ୍ଜାଳ ଏଡ଼େଇ ନଈକୂଳ ଆଡ଼କୁ ବାଟ ଭାଂଗି ଚାଲିଲି - ମନେ ମନେ ଭାବିଲି, ପୂଜ୍ୟଙ୍କର ପୂଜା ପରେ ଦିଆଯିବ ପଛକେ ।

॥ ଦୁଇ ॥

ଘରେ ସମସ୍ତେ ଖାଇପିଇ ଶୋଇବାକୁ ଗଲେଣି । ସେ ଆରଘରେ ରାମାୟଣ ପଢ଼ି ବୋଉକୁ ଶୁଣାଉଥାଏ । ତନ୍ଦ୍ରାଭାରରେ ଆଖି ମୋର ବୂଜି ହୋଇ ଆସୁଥାଏ - ସେ ରାତ୍ରିର ଶିଞ୍ଜିନୀରେ ରୁଣୁଝୁଣୁ ମିଶେଇ ମୋ ପାଖରେ ଆସି ପହଞ୍ଚିଲା । ହାତରେ ତାହାର ସବୁଦିନର ସେହି ପ୍ରଦୀପଟି, ମୁହଁରେ ତାହାର ସବୁଦିନର ସେହି କେତେ ସୋହାଗର ହସଟିକକ ।

ମୋତେ ଆସ୍ତେ ହଲେଇଦେଇ ସେ କହିଲା, 'କି ୟାରି ଭିତରେ ତୁମେ ଶୋଇ ସାରିଲଣି ପରା ?'

'ନାହିଁ ତ ।'

ପାନ ଖଣ୍ଡେ ମୋ ପାଟିରେ ଗୁଞ୍ଜିଦେଇ ପୁଣି ସେ ଆରମ୍ଭ କଲା, 'ଦାଦି କାହିଁକି ଆସିଚନ୍ତି ଜାଣିଲଣି ନା ?'

'ନାହିଁ, ମୁଁ ତ କିଛି ଜାଣେ ନା, କାହିଁକି ଆସିଚନ୍ତି ?'

'କୁଆଁର ପୁନେଇଁ ଆଉ ଚାରିପାଞ୍ଚ ଦିନ ରହିଲା, ମୋତେ ନବାକୁ ।'

'ତେବେ ମୋତେ ଏକାକୀ କରି ଚାଲିଯିବ କୁହ ?'

'କିଛି ନ ହେଉଣୁ, ଏତିକି ବେଳୁ ତୁମ ମନରେ ଅଭିମାନ-ବାଜା ବାଜିଲାଣି ପରା ?'

'ତୁମେ ଯିବ, ମୁଁ ସେଇକଥା ତ ତୁମକୁ କହୁଛି; ଆଉ ଅଭିମାନ କ'ଣ ? ଯିବାପାଇଁ ମନ ଭାରି ଅଥୟ ହେଲାଣି, ନା ?'

କ୍ଷଣକ ପାଇଁ ନୀରବ ରହି ସେ କହିଲା, 'ଦାଦି ସିନା ଆସିଲେ, କିନ୍ତୁ ଯିବାକୁ ମୋର ଜମା ଇଚ୍ଛା ହଉନାହିଁ ।' ଏତକ କହିପକେଇ ବିଚାରୀ ବଡ଼ ସରମରେ ପଡ଼ିଗଲା ।

ମୁଁ ମୁହଁକୁ ତାହାର ଦୁଇ ହାତରେ ଧରି ପଚାରିଲି, କାହିଁକି ?

ଲାଜରେ ସେ ଏତେ ବିବ୍ରତ ହୋଇ ପଡ଼ିଥାଏ ଯେ, ମୋ ଆଡ଼କୁ ଆଖି ମେଲି ଚାହିଁ ପାରୁ ନଥାଏ ଆଉ । ମୁଁ ପୁଣି ପଚାରିଲି, କୁହନା କାହିଁକି ?

କେତେ କଷ୍ଟରେ, ସରମରେ ଜଡ଼ସଡ଼ ହୋଇ ସେ କହିଲା, କେ ଜାଣେ, ମୁଁ ଜାଣେନା । ଲାଜ ତାହାର ଭାଂଗିଦେବା ଲାଗି ମୁଁ କହିଲି, ବେଶ୍ ତ ଏଥିରେ ଲାଜ କରିବାର କ'ଣ ଅଛି । ନିରୋଳାରେ ଦାଦିଙ୍କୁ ସଫା ସଫା କହିଦିଅ, ମୁଁ ଯିବିନାହିଁ ।

ହେତ୍! ଇମିତି କଥା କେହି କହେ ନା, କହି ହୁଏ ? ମୁଁ କୋଉ ମୁହଁରେ ଏ କଥା କହିବି ? ମୋର ଏକଥା ଶୁଣିଲେ ବୋଉ କ'ଣ କହିବ ? କହିବ - ମୁଁ ଏତେ ଆଦରକରି ଲୋକ ପଠେଇଥିଲି, ମୋ କଥା କାଟିଦେଇ ଲୋକ ଫେରେଇ ଦେଲା । ମନରେ ଭାରି ଦୁଃଖ କରିବ । ଗୌରୀ, କୃଷ୍ଣ, ସାନ ଭାଇଭଉଣୀ ଏମାନେ ମୋର - ଏମାନେ ମନେ କରିବେ କ'ଣ ? ମନେ କରିବେ ଅପା ଏଇ କେଇ ଦିନ ଭିତରେ ଆମ କଥା ମନରୁ ପାସୋରି ଦେଲାଣି । ମୋ ଗଲାବାଟକୁ ଦଶଥର ଆସି ଅନେଇ ଯାଉଥିବେ, ମୋତେ ନ ଦେଖି ମନ ତାଙ୍କର ଏକାବେଳକେ ଚୁନା ହୋଇଯିବ । ଠାକୁରମା' ତ ଯୋଉ ବୁଢ଼ୀ ଯେ, ଏକଥା ଶୁଣିଲା କ୍ଷଣି ସାଇ ସାଇ ବୁଲି କହିବ - ମା' ଲୋ, ଇମିତି ଘଇତା-ରଙ୍କୁଣୀ ଟୋକୀ ଯେ, ଘଇତାକୁ ଘଡ଼ିକ ପାଇଁ ଛାଡ଼ି ଆସିବାକୁ ବି ନାରାଜ । ଏ ସବୁ କ'ଣ ତୁମକୁ ଭଲ ହେବ ?

'ଆଉ ତେବେ ଉପାୟ କ'ଣ ? ତା'ହେଲେ ତୁମେ ନିଶ୍ଚେ ଯିବ, କୁହ ?'

'ବାପା କି ମା' ଯଦି ମନା କରନ୍ତେ ତେବେ ସିନା ହୁଅନ୍ତା, ମୁଁ ନିଜେ ଗୋଟାଏ ମନା କରିବି କିମିତି ?'

'ଆଚ୍ଛା, ସେ ଦି'ଜଣ ଯଦି ତୁମକୁ ପଠେଇବାକୁ ରାଜି ହେବେ, ତୁମେ ସେଠି ଯାଇ କେଇ ଦିନ ରହିବ ?'

'ସେମାନେ ଯେତେ ଦିନଯାଏ ମୋତେ ନ ପଠେଇଛନ୍ତି, ସେତେ ଦିନଯାଏ; କି ଏଠୁ ଲୋକ ଯେତେ ଦିନଯାଏ ନ ଯାଇଛନ୍ତି ମୋତେ ଆଣିବାକୁ, ସେତେ ଦିନଯାଏ ।'

'ସେତେ ଦିନଯାଏ ମୋର ଦିନ ଏଠି କିମିତି କଟିବ ?'

'ମୁଁ ତୁମକୁ ଛାଡ଼ି, ସେଠି ଯିମିତି ଦିନ କାଟିବି, ତୁମେ ଏଠି ସିମିତି ଦିନ କାଟିବ ।'

ଶରତର ଶିଶିରଭିଜା ପବନ ହୁ ହୁ କରି ଝରକା ଭିତର ଦେଇ ବହି ଆସୁଥାଏ । ଚଦର ଖଣ୍ଡିଏ ଘୋଡ଼େଇ ହେଇ ସେ କହିଲା, 'ଗୋଟାଏ କଥା କଲେ ଭାରି ଭଲ ହୁଅନ୍ତା ।'

କ'ଣ ?

ମୋର ଯିବାର ଦଶ କି ବାରଦିନ ପରେ ଅନୁ ହାତରେ ଆମଘର ପାଖକୁ ଖଣ୍ଡେ ଚିଠି ଲେଖେଇ ଦିଅନ୍ତ - 'ବୋଉକୁ ବେଳେବେଳେ ଜର ହଉଛି । ଘରେ ଆଉ କେହି ନାହିଁ । ଆମକୁ ବଡ଼ ହଇରାଣରେ ପଡ଼ିବାକୁ ହଉଚି । ଚଞ୍ଚଳ ନୂଆବୋଉକୁ ଛାଡ଼ିଦେଇ ଯିବ । ଏ ଚିଠି ପାଇଲାକ୍ଷଣି ବୋଉ ଆଉ ମୋତେ ଦଣ୍ଡେ ରହିବାକୁ କହିବ ନାହିଁ ।'

ମୁଁ ତାହାର ଏକଥା ଶୁଣି ତା'କୁ କୋଳ ଭିତରକୁ ଟାଣିନେଇ କହିଲି, 'ବାଃ,! ଇମିତି ବୁଦ୍ଧିମତୀ ଯାହାର ଚିରସଂଗିନୀ, ତାହାର ଆଉ ବିପଦ କ'ଣ ?

॥ ତିନି ॥

ରାତି ପାହିଲା । ସେ (ନବାକୁ ଆସିଥିଲେ ଯେ) ସକାଳୁ ଉଠୁଣୁ ନ ଉଠୁଣୁ ତାଗିଦ୍ କରିଦେଲେ, 'ଦେଖ ବାବୁ, ଆମକୁ ଚଞ୍ଚଳ ବିଦାକରି ଦେବାର ଯୋଗାଡ଼ କର । ନଈପାରିଆ ବାଟ, ଏଉଠୁ ଆମକୁ ଯିମିତି ରାତି ନହୁଏ - ନହେଲେ ପଛକୁ ଭାରି ହଇରାଣରେ ପଡ଼ିବାକୁ ହବ ମୋତେ ।

ବାପା କହିଲେ, ଯିବ ତ, ଏତେ ତରତର କାହିଁକି ହଉଚ ? ଦିନସାରା ପଡ଼ିଛି, ଇମିତି କେତେ ବାଟ କି ? ଶଏ ନା ଦୁଇଶ କୋଶ ? ନାଆ ମେଲିଦେଲେ

ଘଣ୍ଟାକ ଭିତରେ ଯାଇ ତୁମ ଗାଁ କୂଳରେ ଲାଗିବ - ତୁମକୁ ହଇରାଣରେ ପଡ଼ିବାକୁ ହେବ, ଆଉ କ'ଣ ? ହଁ, ଆହୁରି ଗୋଟିଏ କଥା - ପୁଅଝିଅଙ୍କ ଉପରେ ସମସ୍ତଙ୍କର ଶରଧା । ପୁନେଇଟା ଆଗରେ । ନବାକୁ ଆସିଚ, ମୁଁ କିଛି ମନା କରୁନାହିଁ ଛାଡ଼ିଦେବାକୁ । ତୁମେ ତ ନିଜେ ଦେଖିଯାଉଚ, ଆମର ଏକୁଟିଆ ଘର । ଯାପରେ କାହାକୁ କେତେବେଳେ ଜର ଧରୁଛି, ତାହାର ଠିକ୍ ନାହିଁ । ବୋହୂଟିକୁ ଆଣି ଚଞ୍ଚଳ ଛାଡ଼ିଦେଇ ଯିବ ।

ମୁଁ ଘର ଭିତରେ ଥାଇ ସେମାନଙ୍କର କଥା ସବୁ ଶୁଣୁଥାଏ । ବାପାଙ୍କ ଉପରେ ମୁଁ କେତେ ଭରସା କରିଥିଲି- କାଳେ, କାଳେ କାହିଁକି, ନିଶ୍ଚୟ ମନାକରିବେ ସେ ବୋଧହୁଏ । ଆସନ୍ନ ବିରହରୁ ତ୍ରାହି ପାଇଯିବି ମୁଁ । ତାଙ୍କର ଏକଥା ଶୁଣି ମନ ମୋର ଚୁନା ହୋଇଗଲା । ବାପା ଯୋଉଠି ରାଜି ହଉଚନ୍ତି, ବୋଉ ସେଠି ବା' କଣ କହିବ ? ବାପା କି ବୋଉ ମନା କରନ୍ତେ ବା କିମିତି ? ତାଙ୍କର ତ ଫେର୍ ପୁଅ ଝିଅ ଅଛନ୍ତି । ତାଙ୍କର ତ ଇମିତି ଝିଅଟି କେତେ ଦୂରରେ ଯାଇ ପରଘରେ ପଡ଼ିଚି । ବୋଉ, ପୁନେଇ ପର୍ବରେ ଲୋକ ପଠେଇ ଦେଇ ଝିଅର ଆସିବା ବାଟକୁ ଅନେଇ ବସିଥାଏ, ଝିଅ କେତବେଳେ ଆସିବ । ପାଟିକୁ କିଛି ଟିକିଏ ନ ନେଇ, ପିଠାପଣା ବାଢ଼ିକରି ଥୋଇଥାଏ - ଝିଅ ଆସିଲେ ସାଂଗରେ ବସେଇ ଖୋଇବ । ଇମିତି ଦିନରେ ଝିଅପୁଅ ଘରକୁ ନ ଆସିଲେ ମା' ମନରେ ଯେ କେତେ କଷ୍ଟ ହୁଏ, ଯେ ମା' ହୋଇଛି ସେ ଜାଣେ । ବୋଉ, ମା' ହୋଇ ମା' ମନରେ କିପରି ବ୍ୟଥା ଦିଅନ୍ତା ।

ବାପାଙ୍କର ଏକଥା ଶୁଣି ସେ କହିଲେ, 'ଚଞ୍ଚଳ ଆଉ କ'ଣ ? ସାତ ଦିନ ନା ଆଠଦିନ ଭିତରେ ? ସାତମାସ ହେଲା ଆସିଲାଣି, ଏଇଥର ପହିଲିକରି ବାପଘରକୁ ଯାଉଛି । ମାସେ କି ପନ୍ଦର ଦିନ ଯଦି ନ ରହିବ, ତେବେ ତାକୁ ନବାର ଆଉ ଦରକାର କ'ଣ ? ଖାଲି ପଥଶ୍ରମ ଯା ସାର ।

ସାତ ମାସ ! ସତେ ତ, ଦୂର ସରଗରେ ଚାନ୍ଦ ହସୁଥିଲେ, ଏଇ ଝରକା ଦେଇ ସେ ଦିନ ମଳୟ ଫୁଲଗନ୍ଧରେ ଉଚ୍ଛନ୍ନ ହୋଇ ବୋହି ଯାଉଥିଲା । ପ୍ରଥମ ଚୈତ୍ରରେ ପ୍ରଥମକରି ସେ ଆମ ଘରକୁ ଆସିଥିଲା । ଆଙ୍ଗୁଳିର ରେଖା ଗଣି ଦେଖେ ତ ଠିକ୍ ସାତମାସ । ସୁଖର ଦିନ ଯେ ଏତେ ଚଞ୍ଚଳ ବିତିଯାଏ, ଏତେଦିନ ପରେ ମୁଁ ଅନୁଭବ କରିପାରିଲି ।

ବେଳ ବୁଡ଼ି ଯାଉଥାଏ ସେତେବେଳକୁ । ଗଛ, ପତ୍ର, ପଶୁପକ୍ଷୀ, ନରନାରୀ ସମସ୍ତଙ୍କ ମନରେ ବିଦାୟ ଗୋଧୂଳିର ବ୍ୟଥା ଲାଗି ଆସୁଥାଏ । ସେ ବାପାଙ୍କୁ, ବୋଉକୁ ଭୂମିଷ୍ଠ ପ୍ରଣାମକରି ଘରୁ ବିଦାୟ ନେଲା । ଘରୁ, ଅନୁ, ବୋଉ, ଦୂରସମ୍ପର୍କର ସା'ନମା' ହେବେ ମୋର ସେ, ସାଂଗରେ ତାହାର ନଈକୂଳ ଯାଏ ଗଲେ ।

କେଜାଣେ କାହିଁକି ମନଟା ମୋର ଏକାବେଳକେ ଫିକା ପଡ଼ିଗଲା - ସତେ କି ମୋର ସବୁ ସୁଖ, ଶାନ୍ତି ଆନନ୍ଦ ତା'ରି ପଛେପଛେ ଗୋଡ଼େଇ ଯାଇଛି । ମନକୁ କିଛି ଭାବନା ଆସୁ ନଥାଏ - ଖାଲି ଗୋଟାଏ ଉଦାସ ମନରେ ମୁକୁଳା ସରଗ ଆଡ଼କୁ ଅନେଇ ରହିଥାଏ । ଅନୁର ପାଟିରେ ମୋର ଚମକ ଭାଂଗିଗଲା - ଦେଖେ ତ ଫୁଲସଞ୍ଜ କେତେବେଳୁ ଆସି ଘରପଛ ବାରିଆଡ଼େ ଜହ୍ନିଫୁଲ ଫୁଟେଇ ଦେଲାଣି ।

ମୁଁ ବାହାରକୁ ଆସି ପଚାରିଲି, 'କିରେ ଅନୁ, ଗଲାବେଳେ ନୂଆବୋଉ ତୋତେ କ'ଣ କହିଗଲା କି ?'

'ନୂଆବୋଉ କହିଗଲା, ତାର ପିଲାଦିନର ପଢ଼ାବହି ବାଲ୍ୟପାଠ,.କଥାବଳି, ସାହିତ୍ୟ କୁସୁମ, ଆଉ କେତେ କି ବହି ସବୁ ଆସିଲା ବେଳକୁ ମୋ ପାଇଁ ଆଣିବ । ମୋର ଖୁବ୍ ବହି ହେଇ ଯିବ, ନା ଭାଇ ।' ବହି ଉପରେ ଅନୁର ଭାରି ସୌକି ।

ସେ ଗଲାବେଳୁ ସାଇଘର ମୋତେ ବଡ଼ ଫାଙ୍କାଫାଙ୍କା ଲାଗୁଥାଏ । ଏ ତ ଭରା ସନ୍ଧ୍ୟାର ତରଳ ଅନ୍ଧାର ନୁହେଁ - ତାହାରି ବିଦାୟର ବ୍ୟଥା ଯେତେ ଘରର ମଥାନ ଉପରେ ଜମି ଯାଇଛି । ସେଥିଲାଗି ସେସବୁ ଏତେ ମୌନ, ଏତେ ଅବସନ୍ନ ଆଜି । ମୋତ ଲାଗୁଥାଏ ସତେ କି ଘରର ଧୂଳିକଣାଟି ପର୍ଯ୍ୟନ୍ତ ତାହାରି ବିଦାୟ ବ୍ୟଥାରେ ବ୍ୟଥିତ । ମୋତେ ସିନା ସବୁ ଇମିତି ଲାଗୁଥାଏ- କିନ୍ତୁ ବାପା ? ବୋଉ ? ଗୌରୀ ? ଅନୁ ? - ସମସ୍ତେ ତ ଆଗପରି, ତାଙ୍କ ମନ ତ ଟିକିଏ ହେଲେ କିଛି ହଉନାହିଁ । ବାପା ନିତି ଯିମିତି ଭାଗବତ ପଢ଼ନ୍ତି, ଆଜି ତ ସିମିତି ପଢ଼ୁଛନ୍ତି । ଗୌରୀ ସବୁଦିନ ପରି ଆଜି ଦୀପ ଜାଳିଦେଇ ସଖୀ ସାଂଗରେ ତାର ତାସ ଖେଳୁଛି । ଅନୁ ବୋଉ ପାଖରେ ବସି 'ନୂଆପାଠ' ପଢୁଛି । ତେବେ ମୋ ମନରେ ଏ ପରିବର୍ତ୍ତନ କାହିଁକି ? ତା ପାଇଁ ମୁଁ ଏଡ଼େ ଆକୁଳ କାହିଁକି ? ଏଡ଼େ ଟିକିଏ ଟୋକୀ, ପିଲାଳିଆ କଥା ଛାଡ଼ି ଯାଇନାହିଁ ଆଜି ଯାଏ । - ସେ ଫେରେ କୋଉଦିନ ସମସ୍ତଙ୍କୁ ତଡ଼ିଦେଇ, ସବୁକଥା ପାସୋରେଇ ଦେଇ ସାରା ଅନ୍ତର ପୁରଟାକୁ ମୋର ନିଜର କରିନେଇ

ସାରିଲାଣି । ସେଠି ସେ ମହା ଆନନ୍ଦରେ, ମହାଦର୍ପରେ ନିଜେ ରାଣୀ ହୋଇ ବସି ରହିଆଡ଼େ ନିଜର ରୂପ, ନିଜର ଗୁଣ, ଝଲିଚଳନ ସବୁ ଗୋଟିଗୋଟି କରି ସଜେଇ ରଖି ଦେଇଛି । ବାହାରେ ବି ଠିକ୍ ସେଇଆ । ସେଥିପାଇଁ ସେ ଥିଲେ ମୋର ଆନନ୍ଦ, ମୋର ସବୁ ଅଛି । ତାର ଅବର୍ତ୍ତମାନରେ ମୋର ଏତେ ଦୁଃଖ, ମୋତେ ସବୁ ଶୂନ୍ୟବୋଧ ହେଉଛି ।

॥ ଛରି ॥

ତା' ଆରଦିନ ଡାକବାଲା ମୋତେ ଖଣ୍ଡେ ଚିଠି ଆଣି ଦେଇଗଲା - ଗୋଲାପୀ-ରଂଗର ଲଫାପା, ଉପରେ ଲତାର ଛବି । ଖୋଲିଲାବେଳକୁ ଭିତରୁ ବାହାରିଲା ଖଣ୍ଡେ ଫଟୋ, ଆଉ ହେମେନ୍ଦ୍ର ବାବୁର ହାତଲେଖା ଖଣ୍ଡେ ଚିଠି । ହେମେନ୍ଦ୍ରବାବୁ ମୋର କଟକରେ ପଢ଼ିଲାବେଳର ବନ୍ଧୁ । ହେମେନ୍ଦ୍ର ବାବୁ ଲେଖିଚି-

ବନ୍ଧୁ! ଲେଖିଥିଲ ପରା ଫଟୋ ପଠେଇବାକୁ; ଫଟୋ ପଠେଇଦେଲି । ଜୀବନ୍ତ ଛବି ଦେଖି ପୁଣି ଏଇ ଛବି ଦେଖିବାକୁ ଏତେ ଇଚ୍ଛା କାହିଁକି ?

ବାପାଙ୍କର ବାଲେଶ୍ୱରକୁ ବଦଳି ହେଇ ଯାଉଛି । ଆମେ ସମସ୍ତେ ବାଲେଶ୍ୱର ଯିବୁ । ଚିଠିଦେଲେ ଏଣିକି ବାଲେଶ୍ୱର ଠିକଣାରେ ଦେବ । ଇତି

ତୁମର

ହେମ

ଫଟୋ ଖଣ୍ଡିକ ହେମେନ୍ଦ୍ର ବାବୁର ନବ ପରିଣୀତା ପତ୍ନୀର । ଜଳାଜଳା ଚଞ୍ଚଳ ଆଖିଯୋଡ଼ିଏ - ଲଜ୍ଜାର ଭାରାରେ ନଇଁପଡୁଛି । ପତଳା ପତଳା ଓଠ ଦି'ଖଣ୍ଡରେ ସରମର ହସ ଲାଗି ରହିଛି । ବେଶ୍ ସୁନ୍ଦର ଚେହେରାଟି ।

ତା' ଆରଦିନ ଆଉ ଖଣ୍ଡେ ଚିଠି ଆସିଲା - ଶ୍ରୀକାନ୍ତବାବୁ ବାଲେଶ୍ୱରରୁ ବାପାଙ୍କ ପାଖକୁ ଦେଇଛନ୍ତି । ଚିଠି ପଢ଼ିସାରି ବାପା ମୋତେ ଡାକି କହିଲେ, 'ଶ୍ରୀକାନ୍ତବାବୁ ଲେଖିଛନ୍ତି, କାମ କୁଆଡ଼େ ଖଣ୍ଡେ ଦି'ଖଣ୍ଡ ଏଇ ନିକଟରେ ଖାଲି ହେବ । ତୁ ଚଞ୍ଚଳ ଗଲେ ତୋ ପାଇଁ ସେ ଚେଷ୍ଟା କରିବେ । ଶୁଭସ୍ୟ ଶୀଘ୍ରମ୍, ତୁ କାଲି ବାହାରି ପଡ଼ । ଡେରିକଲେ ସବୁ ମାଟି ହବ । ସେଠି ପହଞ୍ଚିଲେ ତ ତାଙ୍କରି ବସାରେ ରହିବୁ । ଆପଣାର ଲୋକ ସେ; ଆଉ ଚିନ୍ତା କ'ଣ ?'

କାଲି ମୋର ଯିବାର କଥା ! ଭାବିଲି - ଘର ଛାଡ଼ି ଯାଉଛି ତ, ଚଞ୍ଚଳ ଆସିବାକୁ ଅନୁ ହାତରେ ଚିଠି ଲେଖେଇବି ଆଉ କ'ଣ ? ମୁଁ ଦୂରଦେଶକୁ ଚାଲିଯାଉଛି ବୋଲି ଶୁଣିଲେ କାନ୍ଦଣାର ତାର ଆଉ ସୀମା ରହିବ ନାହିଁ । ବାଲେଶ୍ୱର ଯିବାକଥା ତାକୁ ଆଉ ଜଣେଇବି କ'ଣ ? ବଳେ ତ ଏଠିକି ଆସିଲେ ଶୁଣିବ । ଭାଇଭଉଣୀ ମେଳରେ ସୁଖରେ ଅଛି, ମୋ କଥା ଶୁଣିଲେ - କାନ୍ଦିକାନ୍ଦି ମରିବ ଯା ସେଇୟା ।

ସଞ୍ଜବେଳକୁ ଲରୀ ଯିବାର କଥା ! ବେଳ ଘଡ଼ିଏ ଖଣ୍ଡେ ଆଉ ଥାଏ । ମୁଁ ଅନୁକୁ ପାଖକୁ ଡାକି କହିଲି, 'ଅନୁ, ନୂଆବୋଉ ଆସି ଯଦି ପଚାରେ, 'ଭାଇ କୋଉଠିକି ଯାଇଛନ୍ତି ।' - 'ତୁ ବାଲେଶ୍ୱର ଯାଇଛନ୍ତି ବୋଲି କହିଦବୁ । ଆଉ ଯଦି ପଚାରେ, କେବେ ଫେରିବେ ? ତୁ କହିବୁ ଏଇ ଅଳ୍ପ ଦିନ ଭିତରେ । ମନେ ରଖିଲୁ ତ ?'

ଏତିକିକଥା ମନେ ରଖିପାରିବି ନାହିଁ ତ ଆଉ । ହସିଦେଇ ଅନୁ ଚାଲିଗଲା ।

ଅନେଇ ଦେଖିଲି, ଅଲୁଗୁଣିରେ ମୋର ଲୁଗା କମିଜ୍ କରି କେଇ ଖଣ୍ଡ, ପାଖେପାଖେ ତା ଲୁଗା କେଇ ଖଣ୍ଡି ସେ ଯେମିତି ସଜାଡ଼ି ରଖି ଯାଇଥିଲା, ସେଇମିତି ରହିଛି । ତାରି ଭିତରେ ତାହାର ସେହି ନୀଳରଂଗର ଲୁଗାଖଣ୍ଡିକ - ସେ ଖଣ୍ଡିକ ପିନ୍ଧି ସେ ଯୌବନର ଅର୍ଘ୍ୟଧରି ପୂଜାରିଣୀ ବେଶରେ ଆସିଥିଲା । ବାସରର କେତେ ମଧୁସ୍ମୃତି ସେଥିରେ ଜଡ଼ିରହିଛି । ଆଦରରେ ଥରେ ଚୁମ୍ବନ କଲି । ହଠାତ୍ ମୋ ମନ ଭିତରେ ଇମିତି ଗୋଟାଏ ଭାବନା କାହିଁକି ଉଠିଲା କେଜାଣି ? ସମସ୍ତଙ୍କ ଠାରୁ ବିଦାୟ ନେଲି, ତା'ଠାରୁ ତ ନେଲି ନାହିଁ । ବିଦାୟର ଶେଷକଥା ପଦକ ତ ତା'କୁ କହିପାରିଲି ନାହିଁ । ବିଦେଶକୁ ଯାଉଛି - ଏଇ ଯିବା ଯଦି ମୋର ଚିରଦିନ ପାଇଁ ଯିବାହୁଏ । ଶେଷଦେଖା ଟିକକ ତ ଦେଖି ପାରିଲି ନାହିଁ । ସାରା ଅଂଗ ଥରେଇ ଗୋଟାଏ କୋହ ଉଠିଲା । ବିଦେଶକୁ ଗଲାବେଳକୁ କାନ୍ଦୁଚି - ବୋଉ କି ବାପା ଯଦି ଦେଖନ୍ତି, ମନରେ ତାଙ୍କର ଭାରି କଷ୍ଟ ହେବ । ଚଞ୍ଚଳ ଲୁହ ପୋଛିଦେଇ ଠିଆ ହେଇଚି ବୋଉ ଆସି କହିଲା, 'କିରେ, ତୋତେ ବେଳହୋଇ ନାହିଁକି ? ଆ, ଟିକିଏ କିଛି ଖାଇଦେ, ଆ ବେଳ ବୁଡ଼ିଥିବ କି ନାହିଁ ଗାଡ଼ି ଛାଡ଼ିବ ।'

ବେଳ ରତରତ ହେଉଥାଏ । ବାପାଙ୍କର ଉପଦେଶ, ବୋଉର ନୀରବ କଲ୍ୟାଣ ମଥାରେ ନେଇ ବାହାରି ପଡ଼ିଲି ।

ବାଲେଶ୍ୱରରେ ହେମେନ୍ଦ୍ର ବାବୁ ସାଂଗରେ ମୋର ଦେଖାହେଲା । ଆମ ଦୁହିଁଙ୍କ ଭିତରେ କେତେ ଯେ କ'ଣ କଥାବାର୍ତ୍ତା ହେଲା, ତାହାର ସୀମାନାହିଁ - ତେବେ ବି କଥା ସରୁ ନଥାଏ । ବାଲେଶ୍ୱରରେ ମୁଁ ଯେତେ ଦିନଥିଲି, ହେମବାବୁ ମୋ ପାଖକୁ ନିତି ଆସେ । ମୁଁ ବି ପ୍ରତିଦିନ ତାଙ୍କ ବସାକୁ ଯାଏଁ, କେବେ ଜଳଖିଆ-କେବେ ଭାତ ଖାଇ ଆସେ ।

କାମ ଖାଲି ହବ ହବ ବୋଲି ଇମିତି କେତେଦିନ ଗଡ଼ିଗଲା - କାମ ଆଉ ଖାଲି ହେଲାନାହିଁ । ମୁଁ ବେଳେବେଳେ ଭାବେ - ଚାକିରି ହବ ହବ ବୋଲି ନ ଏତେଦିନ ଗଲାଣି, କେବେ ହବ ତାହାର ବି ଠିକ୍‌ନାହିଁ । ଯଦି ଚାକିରି ହୁଏ, ତେବେ ଛ'ମାସ କି ବର୍ଷେ କାମ ନକଲେ ଛୁଟି ମିଳିବାର ଆଶାନାହିଁ । ଏତେଦିନ ମୋତେ ଘରଛଡ଼ା ହୋଇ ରହିବାକୁ ହବ । ଆଖି ମୋର ଲୁହରେ ଭରିଆସେ । ଇଚ୍ଛାହୁଏ କାହାକୁ କିଛି ନ କହି ଘରକୁ ପଳାନ୍ତି - କିନ୍ତୁ ସମସ୍ତେ କହିବେ କ'ଣ ? ଶ୍ରୀକାନ୍ତବାବୁ ବାପାଙ୍କୁ ଏକଥା ଲେଖିଲେ ମୁଁ ତାଙ୍କୁ ସେଠି ମୁହଁ ଦେଖେଇବି କେମିତି ? ମନ ଦୁଃଖ ମନରେ ମାରି ଚୁପ୍ ହୋଇ ରହେ । ମନେମନେ ଭଗବାନଙ୍କୁ ଡାକେ 'ଭଗବାନ' ଆଉ ଭେକାନ୍ସି ନ ହୁଅନ୍ତା କି । ବାଲେଶ୍ୱରରେ ମାସେକାଳ ଅପେକ୍ଷାକରି ମୁଁ ଘରକୁ ଫେରିଲି । ଘରେ ପହଞ୍ଚିବାର ତିନି ଚାରିଦିନ ପରେ ଶ୍ରୀକାନ୍ତ ବାବୁଙ୍କଠାରୁ ଚିଠି ପାଇଲି ଯେ, ମୁଁ ଯେଉଁଦିନ ଆସିଲି ତା' ଆରଦିନ ଭେକାନ୍ସି ଗୋଟାଏ ହେଲା, ମୁଁ ଥିଲେ ହୋଇ ଯାଇଥାନ୍ତା ।

ଟ୍ରେନ୍‌ରେ ଆସିଲାବେଳେ ଭାବୁଥାଏଁ - 'ବଡ଼ ବଡ଼ କଥାରୁ ଆରମ୍ଭକରି, ପିମ୍ପୁଡ଼ି କାମୁଡ଼ିଥିଲା - ଫୁଲିଯାଇଛି, ରାନ୍ଧୁଥିଲା - ହାତରେ ନିଆଁ ଟିକିଏ ଲାଗିଯାଇ ଫୁଟୁକା ହୋଇଯାଇଛି, ଏଡ଼େ ସାନସାନ କଥାଟି ମାନ ନ କହିଲେ ଯାହାର ମନରେ ଶାନ୍ତି ଆସେନା, ସେ ଏହି ଦୀର୍ଘ ତିରିଶଦିନ କାହା ପାଖରେ ତାହାର ମନକଥା କହି ଶାନ୍ତି ପାଉଥିବ ? ସମବେଦନାର-ଆଶ୍ୱାସ ଟିକିଏ କାହାଠାରୁ ପାଉଥିବ ? - ଆପଣାର ବୋଲି ତାର ଆଉ କିଏ ଅଛି ?' ବେଦନାରେ ମନ ମୋର ଭାରି ହୋଇ ଆସିଲା ।

ସଞ୍ଜବେଳେ ଯେପରି ଘରୁ ଯାଇଥିଲି, ସେହିପରି ସଞ୍ଜବେଳେ ଆସି ଘରେ ପହଞ୍ଚିଲି । ଏଇ ମାସକ ଭିତରେ କେତେ କ'ଣ ବଦଳି ଯାଇଛି । ଅନୁ କୁଆଡୁ କେଜାଣି, ବଧୁଲୀ ଗଛଟିଏ ଆଣି ଅଗଣାରେ ଲଗେଇ ଦେଇଛି - ସେଥିରେ ଅଧା ନାଲି, ଅଧା ସଫେଦ୍ ରଂଗର କେତେଫୁଲ ଫୁଟିଚି । ଚାରିଆଡ଼େ ସେ ମୁଁ କି

ବରଷାରେ ତିନ୍ତିତିନି କେତେଟା ହରଗୌରା ଗଛ ଲଗେଇଥିଲୁ । ସେ ସବୁ ଫୁଲେଫୁଲେ ଫୁଲମୟ ହୋଇଯାଇଚି । କଖାରୁ ଗଛ ମୁଁ ଦେଖିଯାଇଥିଲି ଛୋଟଛୋଟ ଡଙ୍କ ମେଲେଇ ଥିଲା – ପୀଢ଼ାଯାକ ଘୋଟିଯାଇ କଷେଇ ଫଳେଇଲାଣି । ପାଟର ବେଶ୍ ସୁନ୍ଦର ଲାଲ ବାଛୁରୀଟି ହେଇଚି । ମୋତେ ସବୁକଥା ନୂଆପରି ଲାଗୁଥାଏ ।

ସମସ୍ତଙ୍କ ସାଂଗେ ଦେଖା ସାକ୍ଷାତ ହୋଇଗଲା – ବାକି ଥାଏ ସେ । ଇଆରି ଭିତରେ ମାସେ ହୋଇଗଲାଣି, ସେ କିମିତି ଅଛି, ଜାଣିବାପାଇଁ ମନ ମୋର ବଡ଼ ବ୍ୟସ୍ତ ହୋଇପଡୁଥାଏ । ମୁଁ ଭାବୁଥାଏ, ଏତେ ଦିନପରେ ମୁଁ ଆସିଛି – ମୋତେ ସେ କେତେ ଆଦର କରିବ । କଥାରେ କଥାରେ ତାର ଫୁଟି ଉଠିବ – 'ବନ୍ଧୁ ଭଲ ଅଛ ତ ?' ଆଖିର ଚାହାଣିରେ ସେ ପଚାରିବ, ସଖା ଆସିଲ ? ଆନନ୍ଦରେ ହୃଦ ଉଚ୍ଛୁଳି ପଡୁଥାଏ ।

॥ ପାଞ୍ଚ ॥

ରାତି; ସମସ୍ତେ ଖାଇପିଇ ଶୋଇଲେଣି । ତାହାର ଉଦ୍‌ବେଳିତ ଅପେକ୍ଷାରେ ଆଖିକୁ ମୋର ନିଦ ଆସୁ ନଥାଏ । ଆକୁଳ ହୋଇ ଅନେଇ ରହିଥାଏ – କେତେବେଳେ ତା'ର ରୁଣୁଝୁଣୁ ମୋରି ଦୁଆରେ ବାଜିବ । ଥିର ହୋଇ ଅନେଇ ରହିଥାଏଁ – କେତେବେଳେ ତାହାର ସରମରଂଗା ମୁହଁଖଣ୍ଡିକ ଆଖି ଆଗରେ ମୋର ଭାସି ଉଠିବ । ଶେଷରେ ସବୁଦିନ ପରି ସେ ରୁଣୁଝୁଣୁ କରି ଘର ଭିତରକୁ ପଶିଆସି ଗୋଡ଼ତଳେ ମୋର ଜୁହାର କରି ବସିଲା । ମୁଣ୍ଡ ତାହାର ତଳେ ବାଜିଛି କି ନାହିଁ, ମୁଁ ତାହାର ଦୁଇହାତ ଧରି ଉଠେଇ ନେଇ ଛାତିଭିତରେ ଜାକିଧରି ତାକୁ ପଚାରିଲି, ତୁମକୁ ଇମିତି ଜୁହାର କରିବାକୁ କିଏ ଶିଖେଇଲା ? ଏତିକି କହି ତା ମୁହଁକୁ ଚାହିଁ ଦେଲାବେଳକୁ ଦେଖିଲି, ଦୁଇ ଆଖିରୁ ତାହାର ଲୁହ ଝରଝର କରି ଝରି ଯାଉଛି ।

ମୋତେ ଘଡ଼ିକ ପାଇଁ ପାଖରେ ପାଇଲେ ଯାହାର ଆନନ୍ଦର ସୀମା ରହେନା, ମାସକ ପରେ ମୋତେ ଆଜି ପାଖରେ ପାଇ ତା ଆଖିରୁ ଲୁହ ଝରୁଚି । ବଡ଼ ଆଶ୍ଚର୍ଯ୍ୟ ବୋଧହେଲା ମୋତେ । ମଥାକୁ ତାହାର କୋଳରେ ଧରି ମୁଁ ବସିବସି ଭାବିଲି, କାହିଁକି ଇମିତି କାନ୍ଦୁଚି ଇଏ, ମୁଁ ତାକୁ ଦେଖାକରି କି ନକହି ଗଲି ବୋଲି ? କି ଯାଇକରି ଏତେଦିନ ରହିଲିବୋଲି ? ନା ବାପା କି ବୋଉ ଗାଳି ଦେଇଛନ୍ତି ବୋଲି ଏହାର ଏତେ କାନ୍ଦଣା ।

ମୁଁ ତାହାର କଜଳକେଶ ଆଉଁସି ଦେଇ କହିଲି, ମୁଁ ତୁମକୁ କିମିତି ଦେଖାକରି ଯାଇଥାନ୍ତି କୁହ ତ । ଯୋଉଦିନ ଚିଠି ଆସିଲା, ସେଇଦିନ ତ ବାପା ମୋତେ ଯା ଯା କରି ରଖେଇଦେଲେ ନାହିଁ; ତୁମ ପାଖକୁ ଚିଠି ଖଣ୍ଡେ ଲେଖିବାକୁ ବି ମୋତେ ଅବସର ମିଳିଲା ନାହିଁ । ମୋର ଏଥିରେ କି ଦୋଷ କୁହ ତ ।

ଏତେକଥା ମୁଁ ଏକ ନିଶ୍ୱାସରେ କହିଗଲି, ତେବେବି ତାହାର କାନ୍ଦଣା ଲାଗିଥାଏ ।

ପୁଣି ମୁଁ ଆରମ୍ଭକଲି, ଗରିବ ଯେତେବେଳେ ଆମେ, ଅନ୍ନର ଅଭାବ, ବିରହର ଯାତନା, ଦୁନିଆର ଜଞ୍ଜାଳ ସବୁ ସହିବାକୁ ପଡ଼ିବ । ମୁଁ ମନ ଖୁସିକୁ କ'ଣ ଏତେଦିନ ପାଇଁ ତୁମକୁ ଛାଡ଼ି ଯାଇ ଦୂରଦେଶରେ ରହିଲି । କିଛି କାମ ନ ଥାଇ ମୁଁ ଯାଇ ଯେବେ ଏତେଦିନ ରହିଥାନ୍ତି, ତେବେ ତୁମେ କହନ୍ତ ଯେ ମୁଁ ତୁମକୁ ପାସୋରିଦେଇ ତୁମ ସାଂଗ ଏଡ଼େଇବା ପାଇଁ ଆଉ କେଉଁ କେଉଁ ଜାଗାରେ ଯାଇ ଦିନ କଟେଇ ଆସିଲି । କିନ୍ତୁ ଅନ୍ନସଂସ୍ଥାନ କରିବା ଯେ ଦୁନିଆର ପ୍ରଧାନକର୍ତ୍ତବ୍ୟ । ନ ଯାଇଥିଲେ ଲୋକେ କ'ଣ କହିଥାନ୍ତେ ? ଆଜି ଯାଇ କାଲି ଚାଲିଆସିଥିଲେ ଲୋକେ କ'ଣ ଭାବିଥାନ୍ତେ ।

ତୁମରି ପାଇଁ, ହେଲା କତାକୁ ଭାଂଗିଦେଇ, ହାତର ସଂପଦ ଗୋଡ଼ରେ ଦଳି, ତୁମରି ମୁଁ ତୁମରି ପାଖକୁ ଫେରିଆସିଲି । କର୍ତ୍ତବ୍ୟ ପାଳିବାପାଇଁ ଉର୍ମିଳାଙ୍କୁ ଛାଡ଼ି ଲକ୍ଷ୍ମଣ ଚଉଦ ବର୍ଷ ବନରେ ରହିଲେ । ପୁଣି ଯେତେବେଳେ ଲକ୍ଷ୍ମଣ ଫେରିଆସିଲେ ଅଯୋଧ୍ୟାକୁ, ଉର୍ମିଳା କ'ଣ ତାଙ୍କୁ କଥା ନକହି ଦୁଇଆଖିରୁ ଅଭିମାନର ଅଶ୍ରୁ ଭସେଇ ଥିଲେ ? ବିରହର ପ୍ରଥମ ଅଧ୍ୟାୟ ଆରମ୍ଭ ନ ହେଉଣୁ ତ ତୁମର ଏ ରୀତି,ଏଇ ଫଗୁଣର ଖରାରେ ତ ତୁମେ ମଉଳି ଗଲଣି, ଆଗକୁ ବୈଶାଖର ଝାଞ୍ଜି ତ ଅଛି । ମାସେ କ'ଣ, ଇମିତି କେତେ ବାରମାସ ତୁମକୁ ଏକାକୀ କଟାଇବାକୁ ହେବ, କ'ଣ କରିବା । ଆମେ ଯେ ଗରିବ । ଛି, କାନ୍ଦ ନା ।

ମୋ କଥା ଶୁଣି ତୁନି ହୁଅନ୍ତା କ'ଣ, ଆଗଠାରୁ ତାହାର ଦି'ଗୁଣ କୋହ ଉଠିଲା । ବରଷାଦିନେ ପବନ ମେଘ ଆଖିରୁ ଯେତେଯେତେ ଲୁହ ପୋଛିଦିଏ, ମେଘ ତେତେ ତେତେ କାନ୍ଦେ । ମୁଁ ତାକୁ ଯେତେ ଆଦର କରୁଥାଏ, ଆଖିରୁ ଯେତେ ଲୁହପୋଛି ଦେଉଥାଏ, ତାହାର କାନ୍ଦଣା ସେତିକି ବଢୁଥାଏ । ପୃଥିବୀରେ

କେଉଁଥିପାଇଁ କିଏ ଏତେ କାନ୍ଦେ - ମୁଁ ଆଗରୁ କଳ୍ପନା ବି କରିପାରି ନଥିଲି । ସତେକି ତାହାର ଅଶ୍ରୁର ସାଗର ବ୍ୟଥାର ପୂର୍ଣ୍ଣିମାରେ ଆଜି ଉଦ୍ବେଳି ଉଠୁଛି ।

ବାପା, ବୋଉ ତାଙ୍କୁ ତ ଝିଅରୁଠାରୁ ଆହୁରି ଭଲ ପାଆନ୍ତି । ତାହାର ଚାଲିଚଳନ, ରନ୍ଧାବଢ଼ା, ରୀତିନୀତି, କଥାବାର୍ତ୍ତାର ପ୍ରଶଂସା ଦିନରାତି ତାଙ୍କ ମୁହଁରେ ଉଛୁଳି ପଡ଼େ । ସେମାନେ ଯେ ଇମିତି କ'ଣ କହିଚନ୍ତି - ସେଥିପାଇଁ ଏହାର ହୃଦୟରେ ଏତେ ବ୍ୟଥା ଲାଗିଛି - ମୁଁ ବିଶ୍ୱାସ କଲିନାହିଁ ।

ତାହାର ଇମିତି କାନ୍ଦଣା ଦେଖି ବେଶି ବେଳଯାଏ ମୁଁ ଆଉ ଥୟଧରି ରହିପାରିଲି ନାହିଁ । ଅଧୈର୍ଯ୍ୟର ସହିତ ଉଠିପଡ଼ି କହିଲି, ମୁଁ ତୁମକୁ ବାରବାର କହିଛି, ସବୁ ସହିହୁଏ, ସ୍ତ୍ରୀର ଅଶ୍ରୁ ସହିହୁଏ ନାହିଁ । ଏକଥା ଜାଣିଶୁଣି, ମୋର ମନା କରିବା ସତ୍ତ୍ୱେ ତୁମେ କାନ୍ଦୁଚ । ମୋତେ ଦେଖି ତୁମ ଆଖିରୁ ଯଦି ଲୁହ ଝରେ, ତେବେ ମୁଁ ଯୋଉଠୁ ଆସିଥିଲି ସେଠାକୁ ଫେରିଯାଉଛି ପଛକେ, ଆଜି ରାତିକ ପାଇଁ ତୁମେ ତୁନି ହୁଅ । ମୁଁ ଜାଣି ନଥିଲି ଯେ, ମୁଁ ଆସିଲେ ତୁମ ମନରେ ଦୁଃଖ ହବ ବୋଲି । ମାସକ ପରେ ଦେଖା ସାକ୍ଷାତରେ ଯେ କଥା କହେନା, ଉପରେ ପଡ଼ି ତାହା ସାଂଗରେ କଥା କହି ତାକୁ ବିରକ୍ତ କରିବା ଉଚିତ୍ ନୁହେଁ । ଏତିକି କହି ମୁଁ ବାହାରକୁ ଚାଲି ଆସିଲି ।

ଘଡ଼ିକପରେ ଯାଇ ଦେଖେ ତ ସେ ସେମିତି କାନ୍ଦୁଚି । କାନ୍ଦିକାନ୍ଦି ସେତେବେଳକୁ ସେ ଥକିପଡ଼ିଲାଣି । ତାହାର ସେହି ପାଣ୍ଡୁର ଗଣ୍ଡରେ ଉଚ୍ଛନ୍ନ ଅଶ୍ରୁଧାର ଦେଖି ମୋ ଆଖି ଲୁହରେ ଭରିଆସିଲା । ଆଖିରୁ ତା'ର ଲୁହ ପୋଛିଦେଇ କହିଲି, ତୁମକୁ ମୋ ରାଣ ଅଛି, ତୁନିହୁଅ । ତୁମର ଏ ଲୁହ ଦେଖି ମୋତେ ଭାରି ବାଧୁଛି ।

କେତେ କଷ୍ଟରେ ଅଶ୍ରୁ ସମ୍ବରଣ କରି ସେ କହିଲା, ମୁଁ ତୁମର କିଏ କି ? - ମୁଁ କାନ୍ଦିଲେ ତୁମକୁ ଏତେ ବାଧୁଛି ? ଆଉ କିଏ କାନ୍ଦିଲେ କାହିଁକି ସହିହୁଏ, ମୋର କାନ୍ଦଣା କାହିଁକି ସହିହୁଏନା । ତାହାର ପ୍ରତ୍ୟେକ କଥାରେ ଗଭୀର ବ୍ୟଥା ଲାଗି ରହିଥାଏ ।

ଆଜି ନିଜକୁ ଏପରି ସେ କାହିଁକି ମୋର ପର ବୋଲି କହୁଛି, କିଛି ବୁଝି ନପାରି ତାହାରି ଆଡ଼କୁ ଅନେଇ ରହିଲି । ତାପରେ ମୁଁ କହିଲି, ତୁମେ ମୋର ଯିମିତି ଆଉ କିଏ କ'ଣ ମୋର ସିମିତି ? ତୁମେ କାନ୍ଦିଲେ ମୋତେ ବାଧିବ ନାହିଁ, ଆଉ କାହାକୁ ବାଧିବ ? ଆଉ କିଏ, ସେମାନେ ତ ଅଜଣା ଅଶୁଣା ପରଲୋକ, କିନ୍ତୁ ତୁମେ ଯେ ମୋର ଏକାନ୍ତ ଆପଣାର ।

ତା' ଆଖିରେ ପୁଣି ଆଖିଏ ଲୁହ । ଗଦ୍‌ଗଦ୍ ହୋଇ ସେ କହିଲା, ସେମାନେ ତ ଜାଣିଶୁଣି ପର, କିନ୍ତୁ ତୁମେ ଆପଣାର କରି ମୋତେ ପରକରି ଦେଇଚ । ଯାର ଫଟୋ ନଦେଖିଲେ ତୁମକୁ ଭାତ ରୁଚେନା, ଯାହାର ଖବରପାଇ ତୁମେ ଶଏ କୋଶ ଦଉଡ଼ି ଯାଉଚ, ସେ ତୁମର ନିଜର ନ ହୋଇ ମୁଁ ହେବି ? ହେମ, କି ହେମଲତା କି ହେମାଙ୍ଗିନୀ ତୁମର କାନ୍ଦିଲେ ତୁମକୁ ସିନା ବାଧନ୍ତା; ମୁଁ କାନ୍ଦିଲେ ତୁମକୁ କାହିଁକି ବାଧିବ ? ବାଟର ବାଟୋଇଠାରୁ ମୁଁ ତୁମର ଆହୁରି ଅଜଣା, ସାତପରଠାରୁ ମୁଁ ତୁମର ଆହୁରି ପର । ଏତିକି କହିଦେଇ ପୁଣି କାନ୍ଦଣା - ଓଃ, ସେ କି କାନ୍ଦ । - ସତେ କି ତାହାର ଜୀବନ୍‌ପୁର ଗନ୍ତାଘରର ଅମୂଲ୍ୟରତ୍ନ କୋଉ ଅଜଣା ମରୁପୁରରେ ହଜିଯାଇଛି । ତାହାର ସନ୍ଧାନ ସେ ଆଉ ପାଉନାହିଁ । ଦୁନିଆରେ ସେ ଆଜି ନିହାତ୍ କାଙ୍ଗାଳ, ଏକାନ୍ତ ନିଃସ୍ୱ ।

ତା ମୁହଁରୁ ଏଇ ଏକାନ୍ତ ଅପରିଚିତାର ନାମ ଶୁଣି ମୁଁ ବଡ଼ ଆଶ୍ଚର୍ଯ୍ୟ ହୋଇ କହିଲି, 'ହେମଲତା ? ହେମାଙ୍ଗିନୀ ? ମୁଁ ତ କାହାକୁ ଜାଣେନା ।'

ସତ କହୁଛ ! ତା' ଆଖିରୁ ସେତେବେଳକୁ ଗୋଟାଏ ଦୀପ୍ତି ବାହାରୁଥାଏ ।

ହେଇ ତ,ଜୀବନର ସର୍ବସ୍ୱ ତୁମେ ମୋର, ତୁମ ଦେହରେ ହାତଦେଇ କହୁଛି । ସତ କହୁନାହିଁ ଆଉ କ'ଣ ମିଛ କହୁଛି ?

ମୁଁ ଯେ ଏତେ ବଡ଼ ମିଥ୍ୟା କହିପାରେ, ଅକୁଣ୍ଠିତ ଚିତ୍ତରେ ଏଡ଼େ ବଡ଼ ପାପ କରିପାରେ - ସେ ଶିହରି ଉଠିଲା । ଚକିତ ହୋଇ ମୋରି ଆଡ଼କୁ ଅନେଇଥାଏ । ତକିଆତଳୁ ଖଣ୍ଡେ ଚିଠି ବାହାର କଲା । ଦେଖିଲି, ହେମବାବୁର ସେହିଦିନର ସେହି ଚିଠି । ତା ପରେ ସେ ସେହି ଚିଠି ଭିତରୁ ଫଟୋ ବାହାର କରି, 'ହେମ' ତଳେ ଆଙ୍ଗୁଳି ରଖି କହିଲା, 'ଏ କିଏ ?' ହାତ ତାର ଥରୁଥାଏ । କାହିଁକି କେଜାଣି ?

ଏତେବେଳେ ଯାଇ ମୁଁ ବୁଝିପାରିଲି, ତାହାର ଏ କାନ୍ଦଣା କାହିଁକି ? ମୋର ଗଲା ପରେ ହେମବାବୁର ସେହି ଚିଠି ଖଣ୍ଡିକ ଏତେ କାଣ୍ଡର ମୂଳ । ସେ ସେହି ଚିଠିକୁ ପଢ଼ି, ଫଟୋକୁ ଦେଖି ଭାବି ନେଇଚି, ହେମ ଜଣେ ସ୍ତ୍ରୀ ଲୋକ । ତାହାର ପୂରା ନାମ ହେମାଙ୍ଗିନୀ କି ହେମଲତା । ଫଟୋ ଖଣ୍ଡିକ ହେଉଛି ହେମଲତାର ନିଜ ଛବି । ତା ସାଂଗରେ ଆଗରୁ ମୋର ଭାବ ଥିଲା, ବର୍ତ୍ତମାନ ବି ଅଛି । ସେ ବାଲେଶ୍ୱରକୁ ଆସିଛି ବୋଲି ଚିଠିପାଇ ମୁଁ ବାଲେଶ୍ୱରକୁ ଗଲି - ବାଲେଶ୍ୱରରେ ତାଙ୍କରି ଘରେ,

ତାହାରି ପାଖରେ ମୁଁ ମାସ ଗୋଟାଏ କଟେଇ ଆସିଛି । ଚାକିରି ପାଇଁ ଯିବା ଖାଲି ଗୋଟାଏ ବାହାନା । ତାର କାନ୍ଦଣା ଦେଖି ମୋ ମନରେ ଦୁଃଖ ହୋଇଥିଲା ଯେତେ, ଏବେ ହସ ମାଡ଼ିଲା ତାହା ଠାରୁ ବେଶି ।

ମୁଁ ଆଉ କିଛି ନକହି ବହି ବାକ୍ସ ଭିତରୁ ଖୋଜିଖୋଜି ହେମବାବୁର ଖଣ୍ଡେ ଚିଠି ବାହାରକରି ପଢ଼ିଲି । ହେମବାବୁ ଲେଖିଚି -

ବନ୍ଧୁ,

ଅନେକ ଦିନରୁ ତୁମର ଚିଠି ପାଇନାହିଁ । ନୂଆ ସାଥୀ ପାଇ ସବୁ ଭୁଲିଗଲ ବୋଧହୁଏ ? ପେଟିନ୍‌ସାହିର ଯେଉଁ ଲରେନ୍‌ସ ଆମ ସାଂଗରେ ପଢୁଥିଲା, ତାହାରି ଭଉଣୀ ଲତା ସାଂଗରେ ମୋର ବିବାହ ହେବାର ଠିକ୍ ହୋଇଛି । ବିଭାଘର ଆର ମାସ ୧୫ ତାରିଖରେ । ଏଇ ଲତା ପାଇଁ ମୁଁ କି ପାଗଳା ହଉ ନଥିଲି, କୁହ ତ ? ଆଜିଠାରୁ ନିମନ୍ତ୍ରଣ ରହିଲା, ନିଶ୍ଚୟ ଆସିବ । ଇତି

ତୁମର

ହେମ

ଚିଠି ପଢ଼ିସାରି ମୁଁ କହିଲି, ଏଇ ହେମକୁ ତୁମେ ମନେମନେ କରିନେଇଛ ହେମଲତା କି ହେମାଙ୍ଗିନୀ ନା ? ହେମ ଯଦି ଜଣେ ସ୍ତ୍ରୀ ଲୋକ, ତେବେ ଲରେନ୍‌ସ ଭଉଣୀ ଲତା ସାଂଗରେ ତାହାର କିମିତି ବାହାଘର ହେଉଚି ? ତୁମ ଗାଁରେ କ'ଣ ଟୋକୀଙ୍କ ସାଂଗରେ ଟୋକୀଙ୍କର ବାହାଘର ହୁଏ । କିଛି ବୁଝି ନପାରିଲା ପରି ସେ ମୋ ଆଡ଼କୁ ଅନେଇ ରହିଲା ।

କେବେ ଏ ଚିଠି ଆସିଲା ? ଏ ଚିଠିକଥା ତୁମେ ତ ମତେ କିଛି କହିନା । ବନ୍ଧୁ ତୁମର ଏତେ ଆକଟ କରି ନିମନ୍ତ୍ରଣ କରିଥିଲେ, ତୁମେ କାହିଁ ଗଲ ତ ନାହିଁ ।

ଏ ଚିଠି ଯୋଉଦିନ ଆସେ, ସେଦିନ ତୁମକୁ ଭୟାନକ ଜର । ଚିଠି ପଢ଼ିକରି ରଖିଦେଲି, ଚଠି କଥା ତୁମକୁ କହିବାକୁ ଆଉ ମୋର ମନେନାହିଁ । ତୁମର ସେ ଜର ଦେଖି ମୋର ଆଉ ଯିବାକୁ ମନ ବଳିଲା ନାହିଁ ।

ଏ ଫଟୋ ଫେର୍ ଗୋଟାଏ କ'ଣ ?

ହଁ, ସେଇଆକୁ ଦେଖି ତ ତୁମର ମୁଣ୍ଡ ବିଗିଡ଼ିଛି । ହେମବାବୁ ଖ୍ରୀଷ୍ଟିଆନ୍ କି ନା, ଖ୍ରୀଷ୍ଟିଆନ୍‌ମାନଙ୍କର ଇମିତି ପ୍ରାୟହୁଏ । ବାହାହେଲେ ନିଜ ସ୍ତ୍ରୀ ଫଟୋ ଖଣ୍ଡେ

ଖଣ୍ଡେ ପ୍ରିୟଜନମାନଙ୍କ ପାଖକୁ ପଠେଇଁଥାନ୍ତି । ବିଶେଷତଃ ହେମବାବୁ ମୋର ଅନ୍ତରଂଗ ବନ୍ଧୁ । ପିଲାବେଳେ ଏକାସାଙ୍ଗରେ ପଢୁଥିଲୁ । ବାହାଘରକୁ ତ ତାହାର ଯାଇପାରିଲି ନାହିଁ - କିମିତି ସ୍ତ୍ରୀଟି ପାଇଲା ଦେଖିବା ଲାଗି ଫଟୋ ଖଣ୍ଡେ ମାଗି ପଠେଇ ଥିଲି, ହେମବାବୁ ପଠେଇ ଦେଇଛି । ଏ ଫଟୋ ହେମବାବୁର ସ୍ତ୍ରୀ ଲତାର । ଏ ଯୋଉ ହେମ, ଏ ହେମଲତା ନୁହଁ କି ହେମାଙ୍ଗିନୀ ନୁହେଁ । ଏ ହେମ ହେମେନ୍ଦ୍ର, ହେମେନ୍ଦ୍ର ନାଥ । ଏ ଯୋଉ ଫଟୋ, ଏ ମୋ ଛେରାପ୍ରୀତିର ପାତ୍ରୀ ନୁହେଁ କି କିଶୋରକାଳର ପ୍ରଣୟିନୀ ନୁହେଁ, ଏ ଫଟୋ ଲରେନ୍ସ ଭଉଣୀ ହେମବାବୁ ସ୍ତ୍ରୀର । ଏବେ ବୁଝିପାରିଲ ତ ଏ ହେମ କିଏ ? ଆଉ ଏ ଫଟୋ କାହାର ? ବିଷାଦ ଉଭେଇ ଯାଇ ମୁହଁରେ ତାହାର ଆନନ୍ଦ ଉଛୁଳି ପଡୁଥାଏ । ସତେ କି ସେ କୋଉ ଅଜଣା ମରୁପୁରରୁ ତାହାର ହରା ରତନଟି ଖୋଜି ଖୋଜିକରି ପାଇଛି ।

ଏଇଥିପାଇଁ ପରା ତୁମର ଏ ବୁକୁଭଂଗା କାନ୍ଦଣା ।

ମିଛଟାରେ ଏତେ ବଡ଼ କାଣ୍ଡଟା ଘଟେଇ ଦେଇଛି ବୋଲି ଲାଜରେ ସେ ମୋ କୋଳଭିତରେ ମୁହଁ ଲୁଚେଇଲା ।

ମୁଁ ଯେ ଯାକୁ କେତେ ଭଲପାଏ, ମୁଁ ନିଜେ କଳିପାରି ନାହିଁ । ତେବେ କି ଏଇ ସାମାନ୍ୟ କଥାରେ ସେ ମୋତେ ଅବିଶ୍ୱାସ କଲା ? - ମନଟା ମୋର ଗମ୍ଭୀରହୋଇ ଆସିଲା, ସେ ସେମିତି କୋଳଭିତରେ ମୁହଁଗୁଞ୍ଜି ଶୋଇଥାଏ । ମୁଁ କହିଲି, ତୁମେ ଏତେ ମାସ । ଏତେ ଦିନ ମୋରି ଛାତି ପାଖରେ କାନପାତି ଶୋଇଲ, ଆଉ ଏଇ ହୃଦ ଭିତରର କେଇଟା କଥା ତୁମେ ଶୁଣିପାରିଲ ନାହିଁ ? ମୋତେ ତୁମେ ଭଲପାଅ ନାହିଁ ବୋଧହୁଏ । ଭଲପାଉଥିଲେ କ'ଣ ଏତେ ଦିନଗଲା, ମୋ ମନକଥା ଜାଣି ନଥାନ୍ତ ମୋ ମନକଥା ଜାଣିଥିଲେ ତୁମେ କ'ଣ ମୋତେ ଇମିତି ଅବିଶ୍ୱାସ କରନ୍ତ ?

ମୋର ଏ ଗମ୍ଭୀର ଭାବ ଦେଖି ପିଲାଙ୍କ ପରି ଦୁଇ ହାତରେ ସେ ମୋର ଗଳାଧରି କହିଲା, ନ ବୁଝିକରି ଚଣ୍ଡାଳୁଣୀଟା ମୁଁ ଏତେ କଥା କରି ପକେଇଚି । ଏଇଥରକ ମୋତେ ମାଫ୍‌ଦିଅ, ସେଇଟା ମୋର ବଡ଼ ଭୁଲ୍ ହେଇଚି । ଏଇଥରକ - ଏହି ଥରକ କ୍ଷମାକର, ଜୀବନରେ ଆଉ କେବେ ମୁଁ ଇମିତି କରିବି ନାହିଁ ।

*(ସହକାର - ୧୨ଶ ଭାଗ / ୧ମ ସଂଖ୍ୟା / ୧୩୩୮ ସାଲ)*

# ଗୋଲାପ

ରୋଜେତା କୃଷକର କନ୍ୟା; ବୃଦ୍ଧା ପିତାମହୀ ବ୍ୟତୀତ ଇହ ସଂସାରରେ ତାହାର ଆପଣାର ବୋଲି ଆଉ କେହି ନଥିଲେ । ରୋଜେତା ମୁହଁ ଖଣ୍ଡିକ ଅତି ସୁନ୍ଦର-କଳାକଳା ଢଳଢଳ ଆଖିର ଡୋଳା, ଫୁଲର ପାଖୁଡ଼ା ପରି ପତଳା ଓଠ ଦି'ଖଣ୍ଡି । ଚିକ୍କଣ ରେଶମୀ କେଶ ତାହାର ମୁଖ ବେଷ୍ଟନ କରି ବକ୍ଷ ଓ ପୃଷ୍ଠରେ ଝୁଲି ପଡ଼ିଥାଏ ।

ରୋଜେତା, ପ୍ରତିଦିନ ପାଣି ପାଇଁ ଝରଣାକୁ ଯାଏ । ଦିନେ ସେ ତାହାର ପୂର୍ଣ୍ଣକୁମ୍ଭ ନେଇ ଝରଣାତୀରରେ ଟିକିଏ ବିଶ୍ରାମ କରୁଛି, ଜଣେ ସୁକୁମାର ଯୁବା ଦ୍ରୁତ ଅଶ୍ୱାରୋହରଣରେ ସେଠାରେ ଆସି ଉପସ୍ଥିତ ହେଲେ । ରୋଜେତା ସରମରେ ସଢ଼ିଯାଇ ଠିଆହୋଇ ପଡ଼ିଲା । ଯୁବା ତା ପାଖକୁ ଯାଇ କହିଲେ, 'ବଡ଼ଶୋଷ, ପାଣି ମୁନ୍ଦିଏ ଦିଅନ୍ତ କି । ରୋଜେତା ତତ୍‌କ୍ଷଣାତ୍ ଅତି ଯତ୍ନର ସହିତ ଆପଣାର ପୂର୍ଣ୍ଣକଳସରୁ ଝରଣାର ସ୍ୱଚ୍ଛଶୀତଳ ଜଳ ଅଞ୍ଜଳି ଭରି ତାହାଙ୍କୁ ପାନ କରାଇଲା ।

ତୃଷାର୍ତ୍ତ ଯୁବକ ସେହି ଦେଶର ରାଜକୁମାର । ଯୁବରାଜ ରୋଜେତାର ସରଳ ଶିଷ୍ଟ ବ୍ୟବହାର ଓ ତାହାର ଅପୂର୍ବ ରୂପମାଧୁରୀରେ ଏକାନ୍ତ ମୁଗ୍ଧ ହୋଇପଡ଼ି କହିଲେ, ତୁମର ଏ କ୍ଷୀଣକଟି ପୂର୍ଣ୍ଣକଳସର ଭାର ସହିପାରିବ ନାହିଁ । ମୁଁ ଏ ପୂର୍ଣ୍ଣକଳସ ଧରୁଛି, ତୁମେ ଆସ, ମୁଁ ତୁମକୁ ନେଇ ତୁମ ଘରେ ଛାଡ଼ିଦେଇ ଆସିବି । ଯୁବରାଜ ଏପରି ଭାବରେ ଅନୁରୋଧ କଲେ ଯେ, ରୋଜେତା ଆଉ କିଛି କହିପାରିଲା ନାହିଁ - ମଧୁର ଲଜ୍ଜାରେ କିଶୋରୀର ମଥା ନଇଁ ପଡୁଥାଏ । ଯୁବରାଜ ପୂର୍ଣ୍ଣକଳସ ନିଜେ ବହିନେଇ ରୋଜେତାକୁ ତା କୁଟୀରରେ ପହଞ୍ଚାଇ ଦେଲେ । ରୋଜେତା ଅପରିଚିତଙ୍କୁ ଏଥିପାଇଁ ବିନୀତ କଣ୍ଠରେ, ଆନତ ଚାହାଣିରେ ଅଶେଷ ଧନ୍ୟବାଦ ଦେଇ କୁଟୀର ଭିତରକୁ ଗଲା, ରାଜକୁମାର ନିଜ ପଥରେ ଫେରିଗଲେ ।

କୁମାର ଘରକୁ ଫେରି ଆସିଲେ; କିନ୍ତୁ ରୋଜେତାକୁ ଆଉ ଭୁଲିପାରିଲେ ନାହିଁ । ରୋଜେତାର କୋମଳକଣ୍ଠର ସୁମିଷ୍ଟ କଥା କୁମାରଙ୍କ କର୍ଣ୍ଣରେ ବୀଣାପରି

ନିୟତ ବାଜିବାକୁ ଲାଗିଲା । ଶରତର ସ୍ନିଗ୍ଧ ସନ୍ଧ୍ୟାରେ, ଅସ୍ଫୁଟ ଚନ୍ଦ୍ରାଲୋକ ତଳେ, ପ୍ରକୃତିର ଶ୍ୟାମ-ଶୋଭା-ସୁଶୋଭିତ କଳସ୍ୱନା ନିର୍ଝରିଣୀ-ତଟରେ ପ୍ରଥମ ଯୌବନ-ସ୍ପର୍ଶରେ ଯେଉଁ ରୂପସୀ କୃଷକ-ବାଳିକାକୁ ତାହାର ପ୍ରସ୍ତର କୁମ୍ଭଘେନି ଧୂସର ଶିଳାତଳେ ଅପେକ୍ଷା କରିବାର ଦେଖିଥିଲେ, କୁମାର ସେ ଅଭିନବ ଚିତ୍ର ଖଣ୍ଡିକ କୌଣସି ପ୍ରକାରେ ତାହାଙ୍କର ଚିତ୍ତ-ପଟରୁ ପୋଛି ପକାଇ ପାରିଲେ ନାହିଁ ।

ଏହାପରେ ପ୍ରାୟ ପ୍ରତିଦିନ ଯୁବରାଜ ସେହି ନିର୍ଝର ନିକଟକୁ ଆସନ୍ତି । ସେ ରୋଜେତା ନିକଟରେ ବସି ଅନେକ କ୍ଷଣ ପର୍ଯ୍ୟନ୍ତ ତାହା ସଂଗରେ ଗଳ୍ପ କରନ୍ତି । କେତେ ଦେଶର କେତେ କଥା ପଡ଼େ । ବାଳିକାର ସୁମଧୁର କଣ୍ଠସ୍ୱର ଶୁଣୁଶୁଣୁ କୁମାର ମୁଗ୍ଧ ହୋଇପଡ଼ନ୍ତି । ରୋଜେତା କେତେ ମନାକରେ, କିନ୍ତୁ ରୋଜେତାର ବାରମ୍ବାର ନିଷେଧ ସତ୍ତ୍ୱେ ସେ ତାହାର ବାରି-ଭରା କୁମ୍ଭ ପ୍ରତିଦିନ ତାହାର କୁଟୀର ପର୍ଯ୍ୟନ୍ତ ବହି ନିଅନ୍ତି । କ୍ରମେ କୁମାର ରୋଜେତାର ପିତାମହୀ ସହିତ ପରିଚିତ ହେଲେ ଏବଂ ବୃଦ୍ଧା ଯେଉଁଥିରେ ଆନନ୍ଦିତ ହେବ, ଏପରି କେତେ କଥା କହି ତାହାକୁ ପ୍ରୀତ କରିବାକୁ ଲାଗିଲେ । ଏହିପରି କେତେଦିନ କଟିଗଲା ।

କିଛିଦିନ ପରେ ରାଜକୁମାର ଦିନେ ରୋଜେତାର ପିତାମହୀଙ୍କୁ ଏକାନ୍ତ ଆପଣାର ବୋଲି ସମ୍ବୋଧନ କରି କହିଲେ ଯେ, ସେ ତାହାର ସେହି ଭ୍ରମର ନନ୍ଦନା ନାତୁଣୀଟିର ରୂପଗୁଣରେ ମୁଗ୍ଧ ହୋଇଅଛନ୍ତି ଏବଂ ସେ ତାହାକୁ ବିବାହ କରିବାକୁ ଇଚ୍ଛା କରନ୍ତି । ଏକଥା ଶୁଣି ବୃଦ୍ଧା ଅତି ଆନନ୍ଦିତ ହେଲା ଏବଂ ତାହାର ନାତୁଣୀର ଯଦି ଏହି ବିବାହରେ ମତ ଥାଏ, ତେବେ ତାହାର ସେଥିରେ କୌଣସି ଅମତ ନାହିଁ ବୋଲି ଜଣାଇଲା । ରୋଜେତା କିନ୍ତୁ ଏହି ନବ ପରିଚିତ ଯୁବକଙ୍କୁ ବିବାହ କରିବାକୁ ସମ୍ମତ ହେଲାନାହିଁ । ସେ ତାଙ୍କର ସେହି ଦ୍ରାକ୍ଷାପତ୍ର-ଆଚ୍ଛାଦିତ କ୍ଷୁଦ୍ର କୁଟୀର ଖଣ୍ଡିକୁ ଆଉ ତାହାର ବୃଦ୍ଧା ପିତାମହୀକୁ ଏତେ ହୃଦୟର ସହିତ ଭଲପାଏ ଯେ, ସେମାନଙ୍କୁ ପରିତ୍ୟାଗ କରି କେଉଁଠାକୁ ଯିବାକୁ ରାଜିନୁହେଁ ।

ରୋଜେତାର ଏକଥା ଶୁଣି ଯୁବରାଜ ଆପଣାର ପରିଚୟ ଦେଲେ ସେ ନିଜେ ସିଂହାସନର ଭାବୀ ଉତ୍ତରାଧିକାରୀ, ରୋଜେତାକୁ ଦେଶର ରାଣୀ କରିବେ, ବିବିଧ ରତ୍ନାଳଙ୍କାରରେ ଭୂଷିତ କରିବେ - ଇତ୍ୟାଦି ନାନା ପ୍ରଲୋଭନ ଦେଖାଇଲେ । ରୋଜେତା ତଥାପି ସମ୍ମତ ହେଲାନାହିଁ । ବୃଦ୍ଧା ପିତାମହୀର ତାହାଛଡ଼ା ଜଗତରେ

ଅନ୍ୟ କୌଣସି ଅବଲମ୍ବନ ନାହିଁ । ସେ କାହା ନିକଟରେ ତାହାର ଏହି ଅଶୀତିପର ବୃଦ୍ଧାକୁ ରଖିଯିବ ? ସେ ପାଖରେ ନଥିଲେ ଯେ ତାହାର ପିତାମହୀର ଦଣ୍ଡେ ଚଳିବ ନାହିଁ । ରୋଜେତା ରାଣୀ ହେବାର ପ୍ରଲୋଭନ ପରିତ୍ୟାଗ କଲା ।

ଯୁବରାଜ ରୋଜେତାର ଏପରି ଅପ୍ରତ୍ୟାଶିତ ବ୍ୟବହାର ଅତ୍ୟନ୍ତ କ୍ଷୁବ୍ଧ ଓ କ୍ରୁଦ୍ଧ ହେଲେ । ଜଣେ ସାମାନ୍ୟ କୃଷକ-ଦୁହିତା ତାହାଙ୍କର ଅଯାଚିତ ଅଗାଧ ପ୍ରେମ, ରାଜସିଂହାସନର ଅର୍ଦ୍ଧାଂଶ ଏତେ ଅବହେଳାର ସହିତ ଉପେକ୍ଷା କଲା । ରାଜକୁମାର ଏଥିରେ ଆପଣାକୁ ଅତ୍ୟନ୍ତ ଅପମାନିତବୋଧ କଲେ ଏବଂ ଅପମାନର ସମୁଚିତ ପ୍ରତିଶୋଧ ନେବେ ବୋଲି ସ୍ଥିରକରି ଗୃହକୁ ଫେରିଗଲେ ।

କିଛିଦିନ କଟିଗଲା । ରୋଜେତା ଏବେ ଆପେ ଆପଣାର ଜଳକଳସୀଟି ବହି ଏକାକିନୀ ଘରକୁ ଫେରେ । ପଥରେ ଆସୁଆସୁ ଦିନେଦିନେ ସେହି ଅଜ୍ଞାତ ଯୁବରାଜଙ୍କ କଥା ତାହାର ମନେପଡ଼େ - ସେ ଦିନ ତାହା କାଖର ପାଷାଣ-କଳସୀଟି ତାହାକୁ ଆହୁରି ଅଧିକ ଭାରିବୋଲି ମନେହୁଏ । ରୋଜେତାର କ୍ଷୀଣ କଟିତଟ ସେ ଦିନ ସେ ପୂର୍ଣ୍ଣକୁମ୍ଭର ଭାର ଯେପରି ଆଉ ବହନ କରିବାକୁ ଚାହେଁନା ।

ଦିନେ ରୋଜେତା ଏହିପରି କାତରଭାବରେ ତାହାର ଜଳକଳସୀଟି ବହି କୁଟୀରକୁ ଫେରୁଥାଏ । ସେଦିନ ଝରଣାରେ ତାହାର ଟିକିଏ ଅଧିକ ବିଳମ୍ବ ହୋଇଯାଇଥିଲା । ଭରା ସନ୍ଧ୍ୟାର ନିବିଡ଼ ଅନ୍ଧକାର ସେତେବେଳେ ଚାରିଆଡୁ ଜମି ଆସୁଥାଏ - ଏପରି ସମୟରେ ଜଣକେତେ ବଳିଷ୍ଠ ଯୁବକ ହଠାତ୍ କେଉଁଆଡୁ ଆସି ରୋଜେତାକୁ ଧରି ନେଇଗଲେ । ରୋଜେତା କେତେ କାନ୍ଦିଲା, କେତେ ଚିତ୍କାର କଲା; କିନ୍ତୁ କେହି ତାହାର ଉଦ୍ଧାର ପାଇଁ ଆସିଲେ ନାହିଁ ।

ରୋଜେତାକୁ ଯେଉଁମାନେ ନେଇଗଲେ ସେମାନେ ସେହି ଯୁବରାଜଙ୍କ ଅନୁଚର । ରୋଜେତାକୁ ଆଣି ସେମାନେ ତାହାକୁ ଯୁବରାଜଙ୍କ ପ୍ରାସାଦର ଏକ ସୁଦୃଢ଼ କକ୍ଷରେ ବନ୍ଦିନୀ କରି ରଖିଲେ । ଯୁବରାଜ ନାନା ଉପାୟରେ ତାହାକୁ ବିବାହରେ ସମ୍ମତ କରାଇବାରେ ଚେଷ୍ଟା କରିବାକୁ ଲାଗିଲେ; କିନ୍ତୁ ରୋଜେତା କୌଣସିମତେ ସ୍ୱୀକୃତ ହେଲାନାହିଁ । ସେତେବେଳେ କୁମାରଙ୍କର ଅନୁଚରମାନେ ତାହା ଉପରେ ଉତ୍ପୀଡ଼ନ ଆରମ୍ଭ କରିବାକୁ ଲାଗିଲେ, ରୋଜେତା ନୀରବରେ ସେମାନଙ୍କର ସକଳ ଅତ୍ୟାଚାର ସହିକରି ରହିଲା । ନିଷ୍ଠୁର ଅନୁଚରମାନେ ନିରୁପାୟ

ହୋଇ ରୋଜେତାକୁ ନଗରର ଧର୍ମମନ୍ଦିରକୁ ଘେନିଗଲେ ଏବଂ ବହୁ ନଗରବାସୀଙ୍କୁ ଉତ୍କୋଚରେ ବଶୀଭୂତ କରି ତାହା ନାମରେ ଗୋଟାଏ ଦୁରପନେୟ କଳଙ୍କ ଘୋଷଣା କରାଇଦେଲେ । ଧର୍ମମନ୍ଦିରର ପୁରୋହିତମାନେ ରୋଜେତାର ଅପରାଧର ବିଚାରକଲେ ଏବଂ ତାହାକୁ ଦୋଷୀସାବ୍ୟସ୍ତ କରି ଅଗ୍ନିରେ ଜୀବନ୍ତ ଦଗ୍ଧ କରିବାକୁ ଆଦେଶ ଦେଲେ ।

ଯେଉଁଦିନ ରୋଜେତା ଅଗ୍ନିରେ ଦଗ୍ଧହେବାପାଇଁ ନଗରର ମଧ୍ୟସ୍ଥଳକୁ ଆନୀତ ହେଲା, ସେ ଦିନ ଯାବତୀୟ ନଗରବାସୀ ସେହି ବୀଭତ୍ସ ଦୃଶ୍ୟ ଦେଖିବା ପାଇଁ ସେଠାରେ ସମବେତ ହେଲେ । ଚତୁଃପାର୍ଶ୍ୱରେ ଶୁଷ୍କକଣ୍ଟକ ତରୁ ସଜ୍ଜିତ କରି ରୋଜେତାକୁ ତଦୂପରି ଦଣ୍ଡାୟମାନ କରାଇ ଦିଆହେଲା । ପୁରୋହିତମାନେ ସେତେବେଳ ପର୍ଯ୍ୟନ୍ତ ରୋଜେତାକୁ ତାର ଅପରାଧ ସ୍ୱୀକାର କରିବା ପାଇଁ ଆଦେଶ କରୁଥାନ୍ତି । ରୋଜେତା ସ୍ଥିର ଅବିଚଳିତ କଣ୍ଠରେ ତେତେବେଳ ପର୍ଯ୍ୟନ୍ତ କହୁଥାଏ, 'ଈଶ୍ୱର ଜାଣନ୍ତି, ମୁଁ ନିର୍ଦ୍ଦୋଷ । ମୁଁ କୌଣସି ଅପରାଧରେ ଅପରାଧିନୀ ନୁହେଁ ।' କାଷ୍ଠରେ ଅଗ୍ନି ସଂଯୋଗ କରିବାପାଇଁ ଅନେକଙ୍କର ହସ୍ତରେ ଦୀର୍ଘ ମଶାଲ ସେତେବେଳକୁ ପ୍ରଜ୍ୱଳିତ ହୋଇସାରିଲାଣି । ପୁରୋହିତମାନେ ଶେଷବାର ରୋଜେତାକୁ ତାହାର ଅପରାଧ ସ୍ୱୀକାର କରିବାପାଇଁ ସୁଯୋଗ ଦେଲେ - ରୋଜେତା ମୁଖରେ ସେହି ଏକକଥା ସେ ନିର୍ଦ୍ଦୋଷ ।

ହୁ ହୁ କରି ରୋଜେତାର ଚତୁଃପାର୍ଶ୍ୱରେ ରାଶୀକୃତ ଶୁଷ୍କକାଷ୍ଠ ପ୍ରଜ୍ୱଳିତ ହୋଇ ଉଠିଲା । ଅଗ୍ନିର ଭୀଷଣତା ସହିତ ସହସ୍ର ନଗରବାସୀଙ୍କର ପୈଶାଚିକ ଅଟ୍ଟଉଲ୍ଲାସ ରୋଳ ମିଶି ଚାରିଆଡ଼େ ଗୋଟାଏ ବିକଟ ପ୍ରତିଧ୍ୱନି ସୃଷ୍ଟିକଲା । କିନ୍ତୁ ସେ ପ୍ରଳୟଧ୍ୱନି ଦିଗନ୍ତରେ ବିଲୀନ ହୋଇଛି କି ନାହିଁ, ଉନ୍ମତ୍ତ ଜନତାର ଶ୍ରବଣ କୁହରରେ ଯେପରି ସହସା ସ୍ୱର୍ଗର କେଉଁ ଅଶ୍ରୁତପୂର୍ବ ବୀଣା ଝଙ୍କାରି ଉଠିଲା ସମସ୍ତେ; ବିସ୍ମୟରେ ଅନାଇ ଦେଖିଲେ, ଅଗ୍ନିର ଲହଲହ ଶିଖା ମଧ୍ୟରେ ଠିଆହୋଇ ନିର୍ବିକାର ରୋଜେତା ଯୁକ୍ତକରରେ ଭକ୍ତିଗଦ୍‌ଗଦ୍ କଣ୍ଠରେ ଜନନୀ ଦୁର୍ଗା (ମେରୀ)ଙ୍କର ସ୍ତୁତିଗାନ କରୁଛି - 'ମା ଗୋ ଜଗଜ୍ଜନନୀ ! ଏ ନିଖିଳ ବିଶ୍ୱର ରଚୟିତା ଧାତାର ଧାତ୍ରୀ ତୁଇ - ତୋର ଅଜ୍ଞାତ କି ଦୋଷ ଅଛି ମା ? ତୋର ସେହି ଦୁଇଟି ରଂଗଚରଣ ତଳେ ନିତ୍ୟ ଚନ୍ଦ୍ର ସୂର୍ଯ୍ୟ ଉଦିତ ହୁଅନ୍ତି । ତୋର ସେହି କନକ-ପ୍ରତିମାକୁ ଘେରି ସପ୍ତଗ୍ରହ ତାରା ନୃତ୍ୟ

କରନ୍ତି ତୋର ଅଗୋଚରର କି ପାପ ଅଛି ଜନନୀ ? ତୁଇ ତ ଜାଣୁ ଗୋ ମା, ତୋର ସନ୍ତାନ ସଂପୂର୍ଣ୍ଣ ନିର୍ଦ୍ଦୋଷ । ତେବେ ଆ ମା, ଓହ୍ଲେଇ ଆ, ସନ୍ତାନକୁ ଅଭୟ ଦେ । ଏହି ଭୀଷଣ ଅନଳ-ତାପ ଅପେକ୍ଷା ଅସହ୍ୟ କଳଙ୍କଭାରରୁ ତୋର ନିରପରାଧୀ କନ୍ୟାକୁ ରକ୍ଷାକର ଜନନୀ !

ସେତେବେଳେ ବାୟୁ ପ୍ରବଳ ବେଗରେ ବହୁଥାଏ । କୋଟିକୋଟି ଅଗ୍ନିଶିଖା ଫୁତ୍କାର କରି ଉର୍ଦ୍ଧ୍ୱକୁ ଉଠି ଯାଉଥାଏ । ଯେଉଁମାନେ ନିକଟରେ ଠିଆ ହୋଇଥିଲେ, ଅଗ୍ନିର ଅସହ୍ୟ ଉତ୍ତାପରେ ସେମାନେ କ୍ରମେକ୍ରମେ ଦୂରକୁ ଘୁଞ୍ଚି ଯାଉଥାନ୍ତି । ରୋଜେତାର ହୃଦ-ଲଗ୍ନ ଯୁକ୍ତକର, ଏକାଗ୍ରତା-ନିମୀଳତ ନୟନଯୁଗଳ, ସେହି ଭକ୍ତି ଅନୁପ୍ରାଣିତ ସୁନ୍ଦର ମୁଖଖଣ୍ଡିକ ଅନଳ ତାପରେ ରକ୍ତାଭ ହୋଇ ଏକ ଅନୈସର୍ଗିକ ଶୋଭାଧାରଣ କରିଥିଲା । ଚାରିଆଡ଼ର ସମବେତ ଜନତା ସେହି ଅପୂର୍ବ ଜ୍ୟୋତିର୍ମୟୀ ମୂର୍ତ୍ତି ଦେଖି ଭକ୍ତି ଓ ବିସ୍ମୟରେ କ୍ଷଣକପାଇଁ ମସ୍ତକ ଅବନତ କଲେ ।

ସହସା ଯେପରି କାହାର କର ସ୍ପର୍ଶରେ ରୋମାଞ୍ଚିତ ହୋଇ ରୋଜେତା ନୟନ ଉନ୍ମୀଳିତ କରି ସବିସ୍ମୟରେ ଚାହିଁ ଦେଖିଲା - ସୁରଲୋକର ଏକ ମହାୟାନ୍ ଦେବଦୂତ ତାହା ପାଖକୁ ଓହ୍ଲାଇ ଆସିଛନ୍ତି । ସେ ତାହାଙ୍କର ବିଚିତ୍ର ବର୍ଣ୍ଣରଞ୍ଜିତ ପକ୍ଷ ବିସ୍ତାର କରି ରୋଜେତାକୁ ଗଭୀର ମମତାର ସହିତ ବେଷ୍ଟନ କରି ଠିଆ ହୋଇଛନ୍ତି ଏବଂ ତାର ବେଦନାତୁର ଚକ୍ଷୁପଲ୍ଲବରେ ତଦୀୟ ସ୍ନିଗ୍ଧଶାନ୍ତିମୟ କୋମଳ କରପୁଟ ସସ୍ନେହରେ ବୁଲାଇ ଦେଉଅଛନ୍ତି । ହର୍ଷ-ବିସ୍ମୟ-ପୁଲକିତା ରୋଜେତା ଅତି ସଂକୋଚର ସହିତ ଥରକପାଇଁ ଆପଣାର ଚାରିଆଡ଼େ ଚାହିଁ ଦେଖିଲା - ସେ ଲହଲହ ଅଗ୍ନିଶିଖା ଆଉ ନାହିଁ । ଅଗ୍ନିଶିଖା ପରିବର୍ତ୍ତନରେ ତାହାର ଚତୁଃପାର୍ଶ୍ୱରେ ବିବିଧ ବର୍ଣ୍ଣର ଏକ ଅପରୂପ ସ୍ୱର୍ଗୀୟ କୁସୁମରାଶି ସ୍ତରେସ୍ତରେ ବିକଶିତ ହୋଇଉଠିଛି ।

ସେଦିନ ସେହି ପ୍ରଥମ ଗୋଲାପ ସ୍ୱର୍ଗରୁ ପୃଥିବୀକୁ ଆସି ଜନ୍ମଗ୍ରହଣ କଲା । ସେହି ପ୍ରଥମ ସେଦିନ ବିଶ୍ୱମାନବ ଭକ୍ତର ପବିତ୍ର ଆତ୍ମାପରି ସ୍ନିଗ୍ଧ ଅଭିରାମ ଗୋଲାପ-କୁସୁମ-ସୌରଭର ଆଘ୍ରାଣ ପାଇଲା ।

ରୋଜେତାର ନାମ ଅନୁସାରେ ନାମ ତାହାର ହେଲା 'Rose' (ରୋଜ୍) ।

*(ସହକାର ୧୨ଶ / ୨ୟ ସଂଖ୍ୟା / ଜ୍ୟେଷ୍ଠ - ୧୩୩୮ ସାଲ)*

# ସନାତନ

ଯାହା ନାଁ ଶୁଣିଲେ ଆଜି ମଧ ଓଡ଼ିଶାର ବୁଢ଼ାବୁଢ଼ୀଙ୍କ ଛାତି ଭୟରେ ଥରେ, ଏ ସେହି ନ'ଅଙ୍କ କାଳର କଥା । ଏପରି ଦୁର୍ଭିକ୍ଷ ସାରା ସଂସାରରେ କେବେ କେଉଁଠି ହୋଇନଥିବ । ପରେପରେ ତିନିବର୍ଷ ବର୍ଷା ଆଦୌ ହେଲାନାହିଁ । ପଡ଼ିଆରେ ଘାସସବୁ ମରି ଜଳିଗଲା, ଗଛମାନଙ୍କରୁ ପତ୍ର ଶୁଖି ଝରିପଡ଼ିଲା ତେବେବି ବର୍ଷା ହେଲାନାହିଁ । ଦୁଃଖ ସହିସହି ଗୁରୁ ବେଦନାରେ ସର୍ବଂସହା ଧରଣୀର ବକ୍ଷ ସେତେବେଳକୁ ଶତସହସ୍ର ଖଣ୍ଡ ହୋଇ ଫାଟି ଯାଇଥାଏ । ଭୂଇଁରେ ବୁଦାଏ ଘାସନାହିଁ, ନଈ ପୋଖରୀରେ ପାଣି ନାହିଁ ଗାଈଗୋରୁ ମଶାମାଛି ପରି ମରିଗଲେ । ଗଛରେ ପତ୍ରନାହିଁ, ଖେତରେ ଶସ୍ୟନାହିଁ ପକ୍ଷୀ ପତଙ୍ଗ ଏଇ ଅଭିଶପ୍ତ ଦେଶ ଛାଡ଼ି ଆଉ କେଉଁ ଦେଶକୁ ଉଡ଼ିଗଲେ । ଉପରେ ପିଙ୍ଗଳ ଆକାଶ, ତଳେ ବିକଳା ଧରଣୀ ମଝିରେ ଦେଢ଼କୋଟି ନିରନ୍ନ କଙ୍କାଳ । ଧାନ ଚାଉଳ ତ ଦୂରର କଥା ସାମାନ୍ୟ କୁଣ୍ଡା ମୁଠାଏ, ଶାଗ କେରାଏ ମଧ ଲୋକଙ୍କ ପକ୍ଷରେ ସପନ ହେଲା । ଲୋକେ 'ହା ଅନ୍ନ, ହା ଅନ୍ନ' କରି ପିଙ୍ଗଳ ଆକାଶ ଆଡ଼କୁ ଦିନରାତି କାତର ନୟନରେ ଚାହିଁ ରହିଲେ ତେବେବି ପାଣି ବିନ୍ଦୁଟିଏ ଆକାଶରୁ ଝରିଲା ନାହିଁ ।

ସନାତନର ଘର ଗୋଟିଏ ଛୋଟ ଗାଁରେ । ଘରେ ବାପା ମାଆ ଆଉ ସାନ ଭାଇ । ସନାତନକୁ ସେତେବେଳେ ପନ୍ଦର ବର୍ଷ ।

ଦୁଇବର୍ଷ ହେଲା ଜମିରୁ ଗୋଟିଏ ଧାନ ମିଳିନାହିଁ । ଭାତ ପାଇଁ ଜମିବାଡ଼ି, ଘରର ଜିନିଷପତ୍ର ଯେତେ, ସେତେବେଳକୁ ସବୁ ବିକାହୋଇ ସରିଲାଣି - ବାକି ଥାନ୍ତି ଗାଈବାଛୁରି କେତୋଟି । ଏତେ ଆଦର କରି ପିଲାଟି ଦିନରୁ ନିଜ ହାତରେ ଏଡ଼େଟି ଲେଖାଏଁ କରିଛନ୍ତି - ଏତେ ଦୁଃଖ କଷ୍ଟରେ ମଧ ବିକିବାକୁ ମନ ବଳୁନଥାଏ । ଶେଷକୁ ଅବସ୍ଥା ଏତେ ଶୋଚନୀୟ ହୋଇ ଆସିଲା ଯେ, ଚାଉଳ ସେର ସେରକ ପାଇଁ ଗାଈବାଛୁରି ଗୋଟିଗୋଟି ହୋଇ ବିକ୍ରି ହୋଇଗଲେ । ସବୁ ତ ଆଗରୁ ଯାଇଥିଲା -

ଗାଈବାଛୁରି ଯେ କେଇଟି ଥିଲେ ସେ ବି ଗଲେ । ଘରେ ଆଉ କିଛି ନାହିଁ ଏବେ ଉପାୟ କ'ଣ !

ପିଲା ଦି'ଟା ଭୋକ ସହି ପାରନ୍ତି ନାହିଁ । ଆଜକୁ ତିନିଚାରିମାସ ହେଲାଣି ବାପା ମାଆ ଦୁଇଜଣ ପିଲାଙ୍କୁ ଦୁଇଓଳି ମୁଠିଏ ମୁଠିଏ ଖାଇବାକୁ ଦେଇ ନିଜେ ବକତେ ଖାଇ ବକତେ ଓପାସ ରହୁଛନ୍ତି ।

ଦିନେ ସନାତନର ବାପ ତାର ମା'କୁ ବଡ଼ ବିକଳ ହୋଇ କହିଲା, ମୁଁ ନଥାନ୍ତିକି ! ତାଙ୍କର ମୁଁ ଜନ୍ମଦାତା, ବାପ ମୁଁ ତାଙ୍କର ସେମାନଙ୍କର ମୁହଁରେ ଭାତ ଗଣ୍ଡିଏ ଗଣ୍ଡିଏ ଦେଇ ବଞ୍ଚେଇ ରଖନ୍ତି କ'ଣ, ତାଙ୍କ କପାଳକୁ ଯାହା ଗଣ୍ଡାଏ ମିଳୁଚି, ସେଥିରେ ମୁଁ ଭାଗୀ ହେଉଛି । ମୁଁ ଏଠୁ ଚାଲିଯାନ୍ତି ଯଦି, ମୁଁ ଯାହା ବସିବସି ଖାଉଚି, ସେତକ ଅଧିକା ପାଇଲେ ପିଲା ଦି'ଟା ବଞ୍ଚିଯାନ୍ତେ ।

ତୁମେ ଆମକୁ ଛାଡ଼ିଯିବ ଯେବେ, ଆମର ଦଶା କ'ଣ ହେବ ! କାହା ମୁହଁକୁ ଅନେଇ ଆମେ ଏ କାଳ କାନ୍ତାରରେ ଦିନ କାଟିବୁ ? କାହା ଭରସାରେ ଆମେ ଆଉ ଏ ସଂସାରରେ ରହିବୁ ? ହତଭାଗୀ ଆଖିରୁ ଲୁହ ଦୁଇଧାର ହୋଇ ବୋହି ଯାଉଥାଏ ।

ତୁମେ ଏତେ ଅଥୟ, ଏତେ ବିକଳ କାହିଁକି ହଉଚ ? ଭଗବାନ ନିଶ୍ଚେ ପିଲାଙ୍କୁ ଦାନା ଜୁଟେଇବେ । ରାଜ୍ୟଯାକ ସମସ୍ତଙ୍କୁ ଦୁଃଖ ପଡ଼ିଛି ନା ତୁମକୁ ଏକା ? କି ଉପାୟ ଅଛି ଯେ ତୁମେ କରନ୍ତ । ଇମିତି ବିକଳ ହେଲେ କିଛି ହବ ନାହିଁ । ମୋର ଆଉ ଯେ ଏଇ କେଇଖଣ୍ଡ ଗହଣା ଅଛି, ନେଇ ଯା, ବଜାରରେ ଦେଖେଇବ; କେହି ନିଏ ଯଦି ସେଇ ପଇସାରେ ଚାଉଳ କିଣି ଆଣିବ ପିଲାଙ୍କର ଦୁଇଦିନ ହେଲେ ସେଥିରେ ଚଳିଯିବ । ଏତିକି କହି ସେ ନିଜ ଦେହରୁ ଗହଣା କେଇଖଣ୍ଡି କାଢ଼ି ସ୍ୱାମୀଙ୍କ କାନିରେ ବାନ୍ଧିଦେଲା । ସ୍ତ୍ରୀର ଏ ନଗ୍ନ ମୂର୍ତ୍ତି ଦେଖି ସ୍ୱାମୀର ଆଖି ଲୁହରେ ଛଳଛଳ କରୁଥାଏ ।

ସ୍ତ୍ରୀର ଏତକ କଥାରେ ହୃଦୟରେ ଟିକିଏ ବଳ ହେଲା । ଗହଣା କେଇଖଣ୍ଡି କାନିରେ ଧରି, ମନେମନେ ଭଗବାନଙ୍କୁ ଡାକି, ବିଚରା ଘରୁ ବାହାରି ପଡ଼ିଲା । ଦୁଇକୋଶ ଦୂରରେ ଯାଇ ବଜାର । କାଲି ଦିନଯାକ ପେଟକୁ ପାଣି ଟୋପିଏ ହେଲେ ଯାଇନାହିଁ; ବାଟରେ ଏକ ଗଛତଳେ ଟିକିଏ ଆସ୍‌କତ ମେଣ୍ଟାଇ ସେ ଗଛତଳେ

ଟିକିଏ ଥକାମାରି ବଜାରରେ ଯାଇ ପହଞ୍ଚିଲା ବେଳକୁ ଦିନ ଦି'ପହର । କେତେ ଜାଗାରେ କେତେ ଲୋକଙ୍କୁ ଗହଣା ଦେଖେଇଲା କେହି ଆଡ଼ ଆଖିରେ ଅନେଇଲେ ନାହିଁ । ଶେଷକୁ ସବୁ ଗହଣା ରଖି ଚାଉଳ ସେରେ ଦେବାଲାଗି କେତେ କାହାକୁ ମିନତି କଲା କେହି ଦେଲେ ନାହିଁ । କିଏ ଦେବ ? କାହା ପାଖରେ ସେପରି ଥିଲେ ତ ? ସେତେବେଳେ ଅବସ୍ଥା ଏପରି ଯେ, ଟଙ୍କା ମୁଠାଏ ଦେଲେ ବି କେହି ଚାଉଳ ମୁଠାଏ ଦେବନାହିଁ । ସେତେବେଳକୁ ଦେଶରୁ ଲକ୍ଷ୍ମୀ ଛାଡ଼ି ଯାଇଥାଏ, ଉତ୍କଳମାତାର ଅନ୍ନଭଣ୍ଡାର ଶୂନ୍ୟ ପଡ଼ିଥାଏ ।

ସାନ ପିଲାଟି ଭୋକରେ ଆତୁର ହୋଇ କାନ୍ଦୁଥାଏ । ମା' ପ୍ରବୋଧନା ଦେଇ ତାକୁ ତୁନି କରୁଥାଏ - 'ବାପା ବଜାରକୁ ଯାଇଛନ୍ତି, କେତେ ଚିଜ ଆଣିବେ, ସକାଳୁ ଗଲେଣି, ଏଇସାତ୍ ଆସି ପହଞ୍ଚିବେ । ମୋ ବାପଟା ପରା ତୁନି ହ ।' ଦି'ଜଣଯାକ ଅନେଇ ରହିଥାନ୍ତି ବାପା କେତେବେଳେ ଆସିବେ ।

ସବୁ ଜାଗାରୁ ହତାଶାର ତାଡ଼ନା ପାଇ ଗଭୀର ନୈରାଶ୍ୟ, ଅସହ୍ୟ ଦୁଃଖରେ ବାପର ବୁକୁ ଫାଟି ଯାଉଥାଏ । ଘରେ ପହଞ୍ଚିଲାବେଳକୁ ରାତି ପହଡ଼େ କି ପାଞ୍ଚ ଘଡ଼ି । କାହାକୁ କିଛି ନକହି ବିଚାରା କାନ୍ଥକୁ ଆଉଜି ବସିପଡ଼ିଲା । ଦେହରୁ ଝାଳ ଗୋଟାପରି ବହି ଯାଉଛି, ମୁହଁରେ କଥା ନାହିଁ - ଖାଲି ଦୀର୍ଘନିଃଶ୍ୱାସ । ଘଡ଼ିକ ପରେ ସ୍ତ୍ରୀକୁ କହିଲା, କେହି ନେଲେନାହିଁ, ଏବେ ଉପାୟ କ'ଣ କୁହତ ? କଥା ପଦକରେ କେତେ ଯୁଗର ପୁଞ୍ଜିତ କାତରତା ଲାଗି ରହିଥାଏ ।

ସନାତନ ପ୍ରତିଦିନ ବାପାମା'ଙ୍କର ଏ ଦୁଃଖ ଅବସ୍ଥା ଦେଖେ, ତାଙ୍କର କାନ୍ଦଣା, ତାଙ୍କର ବିକଳ କଥା ଶୁଣେ ମନରେ ତାହାର ଭାରି ଦୁଃଖ ହୁଏ । ବାପର ଆଜି ଦିନର ଏ କାତର ମୁହଁ, ଗଦ୍‌ଗଦ୍ ବିକଳ କଥାଶୁଣି ଭାରି ବାଧିଲା ତାକୁ ବାରି ଆଡ଼କୁ ଯାଇ ଅନ୍ଧରରେ କାନ୍ଦିଲା କେତେ ।

ସମସ୍ତେ ଦୁଇଦିନ ହେଲା ଓପାସ ରହିଲେଣି । ସାନ ପିଲାଟି ଭୋକରେ ଅଧୀର ହୋଇ କାନ୍ଦୁଥାଏ । ପିଲାଙ୍କ କଷ୍ଟଦେଖି ବାପାମାଆଙ୍କ ଆଖିରୁ ଲୁହ ବହି ଯାଉଥାଏ । ସନାତନ ଦେଖିଲା ବାପା ମାଆ ଚାରିଆଡୁ ନିରାଶ ହେଲେଣି । ଚାଉଳ ମୁଠାଏ ଆଣିବାକୁ ତାଙ୍କର ଆଉ ଉପାୟ ନାହିଁ କି ବଳ ନାହିଁ ।

ରାତିସାରା ସନାତନ ଆଖିରେ ନିଦ ନାହିଁ, ଅବସନ୍ନ ମନରେ କେତେ କଥା ଭାବୁଥାଏ - 'ଚାଉଳ ମୁଠିଏ ଆଣିବାକୁ ବାପା ମାଆଙ୍କର ଆଉ ତ' ବଳ ନାହିଁ । ମାଆ ଆମରି ପାଇଁ ଓପାସ ରହିରହି ଥକିଲାଣି - କାଲି କିଛି ନ ଖାଇଲେ ମା' କଣ ଆଉ ବଞ୍ଚିବ ! ବାପା କ'ଣ ଆଉ ବିଛଣାରୁ ଉଠି ପାରିବେ ? ଆଖି ଲୁହରେ ତକିଆ ତିନ୍ତିଯାଏ । ରାତି ପାହିଛି କି ନାହିଁ, କାହାକୁ କିଛି ନକହି ସନାତନ ଘରୁ ଚାଲିଗଲା ।

ସକାଳରୁ ଆସି ସଞ୍ଜ ହେଲା, ସେ ସେଇମିତି ବଣଭିତରେ ଖୋଜି ବୁଲୁଥାଏ କଅଁଳ ପତର, ଶାଗ କେରାଏ କି ଫଳମୂଳଟିଏ ପାଇଲେ ଘରକୁ ନବ । ଏତେ ଖୋଜିଲା, ଏତେ ବୁଲିଲା କିଛି ପାଇଲା ନାହିଁ । ନିରାଟ ନିଦାଘ ଖରା ଜଳେଇ ପୋଡ଼େଇ ସବୁ ସାରି ଦେଇଥାଏ । ଘରେ ପହଞ୍ଚିଲା ବେଳକୁ ସନାତନର ଦେହ ଭୋକରେ ଥରୁଛି ।

ବାପା ମା କେତେ ଆଡ଼େ ବୁଲି ବୁଲି ଚାଉଳ ଗଣ୍ଡାଏ ମାଗିଆଣି ସେଇ ସେତକ ଫୁଟେଇ ଦେଇଥାନ୍ତି । ସାନ ପିଲାଟା ଯାହା ଖାଇଥାଏ, ବାକିତକ ସନାତନ ପାଇଁ ରଖିଦେଇ ଅଧୀର ହୋଇ ଅନେଇ ରହିଥାନ୍ତି ପୁଅ କେତେବେଳେ ଆସିବ । ସନାତନକୁ ଦେଖିଲାକ୍ଷଣି ମା' ପୁଅମୁହଁରୁ ଝାଳ ପୋଛିଦେଇ କଂସାଟିରେ ଭାତଗୁଣ୍ଡିଏ ଆଣି କହିଲା, ଖାଇଦେ ବାପ ଏତକ, ଭୋକରେ ମୁହଁ କାନ କୁଆଡ଼େ ପଶିଗଲାଣି । ମା' ଯେତେ କହିଲା, ବାପା ଯେତେ ବୁଝେଇଲେ ସନାତନ ଖାଇଲା ନାହିଁ । ହସିହସି ମା'କୁ କହେ ନା, ମା' ବଣରେ ଆଜି ମୁଁ ପେଟଭରି ବେଶ୍ ଖାଇଚି । କାଲି ଯାହା ପାଇବୁ ମୋ ପାଇଁ ରଖିଦେଇଥିବୁ; ବଣରେ ଯଦି କିଚି ନ ମିଳିବ ଆସି ଖାଇବି । ମୋ ରାଣ ମା; ମୋର ଖାଇବାରେ ଆଦୌ ଇଚ୍ଛାନାହିଁ । ସନାତନ ମନରେ - ବାପା ମା' ଯେଉଁଦିନ ଯାହା ପାଉଛନ୍ତି, ତାଙ୍କରି ମୁହଁରେ ଆଣି ଦଉଛନ୍ତି, ବଳିଲେ ଖାଉଛନ୍ତି, ନବଳିଲେ ନାହିଁ । ଭୋକରେ ତାଙ୍କ ଜୀବନ କ'ଣ ନ ହେଉଥିବ । ଆଜିର ଏ ଭାତ ଗୁଣ୍ଡିଏ ସେମାନେ ମୁହଁରେ ଦେଇ ତୋରାଣି ଟୋପିଏ ଟୋପିଏ ଯଦି ପିଅନ୍ତେ, ବିକଳ ଜୀବନ ତାଙ୍କର ଶୀତଳ ହୁଅନ୍ତା । ଯେତେ ଲୁଚେଇଲେ କ'ଣ ହବ, ପୁଅର ମନକଥା, ପୁଅର ପେଟକଥା ମା' ପାଖରେ କ'ଣ ଅଛପା ରହିବ ? ମା' ଜାଣିପାରିଲା, ସନାତନ ଆଜି ବଣରେ କିଛି ଖାଇନାହିଁ - ଖାଇଥିଲେ କ'ଣ ଦିହ ଇମିତି ଥରୁଥାନ୍ତା ? ଖାସ୍ ତାଙ୍କରି ପାଇଁ ସନାତନର ଏ ଅଝଟପଣିଆ । ଆଉ ଲୁହ ସମ୍ଭାଳି ହେଲାନାହିଁ

ପୁଅକୁ ଲୁହ ଲୁଚେଇବା ପାଇଁ ମା' ଅନ୍ୟଆଡ଼େ ଚାଲିଗଲା । ସାନଟି ସକାଳୁ ଗୁଣ୍ଡାଏ ଖାଇ କୁଆଡ଼େ ଯାଇଥିଲା; ଘରେ ପହଞ୍ଚିଲା କ୍ଷଣି ବିକଳ ହୋଇ କାନ୍ଦିଲା ଭୋକ କଲାଣି ମାଆ । ଛୁଆର ଏ ବିକଳ ସହି ନପାରି ମା ସେହି ଭାତ ଆଣି ତାକୁ ଖାଇବାକୁ ଦେଲା । ସନାତନ ମନରେ ଆଜି ଭାରି ଖୁସି ନିଜେ ଭୋକ ସହି ଯା ଭାଇକୁ ଭୋକକଷ୍ଟରୁ ରଖିଲା ।

ଏବେ ପ୍ରତିଦିନ ସକାଳୁ ସନାତନ ଏକାକୀ ବଣକୁ ଚାଲିଯାଏ । ଗାଁ ତଳ ବଣରେ ତ କିଛି ନାହିଁ, ସେଥିପାଇଁ ତାକୁ ଗହୀର ବିଲ ଆରପାଖ ଗହଳିବଣକୁ ଯିବାକୁ ପଡ଼େ । ଦିନଯାକ ଫଳମୂଳ ଶାଗପତର ଖୋଜେ । ଗହଳି ଗଛର ଛାଇ ଭେଦି ଯେଉଁଠି ଖରା ପଡ଼ିପାରେନା, ସେଇ ଜାଗାମାନଙ୍କରୁ ଦିନେ ଦିନେ ଶାଗପତର କେରାଏ ପାଇଯାଏ । କୋଉ କୋଉ ଦିନ ଦରଶୁଖିଲା ଫଳମୂଳ ଦି'ଟା ଗୋଟାଏ ବି ପାଇଯାଏ । ଯେଉଁଦିନ ପାଇଯାଏ, ସେଦିନ ତାର ଆନନ୍ଦର ଆଉ ସୀମା ରହେନାହିଁ । ବାଛିବାଛି ଶୁଖିଲା ଫଳମୂଳ ଏଣୁତେଣୁ ଗୋଟାଏ ଖାଇଦେଇ, ଆଉ ଯେତେ ଭଲଭଲ, କାନିରେ ବାନ୍ଧିଆଣି ମା' ପାଖରେ ଦିଏ । ମା'କୁ ଦେଇ ହସିହସି କହେ – 'ଆଜି ମୁଁ ଖୁବ୍ ଖାଇଚି ମା' ।

ଦୁଃଖରେ କଷ୍ଟରେ ଏତେଦିନ ବିତିଗଲା, ଏଣିକି ଆଉ ଦିନ ସରିବାକୁ ଚାହେଁନା ଓପାସ ରହିରହି ସମସ୍ତେ ଥକିଲେଣି । ବାପ ବିଚରା ଏତେ ଦୁର୍ବଳ ହୋଇ ପଡ଼ିଲାଣି ଯେ, ଉଠି ଚାଲିବାର ଶକ୍ତି ଆଉ ନାହିଁ । ଅତି କଷ୍ଟରେ ଦୁଇ ପାହୁଲ ଗଲେ ଦେହ ଥରଥର ହୋଇ ଥରୁଛି, ଏହା ଉପରେ ପୁଣି ଏଇ କେଇଦିନ ହେଲା ଦେହରେ କଣ ଗୋଟାଏ ରୋଗ ଆସି ଦେଖାଦେଇଛି । ଦିନକୁ ଆଠ ଦଶଥର ଝାଡ଼ା ହେଉଛି, ଦେହ ହାତ ସବୁ ଫୁଲିଗଲାଣି । ଏଇ ରୋଗ ଆଜିକାଲି ସମସ୍ତଙ୍କୁ ଧରୁଛି, ଏଇ ରୋଗରେ ହଜାର ହଜାର ଲୋକ ଆଖି ବୁଜୁଛନ୍ତି । ଭାତଗଣ୍ଡାକ ପାଇଁ ଲକ୍ଷଲକ୍ଷ ଲୋକଙ୍କ ପିଣ୍ଡରୁ ପ୍ରାଣ ଛାଡ଼ି ଯାଉଛି । ଜାଣିପାରିଲା – ସେ ଆଉ ବେଶିଦିନ ବଞ୍ଚିପାରିବ ନାହିଁ । ହୁଏତ ଏଇ ତିନି ଚାରିଦିନ ଭିତରେ ତାକୁ ଆଖି ବୁଜିବାକୁ ହେବ । ଘରେଘରେ ଆଜି ଶ୍ମଶାନ, ଶବ ଉପରେ ଶବ ପଡ଼ି ଘର ଭିତରେ ପଚି ଯାଉଛି; ଦରମଲା ଲୋକଙ୍କ କୁକୁର ଶିଆଳ ଘର ଭିତରୁ ଟାଣି ନେଉଛନ୍ତି – କେହି ସେ ଆଡ଼କୁ ଅନାଉ ନାହିଁ । ସେ ମରିଗଲେ ତାକୁ ନେଇ ପଦାରେ କିଏ ପକେଇବ ? ପିଲାଛୁଆ ଭୟରେ

କାତର ହୋଇ ପଡ଼ିବେ । ଏହାଠାରୁ ଏତିକିବେଳୁ ଘରୁ ଚାଲିଯିବା ଭଲ - ସେଆଡ଼େ କୋଉଆଡ଼େ ପଛକେ ଜୀବନ ଛାଡ଼ିଯାଉ । ବୃଥା ଯାତନାରୁ ପିଲାଏ ରକ୍ଷା ପାଇବେ ।

ଦିନେ ପିଲା ଦୁଇଟି କୁଆଡ଼େ ଯାଇଥାନ୍ତି, ସ୍ତ୍ରୀକୁ ଡାକି ସେ କହିଲା - ପିଲା ଦୁଇଟା ଖାଇବା ବିନା ସରିଗଲେଣି । ଆମର ଏ ଅଞ୍ଚଳରେ ତ କିଛି ମିଳୁନାହିଁ, ମୁଁ ଯାଏଁ ଆଉ କୋଉ ଆଡ଼କୁ, କିଛି ହେଲେ ମାଗିଯାଚି ଆଣିବି । ଘରେ ସବୁବେଳେ ମୁଣ୍ଡରେ ହାତଦେଇ ବସିଲେ କ'ଣ ହେବ ? ଆଉ ଓପାସ ରହିଲେ ପିଲା ଦି'ଟା କ'ଣ ବଞ୍ଚି ପାରିବେ ? ଦୁଇଜଣଙ୍କ ଆଖିରେ ଲୁହ ଟଳଟଳ କରୁଥାଏ ।

କି କଥା କହୁଚ ତୁମେ ? ଦିହରେ ଏତେ ଟିକିଏ ବଳ ନାହିଁ, ଦିହହାତ ଫୁଲିଚି, ପାହୁଲେ ଗଲାବେଳକୁ ବରଡ଼ାପତର ପରି ଥରୁଚ - ଏଥିରେ ଫେର୍ କହୁଛ, ଏ ଅଞ୍ଚଳ ଛାଡ଼ି ଆଉ କୋଉ ଅଞ୍ଚଳକୁ ଯିବାକୁ କି ଆମର ସେ ନହେଲା ନାହିଁ ।

ମୋ ଆଗରେ ତୁମେ ମରିବ କି ତୁମ ଆଗରେ ମୁଁ ମରିବି, କି ଆମରି ଆଖି ଆଗରେ ଅନ୍ନ ବିନା ପିଲା ଦି'ଟାଙ୍କର ପିଣ୍ଡରୁ ପ୍ରାଣ ଛାଡ଼ିବ ଏସବୁ କଥା କ'ଣ ଦିହ ସହିହବ ? ମୁଁ ଏଇ ପାଖରେ ଗୋଟାଏ ଜାଗାକୁ ଯାଉଚି ତୁମେ ମନରେ କିଛି ଭାବିବ ନାହିଁ । ଭଗବାନ ମୋର ସବୁ ମଂଗଳ କରିଦେବେ ।

ରାଇଜଯାକ ଘରେଘରେ ଲୋକ ମରୁଚନ୍ତି ଆମେ ମରିଯିବା । ସେଥିରେ କ'ଣ ଅଛି ? ଦୁଃଖରେ କଷ୍ଟରେ ଏତେଦିନ ଏକା ସାଂଗରେ ଦିନ କାଟି ମରିଲାବେଳକୁ ଛଡ଼ାଛଡ଼ି ହେବା ଭଲ ନୁହେଁ । ମୁଁ ମରିସାରେ, ତୁମେ ତୁମର ଯୁଆଡ଼େ ଯା ପଛକେ ।

ସ୍ତ୍ରୀ କଥାରେ ସ୍ୱାମୀର ମନ ଟିକିଏ ବଦଳିଲା ନାହିଁ । ରାତିଯାକ ତା ଆଖିକୁ ନିଦ ନାହିଁ - ସେ ସ୍ତ୍ରୀକୁ ଲୁଚିକରି ଘରୁ ଯିବ କିପରି ? ସେତେବେଳକୁ ପାହାନ୍ତା ଉଠିକି ଦେଖିଲା ସମସ୍ତଙ୍କୁ ନିଦ ହୋଇଛି । ବୁଡ଼ିଗଲା ଜହ୍ନର ମ୍ଳାନ କିରଣ ଝରକା ବାଟେ ଆସି ଘରେ ପଡ଼ିଥାଏ । ସନାତନ ମୁହଁକୁ ଦେଖିଲା ବେଳକୁ ଲାଗୁଛି ସତେ କି ତା ହୃଦ ଅନନ୍ତ ଦୁଃଖରେ ଫାଟି ଯାଉଛି । ସାନପିଲାଟି ମା'ର ଶୀର୍ଣ୍ଣ ସ୍ତନ ଆକୁଳରେ ମୁହଁରେ ଦେଇ ଶୋଇଛି । ସ୍ତ୍ରୀ ତାହାର ତ ସବୁ ସରିଗଲାଣି କଷ୍ଟରେ ଖାଲି ଯା ନିଃଶ୍ୱାସ ମାରୁଛି । ପୁଅ ଦୁହିଁଙ୍କୁ ଥରେଥରେ ଆଉଁସି ଦେଇ ନୀରବରେ କେତେ କଲ୍ୟାଣ କଲା । ସ୍ତ୍ରୀକୁ ଗଦ୍‌ଗଦ୍ ହୃଦରେ କେତେ ପ୍ରଶଂସା କଲା, କେତେ କୃତଜ୍ଞତା ଜଣେଇଲା । ଶେଷଥରକ ପାଇଁ ସମସ୍ତଙ୍କୁ ଭଲକରି ଆଉଥରେ ଦେଖି ସାନ ପରିବାରଟି

ଠାରୁ ଲୁହ ପୋଛିପୋଛି ବିଦାୟ ନେଲା । ତାପରେ ବାଡ଼ିଖଣ୍ଡିଏ ଆଶ୍ରାକରି ଘରୁ ଆସ୍ତେଆସ୍ତେ ବାହାରିଗଲା । ଖଣ୍ଡେ ଦୂର ଯାଇଛି, ପଛକୁ ଥରେ ଅନେଇ ଦେଖିଲା ମ୍ଳାନ ଚନ୍ଦ୍ରାଲୋକରେ ଘର ଖଣ୍ଡିକ ତାହାର ସତେକି କାତର ନୟନରେ ତାହାରି ଆଡ଼କୁ ଅନେଇ ରହିଛି । ଘର ସ୍ୱର୍ଗଠାରୁ ଯେ ଏ ଆହୁରି ସୁନ୍ଦର, ଆହୁରି ଆନନ୍ଦର । ଏଇ ଘର ଖଣ୍ଡିକରେ କେତେ ସ୍ମୃତି ଲାଗି ନରହିଛି । କେତେ କାଳରୁ ତାହାର ପୂର୍ବପୁରୁଷମାନେ ଏଥିରେ ଜୀବନ କଟେଇଛନ୍ତି । ଏଇ ଦୁଃଖର ଦିନ ଆସିବା ଆଗରୁ ସେ ନିଜେ ଏଥିରେ କେତେ ସୁଖଶାନ୍ତିରେ ଦିନ ନ କାଟିଛି । ଶୁଷ୍କ ନୟନରୁ ପୁଣି ଦୁଇଧାର ହୋଇ ଅଶ୍ରୁ ବହିଗଲା । ମୁଣ୍ଡରେ ଦୁଇହାତ ଯୋଡ଼ି ପିଲାଛୁଆଙ୍କୁ ଜଗନ୍ନାଥଙ୍କୁ ସଁପି ଦେଇଗଲା – 'ଜଗନ୍ନାଥ, ପିଲାଛୁଆ ଏବେ ତୁମକୁ ଲାଗିଲେ । ଗାଁର କିଛି ଦୂରରେ ବତୀ, ବାଡ଼ି ଢିରା ମାରିମାରି ସନାତନର ବାପ ସେଇ ବଣ ଭିତରକୁ ଗଲା । ସେହିଦିନରୁ ଆଉ ତାକୁ କେହି ଦେଖିନାହିଁ ।

ଦଶବାର ଦିନ ହେଲା ସନାବାପର ଆଉ ଦେଖାନାହିଁ । ସ୍ତ୍ରୀ ଏବେ ଜାଣିପାରିଲା ସ୍ୱାମୀ କେଉଁଠାକୁ ଯିବାକୁ କହୁଥିଲେ – ଯେଉଁଠିକି ଗଲେ ଆଉ କେହି ଫେରି ଆସେ ନା, ସ୍ୱାମୀ ସେଇ ଅଦେଖା ରାଇଜକୁ ଚାଲିଗଲେ । ହତଭାଗୀ ନିହାତି ବିକଳ ହୋଇ କାନ୍ଦେ । ଏକେ ତ ଶାଗପତର, ଏଣୁ ତେଣୁ ଫଳମୂଳ ଖାଇଖାଇ ଦିହ ଭାଂଗି ପଡ଼ିଥିଲା – ତା ଉପରେ ପୁଣି ଏ ବୁକୁଫଟା ଦୁଃଖ । ବିଚାରୀ ଯାହା ଟିକିଏ ବୁଲାଚୁଲା କରୁଥିଲା, ସ୍ୱାମୀ ଗଲା ଦିନରୁ ତା ବି ଆଉ ନାହିଁ । ଦେହର ବଳ, ମନର ଧୈର୍ଯ୍ୟ ସେ ଗଲାଦିନରୁ ସବୁ ତୁଟିଗଲାଣି ।

ବାପକୁ ଏବେ ଘରେ ନଦେଖି ପିଲାଏ 'ବାପା କୁଆଡ଼କୁ ଗଲା' ବୋଲି ପଚାରନ୍ତି । ମା' ତାଙ୍କୁ ଭୁଲେଇବା ଲାଗି କହେ – 'ତୁମେ ସବୁବେଳେ ଖାଇବା ଲାଗି କାନ୍ଦିଲ । ଆମର ତ ଏଠି କିଛି ମିଳୁନାହିଁ । ବାପା ଦୂର ବାଟକୁ ଯାଇଛନ୍ତି ତୁମପାଇଁ ଖାଇବା ଚିଜ ସବୁ ଆଣିବେ । ପିଲାଙ୍କୁ ପଛକରି ଅଞ୍ଚଳରେ ଲୁହ ପୋଛେ ।

ମା'ର ଢଙ୍ଗ ଦେଖି ସନାତନ ବାପକଥା ଜାଣି ପାରିଲାଣି ଏ ଦୁଃଖ ସହି ନପାରି ବାପା ଚାଲିଗଲେ । ମା' ଆଉ ବିଛଣାରୁ ଉଠୁ ନାହିଁ । ସାନଭାଇ ଖାଇବା ଲାଗି ଦିନରାତି କାନ୍ଦୁଛି । ଭାବିଭାବି ସନାତନ ମନ ଦୁଃଖରେ ଅବସନ୍ନ ହୋଇପଡ଼େ । ମା' ଭାଇଙ୍କ ମୁହଁରେ ଭାତ ଗୁଣ୍ଡିଏ ଗୁଣ୍ଡିଏ ଦେଇ କିପରି ତାଙ୍କୁ ବଞ୍ଚେଇ ରଖିବ ଭାବିଲା ବେଳକୁ ତା ମୁଣ୍ଡରେ ଆକାଶ ଭାଂଗିପଡ଼େ ।

ଏବେ ଘରର ସବୁ ଭାର ସନାତନ ଉପରେ ପ୍ରତିଦିନ ରାତି ନପାହୁଣୁ ଉଠେ, ଉଠି ଚାଉଳା ମୁଠାଏ ପାଇଁ କୋଶକୋଶ ବାଟ ଯାଏଁ, ଦଶ ଦୁଆର ବୁଲେ ଦଶଜଣଙ୍କୁ କାକୁତି ମିନତି କରେ । ଏତେ ପଥ ଯାଇ ଏତେ ବିକଳରେ ଲୋକଙ୍କୁ ଚାଉଳ ମୁଠାଏ ପାଇଁ ମିନତି କରେ ସେଥିରେ ପୁଣି କେଉଁ ଦିନ ପାଏ, କେଉଁଦିନ ପାଏନା । ଯେଉଁଦିନ ପାଏନା ସେଦିନ ବିକଳ ମନରେ ଘରକୁ ଫେରେ, ଆଉ ଯେଉଁଦିନ ପାଇଯାଏ, ସେଦିନ ତାହାର ଆଉ ଆନନ୍ଦର ସୀମା ରହେନା - ଚଞ୍ଚଳ ଚଞ୍ଚଳ ଘରକୁ ଆସି ଛିନ୍ନ ଅଞ୍ଚଳରେ କେତେ ଯତ୍ନରେ ବନ୍ଧା ଚାଉଳ ଗଣ୍ଠାକ ଖୋଲି ମା'କୁ ହସିହସି ଦେଖାଏ । ମା' ପୁଅକୁ ଛଳଛଳ ଆଖିରେ କେତେ ଆଶୀର୍ବାଦ କରେ; ପୁଅମନ ଖୁସି କରିବାଲାଗି କ୍ଷଣକ ପାଇଁ ହସେ ।

କିନ୍ତୁ ଏପରି ଭାଗ୍ୟର ଦିନ ବି ଆସ୍ତେଆସ୍ତେ ସରିଆସିଲା ସକାଳୁ ସଞ୍ଜଯାଏ ବୁଲିଲେ ମଧ୍ୟ ଚାଉଳ ଗଣ୍ଡାଏ ଆଉ ମିଳୁନାହିଁ । ବଣରୁ କେତେବେଳେ କିମିତି ଯେ ଫଳମୂଳ ଗୋଟାଏ ମିଳୁଥିଲା, ସେସବୁ ଏବେ ଶୁଖି ଝରିପଡ଼ିଲାଣି । ଗହଳି ବଣରେ ଯେ ଶାଗପତର କେରାଏ କେରାଏ ମିଳୁଥିଲା, ସେସବୁ ଏବେ ବୈଶାଖୀ ଝାଞ୍ଜିରେ ମରି ଶୁଖିଗଲାଣି । ଦିନଯାଏ, ଦୁଇଦିନ ଯାଏ, ତିନିଦିନ ଯାଏ, ମା' ପୁଅ ତିନିହେଁ ଉପାସରେ ପଡ଼ିଥାନ୍ତି । ହଜାର ହଜାର ଲୋକ କାତର ପ୍ରାଣରେ ଅନ୍ନପାଇଁ 'ହାହାକାର କରୁଛନ୍ତି ଭିକ ଦବ କିଏ ? କିପରି ମା' ଭାଇ ଜୀବନକୁ ବଞ୍ଚେଇ ରଖିବ, ଚିନ୍ତା କରିକରି ସନାତନର ବୁଦ୍ଧି ହଜିଯାଏ ।

ସନାତନ ନିଜେ ଶୁଖି ଶୁଖି ସଳିତା ହେଲାଣି ଚମଡଙ୍କା ହାଡ଼ ଦିଖଣ୍ଡ ତାହାର ପଦାରୁ ଗଣି ହୋଇ ଯାଉଛି । ତାହାର ମଧ୍ୟ ଅବସ୍ଥା ବଡ଼ ଶୋଚନୀୟ ହୋଇ ପଡ଼ିଲାଣି । ଚାଲିଲା ବେଳକୁ ମୁଣ୍ଡ ବୁଲେଇ ଅନ୍ଧାର ଦିଶୁଛି, ଦେହରୁ ଶ୍ରମଝାଳ ବୋହିଯାଇ ଦମା ଉଠଉଛି । ଏତେ ସରି ଆସି ହେଲାଣି, ସେ ଆଡ଼କୁ କ'ଣ ତାର ନଜର ଅଛି ? ମା'ଭାଇଙ୍କର ଏ ବିକଳ ରୂପ ଦେଖି ତାର ସବୁ ଦୁଃଖ କଷ୍ଟ ପାସୋର ହୋଇଯାଏ । କେତେ ଆଶାକରି ପ୍ରତିଦିନ କୋଶକୋଶ ବାଟ ଦୌଡ଼େ ଯଦି କେହି ଦୟାକରି ମୁଠିଏ କିଛି ଦିଏ ।

ସେଦିନ ଭାରି ଖରା । ବାଟ ବାଲିରେ ଜମା ଗୋଡ଼ ଦେଇ ହେଉନଥାଏ । ଦିନ ଦି'ପହର । ସନାତନ ବୁଲିବୁଲି ସେତେବେଳକୁ ଏତେ ଥକି ପଡ଼ିଲାଣି ଯେ,

ଆଉ ପାଦେ ହେଲେ ତାହାର ଚାଲିବାକୁ ଶକ୍ତି ନଥାଏ । କେଜାଣେ କାହିଁକି ସେଦିନ ସବୁ ଠାରୁ ବେଶି ବାଧିଗଲା ତାକୁ । ମନରେ ଭାବିଲା 'ଆଉ ତ ଚାଲି ହଉନାହିଁ, ଏଇଠି କୋଉଠି ଟିକିଏ ଶୋଇପଡ଼େ, ଖରା ଟିକିଏ ନଇଁ ପଡ଼ିଲେ କୁଆଡ଼େ ଯିବି ।' ଏତେବେଳ ଯାଏ ତାହା ଭାଗ୍ୟରେ ଭିକ ମୁଠିଏ ଜୁଟି ନଥାଏ । ଏଇଆ ଭାବି ବାଟପାଖ ଗଛ ଛାଇରେ ଚିରା କାନିଟି ବିଛେଇ ଦେଇ ଶୋଇଲା । କେଜାଣେ କୋଉଠି ଚଉଳ ଦି'ଟା ମାଗିଆଣି ସ୍ତ୍ରୀ ଲୋକ ଜଣେ ସେହି ଗଛତଳେ ତା' ପିଲାଛୁଆଙ୍କ ପାଇଁ ଭାତ ଗଣ୍ଡାଏ ରାନ୍ଧୁଥାଏ । ରନ୍ଧାଭାତର ଗନ୍ଧ ପାଇ, ସନାତନ ଭୋକରେ ଏତେ ବିକଳ ହୋଇପଡ଼ିଲା ଯେ, ଭୋକରେ ବଡ଼ ଆତୁର ହୋଇ ଡାକିଲା 'କିଏ ଅଛ ମା, ଦୟାକରି ଭାତ ଗଣ୍ଡିଏ ଦିଅ ମତେ; ତିନିଦିନ ହେଲା କିଛି ଖାଇନାହଁ ।' ସନାତନର ବିକଳ ଡାକ ଶୁଣି ସ୍ତ୍ରୀଟି ମନରେ ଭାରି ଦୟା ହେଲା ସେହିକ୍ଷଣି ଭାତ ଗୁଣ୍ଡିଏ ହାଣ୍ଡିରୁ କାଢ଼ିନେଇ ତାକୁ ଦେଲା । ସନାତନ ଖାଇବାକୁ ଯାଉଛି - ମା'କଥା ତାହାର ମନରେ ପଡ଼ିଲା, ଭାଇର ଆକୁଳ କାନ୍ଦଣା ଆଖିରେ ନାଚିଲା । ଆଉ ଖାଇବ କ'ଣ ପାଟିକୁ ହାତ ଗଲାନାହିଁ । ସ୍ତ୍ରୀ ଲୋକଟି ଭାବିଥିଲା, ଉପାସିଆ ଲୋକ ଖାଇବା ପଦାର୍ଥ ପାଇଲେ ଯେପରି ପେଟ ବିକଳରେ ଖାଇ ପକାନ୍ତି ପିଲାଟା ସେହିପରି ଭାତ ଖାଇଲାକ୍ଷଣି ଖାଇ ପକେଇବ; କିନ୍ତୁ ସନାତନ ଭାତ ଗଣ୍ଡାକ କେତେ ଯତ୍ନରେ କାନିରେ ବାନ୍ଧିଲା, ସ୍ତ୍ରୀ ଲୋକଟିକୁ ଛଳଛଳ ଆଖିରେ କେତେ କୃତଜ୍ଞତା ଜଣେଇ ଘରକୁ ଫେରିଲା । ଭୋକରେ ପେଟ ପଶି ଖାଉଥାଏ ।

ଘର ଏଠାକୁ ଦୁଇ କୋଶ - ବାଟକଥା ଭାବିଲା ବେଳକୁ ସନାତନର ଅବଶ ଶରୀର ଆହୁରି ଅବଶ ହୋଇ ଆସୁଥାଏ । ତତଲା ବାଲିରେ ଚାଲିଚାଲି ଗୋଡ଼ ଫୋଟକା ହୋଇଯାଇ ଜଳୁଛି, ଭୋକରେ ମୁଣ୍ଡ ବୁଲାଉଛି । ତେବେ ବି ଦୁଇଗୋଡ଼ ଘୋଷାରି ଘୋଷାରି ଚାଲିଥାଏ - ମା' ଭାଇଙ୍କ ପାଟିରେ ଭାତ ଗଣ୍ଡାଏ ଗଣ୍ଡାଏ ଦେଇ ବିକଳ ଜୀବନକୁ ତାଙ୍କର ଶୀତଳ କରିବ ! ଭାରି ଇଚ୍ଛାହୁଏ - ଭାତରୁ ଅଧେ ଖାଇଦବ । କେତେ ଥର ଫିଟାଏ, ପୁଣି ବନ୍ଦ କରିଦିଏ । ମନରେ ଭାବେ, 'ମା' ଭାଇ ଅନେଇ ରହିଥିବେ - ମୁଁ କ'ଣ ନେଲେ ସେମାନେ ଖାଇବେ । ମୁଁ ଯଦି ଖାଇଦିଏ ସେମାନେ କ'ଣ ଖାଇବେ ?' ପୁଣି ବାନ୍ଧି ରଖିଦିଏ ।

ସନାତନ ବାଟ ଚାଲିଚାଲି ଏକାବେଳେକେ ଥକିଲାଣି । ଭୋକରେ ଦେହ ଝିମିଝିମି ହେଉଛି ତେବେବି ତା'ର ଚଲା ଚାଲିଥାଏ ମା' ଯେ ତିନିଦିନ ହେଲା ଖାଇନାହିଁ । ଶେଷକୁ ଆଉ ଚାଲିପାରିଲା ନାହିଁ । ଦେହ ଥରଥର ହୋଇ ଥରିଲା, ମୁଣ୍ଡରୁ ଗୋଡ଼ ଯାଏ ଝାଳ ବୋହିଗଲା । ତାକୁ ଲାଗୁଥାଏ - ସତେକି ତାହାର ସବୁ ଶକ୍ତି ସରିଗଲା, ଏଇସାତ୍ ପ୍ରାଣ ବାହାରି ଯିବ କି କ'ଣ ? ଘର ତେବେବି ଆହୁରି କୋଶେ ।

ସେତେବେଳକୁ ସଞ୍ଜ ହୋଇ ଆସୁଥାଏ । ସନାତନ ଭାବିଲା - 'ଦିହଟା କାହିଁକି ଇମିତି ଥରୁଛି, ଟିକିଏ ଶୋଇପଡ଼େ, ଦିହ ଟିକିଏ ଭଲହୋଇଗଲେ ଘରକୁ ଯିବି ।' ବାଟ ପାଖରେ ଗୋଟିଏ ବରଗଛ ମୂଳରେ ଯାଇ ଶୋଇପଡ଼ିଲା । ଆକାଶରେ ତାରା ଗୋଟିଏ ଗୋଟିଏ ଫୁଟିଥାନ୍ତି । ଥରେ ଆକାଶ ଆଡ଼କୁ ଅନେଇ ତାରା ସବୁ ଦେଖିଲା । ଆକାଶର ସେହି ତାରା ସହିତ ତା' ଆଖିର ତାରା ଦୁଇଟିର କ୍ଷଣକ ପାଇଁ କି ଅପୂର୍ବ ମିଳନ ହେଲା - ମହାକାଶର ଅନ୍ତର ସହିତ ତାର କ୍ଷୁଦ୍ର ଅନ୍ତରଘଟାକାଶର ମହା ଗୋପନରେ କି ସମ୍ଭାଷଣ ହେଲା - ସନାତନର ପାର୍ଥିବ ଉପାଦାନ ପୃଥିବୀବକ୍ଷରେ ସେହି ସୌଭାଗ୍ୟଶାଳୀ ବଟବୃକ୍ଷ ତଳେ ପଡ଼ିରହିଲା, ଆଉ ତାର ଅପାର୍ଥିବ ଉପାଦାନଟି କେଉଁ ମହାକାଶର ଦୂର ଅଜଣା ରାଜ୍ୟରେ ଯାଇ ଲୀନ ହେଲା । ତା'ର କ୍ଷୁଦ୍ର ଅନ୍ତରର ଶେଷ ବୁଦ୍‌ବୁଦ୍‌ଟି କୋଟି ଅନ୍ତରରେ ଆଘାତ ଦେଇ ସେହି ଦୁଃଖ ସାଗରରେ ମିଳାଇ ଗଲା ।

*(Golden Peeds of Indianରୁ ଗୃହୀତ)*

*(ସହକାର - ୧୨ଶ ଭାଗ / ୩ୟ ସଂଖ୍ୟା / ୧୩୩୮ ସାଲ)*

# ରକ୍ତରେଖା

ଅନେକଦିନ ତଳର କଥା ଏ-ମନ ଭିତରେ କେଜାଣି କେତେ ଅସ୍ୱଷ୍ଟ ସ୍ମୃତି ତଳେଇ ଯାଇଥିଲା - ଆଜି ହଠାତ୍ ଏତେ ଉଚ୍ଛନ୍ନ ହୋଇ ପଦାକୁ କାହିଁକି ବାହାରି ଆସିଲା, କେଜାଣେ ?

ସେତେବେଳକୁ ଆମେ ସବୁ ସ୍କୁଲରେ ପଢୁଥାଉଁ । ଦୋଳକୁ ଯେଉଁ ଚାରିପାଞ୍ଚଦିନ ଛୁଟି ହୁଏ, ସେଥିରେ ଅନେକ ପିଲା ଘରକୁ ପଳାନ୍ତି । ଯେଉଁମାନଙ୍କର ଘର ଦୂରରେ, ସେମାନେ ଆଉ କରିବେ କ'ଣ ? - ପ୍ରିୟତମ ପଲ୍ଲୀ ଫାଲ୍ଗୁନୀ ଉତ୍ସବର ତିକ୍ତ ସ୍ମୃତି ଘେନି କଟକରେ ପଡ଼ିରହନ୍ତି ।

ସେଥିରେ ଦୋଳଛୁଟିକୁ ଯୋଗେଶ ବାବୁ ମୋତ କହିଲେ, 'ମିଛଟାରେ ଏଠି ପଡ଼ିରହିବ କାହିଁକି, ଚାଲ ଆମ ଘରକୁ ଯିବା, ଆମ ଗାଁରେ ସୁନ୍ଦର ଦୋଳ ହୁଏ, ଦେଖିବ । ଆମ କ୍ଲାସ ପିଲାଏ ତ ସମସ୍ତେ ଚାଲିଯିବେ- ଏକାକୀ ଏଠି ଦିନକାଟିବ କିମିତି ?' ଯୋଗେଶ ବାବୁ ମୋର ସହପାଠୀ ବନ୍ଧୁ । କଟକ ପାଖ ଗୋଟିଏ ଗାଁରେ ତାଙ୍କର ଘର ବେଶ୍ ଆଚ୍ଛା ଗାଁଟି । ମହାନଦୀ ଆରପାଖ ଜଗତ୍ପୁର ଷ୍ଟେସନରେ ଓହ୍ଲେଇପଡ଼ି ତିନି କି ଚାରି ମାଇଲ୍ ବାଟ ଚାଲିଗଲେ ତାଙ୍କ ଗାଁ । ଯୋଗେଶ ବାବୁଙ୍କ ସାଂଗରେ ତାଙ୍କ ଗାଁକୁ ଗଲି ।

ଦୁଇ ଚାରିଦିନ ସେଠି ରହି ଆମେ ପୁଣି କଟକ ବାହାରିଲୁ । ଜଗତ୍ପୁର-ଷ୍ଟେସନ ବୋଲି ଏଡ଼େ ଖଣ୍ଡେ । ଷ୍ଟେସନରେ କୋଡ଼ିଏ ପଚିଶ ହାତଲମ୍ବର ଖଣ୍ଡେ ବୋଲି ଟିଣଘର ସେଥିରୁ ଅଧେ ଷ୍ଟେସନମାଷ୍ଟରଙ୍କ ଅଫିସ୍, ବାକି ଅଧିକ ୱେଟିଂରୁମ୍ । ସେହି ଖଣ୍ଡକରେ ଲୋକେ ଗାଈଗୋରୁଙ୍କ ପରି ଠେଲାଠେଲି ହୋଇ ବସିଥାନ୍ତି । ସେଥିରେ ପୁଣି ଷ୍ଟେସନର କୁଲି ଦି'ଟା କେତେବେଳେ ପତାକାଟା, କେତେବେଳେ ବତିଟା, କେତେବେଳେ ଆଉ କ'ଣ ଆଣିବା ଲାଗି ଲୋକଙ୍କୁ ଡେଇଁପଡ଼ି, କାହାକୁ ହଟେଇ ଦେଇ ଲୋକଙ୍କ ଭିତରେ ଯିବାଆସିବା କରୁଥାନ୍ତି । ଏକଥା ଦେଖି ଆମେ

ନଈକୂଳ ଆଡ଼କୁ ଚାଲିଲୁଁ- ବୁଲୁବୁଲୁ ଘଣ୍ଟାଏ କଟିଯିବ - ଏତେ ଠେଲାଠେଲିରେ ଟିଣ ଛାତତଳେ ଟିକିଏ ବସିବା ଲାଗି ଏତେ ହୀନସ୍ତା କିଏ ହେବ ?

କଥାବାର୍ତ୍ତା ହେଉହେଉ ଯୋଗେଶ ବାବୁ କହିଲେ - ଦେଖନି ନନ୍ଦବାବୁ, ଏଇଠି ଶହ ଶହ ଲୋକ ଗାଡ଼ିରୁ ଓହ୍ଲାନ୍ତି, ଶହ ଶହ ଲୋକ ଚଢ଼ନ୍ତି, କିନ୍ତୁ ଗାଡ଼ିରହେ ଏଠି ଦୁଇ ମିନିଟ୍ କି ଅଢ଼େଇ ମିନିଟ୍ । ଆଉ ଦେଖୁଛ ତ ହେଇ ପ୍ଲାଟଫର୍ମ ନାହିଁ - ଆମ ଦେଶରେ ଯାଠୁଁ ବଡ଼ ବଡ଼ ଷ୍ଟେସନମାନଙ୍କରେ ତ ବତି ନ ଥାଏ, ଯା କଥା ବା କିଏ ପଚାରେ ? ଆମ ଦେଶ ଲୋକେ ରେଳ ଜାହାଜରେ ଫେର୍ ଯିବାଆସିବା କରିବାକୁ ଯିମିତି !- ଲୋକଙ୍କୁ କେତେ ଅସୁବିଧା ହଉନଥିବ ତ ? କେତେବେଳେ କି ବିପଦ ଘଟି ନ ଯାଉଥିବ ତ ? - ତା'ର କ'ଣ ଠିକ୍ ଅଛି ? ଭାରି ଅନ୍ୟାୟ ଏସବୁ - ଇମିତି ଷ୍ଟେସନ କୋଉ ଦେଶର କୌଣସି ରେଲୱେର ନ ଥିବ । ନଈକୂଳରେ ଦୁଇଚାରି ଜଣ କିଏ ବସିଥିଲେ- ତାଙ୍କ ଭିତରୁ ଜଣେ କିଏ କହିଲା - ବାବୁ, ଅନ୍ୟାୟ ବୋଲି କହୁଛ ? - ଘୋର ଅନ୍ୟାୟ ଏସବୁ । ବସୁନା ବାବୁ, ବସ । ଆମେ ବସିଲୁ ।

ବୁଢ଼ା ଜଣେ ସେ - ପାନ ଭାଂଗୁଭାଂଗୁ କହିଲେ -, କେତେବେଳେ କି ବିପଦ କଥା କ'ଣ କହୁଛ ବାବୁ, ଏଇ ରେଳଷ୍ଟେସନରେ ଯାହା ମୁଁ ନିଜ ଆଖିରେ ଦେଖିଛି, କହୁଛି ଶୁଣ

ଅ.... ହେଇ, ଦେଖୁଚ ନା ବାପ, ମିଞ୍ଜିମିଞ୍ଜି ହେଇ ସେଇ ଯୋଉ ଆଲୁଅ ଜଳୁଚି- ସେହି ଗାଁରେ ବୁଢ଼ୀଟି, ତାର ଗୋଟିଏ ବୋଲି ପୁଅ । ଗେରସ୍ତ ଭାରିଯା କେତେ ବାରବ୍ରତ କେତେ ଦାନ ଧ୍ୟାନ କରି ଏଇ ପୁଅଟିକୁ ପାଇଥିଲେ - ହେଲେ, ବାପ ବିଚରା ଏଡ଼େ ହୀନକପାଳିଆ ଯେ ପୁଅଟିର ମୁହଁ ଦେଖିବା ତା କପାଳରେ ଆଉ ଘଟିଲା ନାହିଁ - ପୁଅ ପେଟରେ ଥାଏ, ବାପ ମରିଗଲା । ଭାରିଜା, ସେ ଯିମିତିକା ମାଇକିନା, ସାଂଗେସାଂଗେ ଗଳାରେ ଦଉଡ଼ି ଦେଇ ଜୀବ ହରେଇ ଦେଇଥାନ୍ତା - ଖାଲି ସେଇ ଛୁଆଟିର ମୁହଁ ଦେଖିବା ଲୋଭରେ ଜୀବନ ଧରି ରହିଲା । ଯାହାହଉ, ଠାକୁରେ ତା' କପାଳକୁ ପୁଅଟିଏ ଦେଲେ, ଏତେଦିନକେ କୋଳରେ ପୁଅଟିଏ ପାଇ ବିଚାରିର ହନ୍ତସନ୍ତ ଜୀବନଟା ଟିକିଏ ଶୀତଳ ହେଲା । କୃପଣ ଧନ ଲାଗି କି ହାଇଁପାଇଁ ନ ହୁଏ ? ମାତ୍ର ଧନ ମିଳିଯାଏ ଯେତେବେଳେ ତାକୁ, କୋଉଠି ରଖିବ, କିମିତି ରଖିବ, କିଏ ଦେଖିବ କି କଣ, ଚୋର ନେଇଯିବ କି କ'ଣ - ଭାବିଭାବି ତା ଆଖିକି

ଯିମିତି ନିଦ ଆସେ ନା - ବୁଢ଼ୀର ଦଶା ସେଇଆ ହେଲା । ପୁଅଟିକି ପାଇ ମନ ଦୁଃଖ ତା'ର ତୁଟିଗଲା ସତ, କିନ୍ତୁ ସେହିଦିନଠାରୁ ଦୁନିଆର ଯେତେ ଜଞ୍ଜାଳ ତାକୁ ଆସି ଘୋଟିଲା - ପୁଅଟି କ'ଣ ଖାଇବ, ରୋଗ ବଇରାଗରୁ ତାକୁ କିମିତି ବଞ୍ଚେଇବ, ବାପ ନାହିଁ - ପିଲାଟିର ଦଶା କ'ଣ ହେବ ? ବିଚରାରୀର ଚିନ୍ତାର ସୀମା ରହିଲା ନାହିଁ । ତହିଁକି ପିଲାଟା ସବୁଦିନେ ହେଲା ରୋଗିଣା - ବୁଢ଼ୀ ପ୍ରାଣରେ ଭାରି ଭୟ ଏଥିଲାଗି । ପୁଅକୁ ଯୋଉଦିନ କିଛି ହୋଇଥିବ, ଖିଆପିଆ ଛାଡ଼ି ବୁଢ଼ୀ ତା' ମୁଣ୍ଡ ପାଖରେ ଦିନରାତି ସେଇମିତି ବସିଥିବ; ଆଖିଲୁହରେ ମୁହଁ ତିନ୍ତେଇ କହୁଥିବ - 'ମତେ କାହିଁକି ନେଇଗଲ ନାହିଁ ଠାକୁରେ ? - ମୋତେ ଆହୁରି ବଞ୍ଚେଇ ରଖିଲ ପୁଅଟିର ମୋର ଦଶା ମତେ ଦେଖେଇବାକୁ ? କେତେ ଦଣ୍ଡବତ ହୋଇ ବିକଳରେ କହୁଥିବ - ମୋତେ ସବୁ ରୋଗ ଦିଅ ପଛକେ, ପୁଅକୁ ମୋର ଭଲ କରିଦିଅ, ହରି ! ପୁଅର ଏଇ ଦେହପା' ପାଇଁ ବିଚରାରୀର ମାସକରୁ ପନ୍ଦରଦିନ ଉପାସ ।

'ନିଜ ଜୀବନକୁ ନ ଅନେଇ, ନିଜ ସୁଖ ଦୁଃଖ ସବୁ ପାସୋରି ଦେଇ, ବୁଢ଼ୀ ପୁଅକୁ ଆଣି ବାଇଶ ବରଷର କଲା । ସେଉଠୁ, ବୁଢ଼ୀର ମନହେଲା - ପୁଅକୁ କିମିତି ବାହା କରେଇବ । ବୁଢ଼ୀ ହେଲାଣି ଯେତେବେଳେ ପତର ପାଚିଲାଣି ଆସି - କୋଉ ପବନରେ କେତେବେଳେ ଝରିପଡ଼ିବ, ତା'ର ଠିକ୍ ଅଛି ? ବେଳ ଥାଉ ଥାଉ ବୋହୂଟି ଘରକୁ ଘେନି ଆସିବା ଭଲ । ଆଉ କିଏ ପାତ୍ରୀ ଠିକ୍ କଲେ ପାତ୍ରୀ ମନଲାଖି ହବ କି ନାହିଁ - ଏଥିପାଇଁ ବୁଢ଼ୀ ନିଜେ ମାସେକାଳ ଏ ଗାଁ ସେ ଗାଁ ବୁଲିବୁଲି ଝିଅଟିଏ ଠିକ୍‌କଲା । ତା' ପରେ କରଜ ଦାମକରି, ବିଲବାଡ଼ି କିଛି ବନ୍ଧା ଛନ୍ଦା ଦେଇ ପୁଅର ବାହାଘର କଲା । ବୋହୂଟି ଆସିଲାଦିନରୁ ବୁଢ଼ୀ ମନରେ ଭାରି ଖୁସି - କହେ, ମୋର ଆଉ ଚିନ୍ତା କ'ଣ ? ସେ ତାଙ୍କର ଏବେ ଘରସଂସାର କରନ୍ତୁ, ସୁଖରେ ରହନ୍ତୁ - ତାଙ୍କ ସୁଖ ଦେଖିଲେ ମୋର ଆନନ୍ଦ !

"ବାହାହେଲା ଦିନୁ ନବୀନାକୁ (ବୁଢ଼ୀର ପୁଅ ନାଁ ନବୀନା) ଏବେ ଘର ଚିନ୍ତା ଆସ୍ତେଆସ୍ତେ ଲାଗିଆସିଲା । ଆଗେ ମା' ପୁଅ ଦି'ଜଣ ଥିଲେ - ଯାହା ଯେତେବେଳେ ପାଉଥିଲେ, ସେଇଥିରେ ଦୁଃଖେ ରାମ ସୁଖେ ରାମ ଚଳି ଯାଉଥିଲେ । ବୋହୂଟି ଆସିଲା ଦିନରୁ ସେ କଥା ତ ଆଉ ଚଳିଲା ନାହିଁ - ଏଣିକି ତେଲ ଟିକେ, ହଳଦୀ ଟିକେ ନିତି ନ ହେଲେ ନ ଚଳେ, ଭଲକରି ଲୁଗାଖଣ୍ଡେ ନହେଲେ ନ ହୁଏ ।

ବିଲବାଡ଼ି ଯାହା ଦି'ମାଣ ଥିଲା, ସେଥିରୁ ଅଧେ ପଡ଼ିଥାଏ ବନ୍ଧା - ଧାନ ଚାଉଳ ବି ନିଅଣ୍ଟ ପଡ଼ିଲା । ସାହୁମହାଜନ ସବୁବେଳେ ଆସି ଦିକ୍ କଲେ, ବେଜିତ୍ କଲେ - ପିଲାଲୋକ, ଏସବୁ ଦେଖି ଛାନିଆ ଲାଗିଲା ତାକୁ । ଗାଁରେ ରହିଲେ କିଛି କିନାରା କରି ହବନାହିଁ ଦେଖି, ନବୀନା ମନେମନେ ଠିକ୍‌କଲା - କଲିକତା ଯିବ । ବୁଢ଼ୀକୁ ସେ ଥରେ କଲିକତା ଯିବାକଥା କହିଥିଲା - ବୁଢ଼ୀ ମନାକଲା । ନବୀନା ଜିଦ୍ ଧରିବାରୁ ବୁଢ଼ୀ କାନ୍ଦିକାନ୍ଦି କହିଲା - ତୁ ଫେର୍ ଇମିତି କଥା କହିବୁ ତ ମୁଁ ତୋରି ଆଗରେ ମୁଣ୍ଡ ପିଟିଦେଇ ମରିବି, ଜାଣିଥା । ପୁଣି ଆଜି ସେହି କଥା ବୋଉକୁ କହିଲେ, ମିଛଟାରେ ସେ କନ୍ଦାକଟା କରିବ, ଗୋଳମାଳ କରିବ - ସେଥିଲାଗି ତାକୁ କିଛି ନକହି, ଗାଁ ପାଖ ଆର ଗାଁରୁ ଦୁଇଜଣ କିଏ କଲିକତା ଯାଉଥିଲେ, ରାତିରେ ଲୁଚିକରି ତାଙ୍କର ସାଂଗରେ କଲିକତା ପଳେଇଲା ।

ଷ୍ଟେସନରେ ମୋର କାମ ଥିଲା - ଦଇବ ଯୋଗକୁ ସେଦିନ ମୁଁ ବି ଷ୍ଟେସନକୁ ଆସିଥାଏ । ମୋ ସଂଗେ ଦେଖାହେଲା ତାର, କହିଲି - କିରେ ନବୀନା, ତୁ ଏଠି ଏତେବେଳେ କୁଆଡ଼େ ? ତାଙ୍କ ଘରକୁ ଲାଗି ଆମ ଘର, ପିଲାଟିବେଳୁ ମୋତେ ସେ କକାକକା ଡାକେ । ମୋତେ ସେଠୁ କହିଲା, ମୁଁ ଯାଉଛି କକା କଲିକତା, ଗାଁରେ ବସି ରହିଲେ କ'ଣ ହବ ? ମୁଁ ମନେମନେ ଭାବିଲି - ଘରେ ପହଞ୍ଚିବାକୁ ଯାର ଘଡ଼ିଏ ଡେରି ହୋଇଗଲେ ବୁଢ଼ୀ ଗାଁଟା ଯାକର ସାହିସାହି ବୁଲି ଯାକୁ ଖୋଜେ, ବିଲବାଟକୁ ଦଶଥର ଯାଇ ଅନେଇ ଆସେ - ସେ ଯାକୁ କଲିକତା ପଠେଇବାକୁ ରାଜିହେଲା କେମିତି ? ମୁଁ ଫେର ପଚାରିଲି - 'ହଇରେ, ତୁ ତୋ ମା' ରାଜିରେ କଲିକତା ଯାଉଛୁ ନା ? ମୋତେ କହିଲା - ବୋଉକୁ କହିଲେ ସେ କ'ଣ ମୋତେ ଛାଡ଼ି ଦେଇଥାନ୍ତା ? ଥରେ କହିଥିଲି, ମୋ କଥା ଶୁଣି କ'ଣ ହେଲା ସେ କ'ଣ ଶୁଣିନି ? ସେଥିଲାଗି ମୁଁ ତାକୁ ଲୁଚି ପଳେଇ ଆସିଛି । ମୁଁ ଗାଳିଦେଇ କହିଲି - ଚାଲ୍‌ଚାଲ୍, ଘରକୁ ଫେରିଚାଲ । ନ କହି ନ ପୁଛି ଚାଲିଯାଉଛୁ, ବୁଢ଼ୀଟା ସେଆଡ଼େ ଅଥୟ ହୋଇ ଗାଁଯାକ ଚହଳ ପକେଇଥିବ । ତୁ ତ ଆପଣା ଗାଁଛଡ଼ା ପର ଗାଁ ଦେଖିନାହୁଁ - କଲିକତା ରାଇଜରେ ଏକାକୀ କୁଆଡ଼େ ଯାଇ କ'ଣ କରିବୁ ? କହିଲା - ନାହିଁ କକା, ମୁଁ ଆଉ ଘରକୁ ଯିବିନାହିଁ । ଶୁଣି ନା - ସେଦିନ ଦାସ ଘରପିଆଦା କ'ଣ କହିଗଲା ମୋତେ ? କରଜ ଟଙ୍କା ନ ଶୁଝିବା ଯାଏ ଆଉ ଘରକୁ ଯିବିନାହିଁ । ଏକା

ଆଉ କ'ଣ ? ସେ ଗାଁର ମଧୁ ବିଶ୍ୱାଳ, ହରି ପଳେଇ ହେରିକା ଯାଉଛନ୍ତି -- ତାଙ୍କରି ପାଖରେ ରହି ତାଙ୍କର ସାଂଗରେ କାମ କରିବି । ଗାଡ଼ି ଛାଡ଼ିବା ବେଳ ହୋଇ ଆସିଲା, ଗଲାବେଳକୁ ଫେର ମୋତେ କେତେ କରି କହିଗଲା - ମୁଁ ଯାଉଛି କକା, ଘରେ ସମସ୍ତେ ତୁମକୁ ଲାଗିଲେ, ଟିକିଏ ଦେଖାରହାଁ କରୁଥିବ - ତାଙ୍କର ଆଉ କେହି ନାହିଁ । ବୋଉକୁ ସବୁକଥା ବୁଝେଇ କରି କହିବ । ଏଇ କରଜ କେଇ ଟଙ୍କା ଶୁଝିଦେଇ ବିଲ ଦି'ଖଣ୍ଡ ମୁକୁଳେଇ ପକେଇଲେ ମୋର ଦକ ଯିବ । ଏତକ କରିଦେଇ ମୁଁ ପଳେଇ ଆସିବି । ମୁଁ ଯାଉଛି - ବୋଉକୁ ସବୁକଥା କହିଦବ । କଥା କହୁକହୁ ଆଖିରୁ ତାର ଲୁହ ଉଛୁଳି ପଡୁଥାଏ । ସେ ଯିମିତି ପିଲା - ଗାଁ ଛାଡ଼ି ପରବାସକୁ କ'ଣ ତାର ଯିବାର ଇଛା ? କିନ୍ତୁ କରିବ କ'ଣ ? ମୁଁ ନିଜେ ଦେଖିଛି ବାପ, ରଜା, ଜମିଦାର, ସାହୁ ମହାଜନଙ୍କ ଭୟରେ ଇମିତି କେତେ ଲୋକ ଘର ସଂସାର ଛାଡ଼ି, ମା' ମାଇପଙ୍କ ମାୟା ପାସୋରି ବରଷ ବରଷ ହେଲା ପରବାସରେ କଳ ଘରମାନଙ୍କର ଓଳିତଳେ ଯାଇ ପଡ଼ିଛନ୍ତି । ରଜା ମହାଜନଙ୍କର ଏତେ ଅତ୍ୟାଚର ଆମର ଏ ରାଇଜରେ ।

`ଗାଡ଼ି ଛାଡ଼ିଲା, ମୁଁ ଗାଁକୁ ଗଲି । ଗାଁରେ ଯାଇ ଦେଖେଁ ତ - ନବୀନା ମା' ଆମରି ସାହିରେ ଆସି କାନ୍ଦୁଣି ମାନ୍ଦୁଣି ହେଉଛି । ମୋତେ ଦେଖି ବିକଳ ହୋଇ କହିଲା - ନବୀନା ସାରାସଞ୍ଜବେଳୁ ଯାଇଛି କୁଆଡ଼େ, ପଣ୍ଡାପୁଅ - ରାତିଅଧ ହେଲାଣି ଘରକୁ ଆସୁନାହିଁ । ଗାଁଟା ଯାକ ବୁଲି ସାରିଲିଣି - ତାକୁ ଆଉ କୋଉଠି ଦେଖୁନାହିଁ । କିଏ କହୁଚି - କଲିକତା ଗଲାଣି, କିଏ କହୁଚି - ଚ ବଗିଚ ପଳେଇଲାଣି । ଚ ବଗିଚକୁ ଗଲେ...... । ବୁଢ଼ୀ, କୋହରେ ଆଉ କିଛି କହିପାରିଲା ନାହିଁ । ମୁଁ ତାକୁ ଗାଳିଦେଇ କହିଲି - ପାଗଳୀ ବୁଢ଼ୀ ଏ । କିଲୋ, ଇମିତି କାହିଁକି ହଉଚୁ ? ତୋର କ'ଣ ପିଲାଟି ନା ଛୁଆଟି ହେଇଚି ଯେ କିଏ ଲୁଚେଇ ନେଇଯାଇ ତଣ୍ଟି ଚିପିଦବ କି ଭୁଲେଇ କୁଆଡ଼େ ନେଇଯିବ ? ମୁଁ ହେଇ ଷ୍ଟେସନରେ ତାକୁ ଦେଖି ଆସିଲି, ମୋତେ କଲିକତା ଯାଉଛି ବୋଲି କହିଗଲା । ସାନସାନ ପିଲାଟିମାନେ କଲିକତାରୁ ସତାର କରି ଫେରି ଆସୁଛନ୍ତି - ତୋର ଇମିତି ଜୀବନ ଛାଡ଼ି ଯାଉଛି ?

"ମୋ କଥା ଶୁଣି ବୁଢ଼ୀର ଆଉ କାନ୍ଦଣା ଦେଖେ କିଏ ? ଲୁହ ପୋଛିପୋଛି କହିଲା - 'କଲିକତା ଗଲା, ପଦେ କିଛି ମୋତେ କହିକରି ଗଲାନାହିଁ । କିଛି ତ ମୁଁ

ତାକୁ କହିନାହିଁ, ପଣ୍ଡାପୁଅ - କି କଥାକୁ ଆଉ ରାଗକରି ପଳେଇଲା ? ଜୀବନ ଛାଡ଼ି ଯିବନାହିଁ ? ଅଖାଉଲିଆଟା, କିଛି ଜାଣେନା । ଏଇ ଗାଁ ଛଡ଼ା ଦିନେହେଲେ ତ କୁଆଡ଼େ ଯାଇନାହିଁ- କଲିକତା ଯିବ କିମିତି ? କଥାପଦେ କହି ଆସେନା, ଗୋଟାଏ କାମରେ ପାଖରେ ରହି ବତେଇ ନଦେଲେ କିଛି କରି ଆସେ ନା - କଲିକତାରେ ସେ କ'ଣ କରିବ କୁହନି ? ଜରବାଧିକା ହେଲେ 'ବୋଉ ଲୋ, ମାଲୋ' ହୋଇ ଅଛାଡ଼ ହୋଇ ପଡ଼ିଥିବ, ପାଣି ଟୋପେ ପାଟିକି ନବନାହିଁ - ଦେହପା' ହେଲେ ସେଠି ସେ କ'ଣ କରିବ ? ମୋ ଜୀବନ ତ ଥୟ ଧରୁନାହିଁ, ପଣ୍ଡାପୁଅ ।

ମୁଁ କହିଲି - ତୁ କିଛି ଭାବ ନା, ନବୀନା ମା । ପୁରୁଷ ପୁଅ ପରବାସ ନ କରିଲେ ଚଳିବ କେମିତି ? ତୁ ସିନା ଦୁନିଆରେ ଦୁଃଖ କଷ୍ଟ ସହିଛୁ - ଯେତେ ଅଭାବ ହଉ, ଯେ ଯାହା କହୁ, ତୁ ସହିବୁ। ସେ ତ କିଛି ସହିନାହିଁ ଦିନେ, ଆଜି ସହିବ କିମିତି ? ସେ ଯା ହଉ, ମୋତେ କହି ଯାଇଛି ସେ - କରଜ ଟଙ୍କା କେଇଟା ଶୁଝି ଦେଇ ଜମି ସେତକ ମୁକୁଳେଇ ପକେଇଲେ ସେ ପଳେଇ ଆସିବ। ଆମ ଗାଁର ଲୋକ ଅଛନ୍ତି - ତାଙ୍କରି ପାଖରେ ରହିବ, ଖାଇବ, ତାଙ୍କରି ସାଙ୍ଗରେ କାମ କରିବ - ଆଉ ଚିନ୍ତା କରି କହନି ? ଏଇମିତି କେତେ ବୁଝେଇ ଶୁଝେଇ ବୁଢ଼ୀକୁ ନେଇ ଘରେ ଛାଡିଲି। ବୋହୂଟା ତଳେ ପଡି ଆଖି ଲୁହରେ ମାଟି ତିନ୍ତଉଥାଏ - ତାକୁ ବୁଝେଇ ସମଜେଇ ରନ୍ଧା ବଢ଼ା କରିବାକୁ ପଠେଇ ମୁଁ ଆସିଲି।

"ନବୀନା ଗଲା ଦିନରୁ ବୁଢ଼ୀ ମନରେ ଜମାରୁ ଶାନ୍ତି ନ ଥାଏ। ଦୁଇ ଦିନ ଯିବ, ମୋତେ ଆସି କହିବ - 'ପଣ୍ଡାପୁଅ, କାଲି ରାତିରେ ମୁଁ ସପନ ଦେଖିଚି - ମୋ ନବୀନାକୁ ଭାରି ଜର, ବିକଳ ହେଇ ଖାଲି 'ବୋଉଲୋ, ମାଲୋ' ହଉଚି - ମୁଁ କଣ କରିବି କହନି ?' - ଏଣେ ଆଖିରୁ ଲୁହ ଭାସି ଯାଉଥିବ। ମୁଁ ବୁଢୀ ମନକୁ ଭୁଲେଇ ଦେବା ପାଇଁ ହସି ହସି କହେଁ - 'ଆଚ୍ଛା ଅଗୁଆଁର ମଣଷ ଏ! କିଲୋ, 'ଘରକୁ ଦେଖିଲେ ପରକୁ ହୁଏ', ଏ କଥା ବି ତତେ ମାଲୁମ୍ ନାହିଁ ନା ? ଏ ସପନ ଗୁଡାକରେ କଣ ଅଛି ?' ଫେର୍ ଦି ଦିନ ଯାଇ ନ ଥିବ, ଆସି କାନ୍ଦୁଣି ମାନ୍ଦୁଣି ହବ - 'କାଲି ସପନ ଦେଖିଚି, ପଣ୍ଡାପୁଅ - ମୋ ପୁଅ ଦିନରାତି କାନ୍ଦୁଛି ଘରକୁ ଆସିବା ଲାଗି - ସାଇବ ତାକୁ ବାନ୍ଧିକରି ପିଟୁଛି, ଛାଡି ଦଉ ନାଇଁ - ଏ କି ସପନ ଗୁଡାକ କୁହନି ? ବୁଡୀର ମତି ବେଳକରୁ ବେଳେ ଠିକ୍ ନ ଥାଏ।

"ଇମିତି ଇମିତି ମାସେ ଖଣ୍ଡେ ଗଲାରୁ ନବୀନା ବୁଢ଼ୀ ପାଖକୁ ମୋ ନାଁରେ ବାରଟି ଟଙ୍କା, ଭାଷା ଖଣ୍ଡେ ଦେଇ ପଠେଇଲା । ଭାଷାରେ ଲେଖିଥାଏ - 'ଏ ଟଙ୍କାରୁ ଘର ଖରଚ ପାଇଁ ବୋଉକୁ ଦି ଟଙ୍କା ଦବ । ବାକୀ ଦଶ ଟଙ୍କା ଦାସ ଘର କଚେରୀରେ ନେଇ ଦେଇ ଆସିବ - ଅସଲରୁ ଆଠ ଟଙ୍କା, ସୁଧକୁ ଦୁଇ ଟଙ୍କା - ଇମିତି କଲେ ଅବା ତିନି ଚାରି ମାସରେ ମୁଁ ତାଙ୍କଠୁଁ ଖଲାସ ପାଇଯିବି । ବୋଉ ଯେତେବେଳେ ଯିମିତି ଧାର ଉଧାର ମାଗୁଥିବ, ଦଉଥିବ ତାକୁ । ବୋଉକୁ କହିଦେବ - ମୁଁ ଖୁବ୍ ଭଲରେ ଅଛି, ମୋ ଲାଗି କିଛି ଚିନ୍ତା କରିବ ନାହିଁ । ସମସ୍ତଙ୍କ ଦେହପା ଖବର ଲେଖି ଭାଷା ଖଣ୍ଡେ ଚଞ୍ଚଳ ଦବ ।' ପୁଅ ଚିଠି ପାଇ, ଏତେ ଦିନକେ ବୁଢୀ - ପିଣ୍ଡରେ ଯାଇ ପ୍ରାଣ ପଶିଲା । ବୋହୂଟାର, ସେ ଗଲା ଦିନରୁ, ସବୁବେଳେ ଖାଲି ଆଖି ଛଳ ଛଳ, ଖିଆ ପିଆରେ ସରାଗ ନାହିଁ, ଲୁଗାପଟାରେ ସଉକ ନାହିଁ - ହେଇ ଯାଇଥିଲା ଯିମିତି କେତେ ଦିନରେ ଗୋଟାଏ ମଲୁ । ଭାଷାରୁ ସବୁ ଶୁଣି ତା' ମନ ବି ଟିକିଏ ଥୟ ଧରିଲା । ବୁଢ଼ୀଘର ଖରଚ ପାଇଁ ଆଉ ଟଙ୍କା ନବ କ'ଣ, ମୋତେ କହିଲା - 'ମୁଁ କ'ଣ କରିବି ଟଙ୍କା, ତୁମେ ରଖ ପଣ୍ଡାପୁଅ ! ମୋ ପୁଅର ପହିଲି ଅର୍ଜନ ଏ, ପୋଥି ପୂଜାଟିଏ ଏଥିରେ କରିଦିଅ - ନାରାୟଣ ମୋ ଛୁଆକୁ ଭଲରେ ଭଲରେ ଘରକୁ ଫେରେଇ ଆଣନ୍ତୁ ।

"ନବୀନା ମାସକୁମାସ ଟଙ୍କା ପଠାଏ, ଭାଷା ଦିଏ । ଆଠ ଦଶମାସ ଭିତରେ କରଜ ଶୁଝିଯାଇ ବିଲ ବନ୍ଧକରୁ ମୁକୁଳିଗଲା । ବୁଢୀ ଏଣିକି ନିତି ଲଗେଇଲା - 'ଲେଖ ପଣ୍ଡାପୁଅ ଭାଷା, ପୁଅ ମୋର ଘରକୁ ଆସୁ । ଯୋଉ କଥା ପାଇଁ ଯାଇଥିଲା ସେ ତ ହେଇଗଲା, ଆଉ କୋଉଥିପାଇଁ ସେ ସେଠି ରହିବ ? ମୁଁ ଭାଷା ଦେଲି । ମୋ ଭାଷା ପାଇ ନବୀନା ଭାଷା ଦେଲା କି - 'କରଜ ଦାମ ସବୁ ତ ନିମାସା ହୋଇଗଲା; ହେଲେ, ବରଷେ କାଳ ହେଲା କଲିକତା ଆସିଛି । ସିମିତି ସିମିତି ଖାଲି ହାତରେ ଘରକୁ ଫେରିଯିବାଟା କ'ଣ ଭଲ ହବ ? ଯିବାବେଳକୁ ଘରକୁ ଏଣୁତେଣୁ ଦି' ଚିଜ କି ଟଙ୍କା କଉଡ଼ି ପାଞ୍ଚ ପଚିଶ ନ ନେଲେ ଲୋକେ କ'ଣ କହିବେ ? ମୋ ହାତରେ ଏଇସାତ କିଛିନାହିଁ । ମନକରିଛି, ଆଉ ଦୁଇ ଚାରିମାସ କାମକରି ହାତରେ ଟଙ୍କା କଉଡି ହେଇଗଲେ ଘରକୁ ଯିବି ।' ହଁ, ସତ କଥା ଲୋକଟା ଯାଇଛି ଯେତେବେଳେ ଘରୁ ବରଷେ ହେଲା, ଖାଲି ଖାଲି ଆସନ୍ତା କିମିତି ? ବୁଢ଼ୀକୁ ସେହି କଥା ବୁଝେଇ କରି

କହିଦେଲି, ବୁଢ଼ୀ ଚୁପ ହେଇ ରହିଲା । "ଅନଉଁ ଅନଉଁ ଚାରିଟା ମାସ ଗଡ଼ି ପଡ଼ିଲା; ବୁଢ଼ୀ ଏଣେ ମାସନ୍ତ ସଂକ୍ରାନ୍ତି ଗଣୁଥାଏ । ଦିନେ ମୁଁ ଖାଇସାରି ହାତ ଧୋଉଛି,-ବୁଢ଼ୀ ଆସି କହିଲା, "କି ପଣ୍ଡାପୁଅ, ଚାରି ମାସ ଯାଇ ପାଞ୍ଚ ମାସରେ ଆସି ପଡିଲା - କାହିଁ ନବୀନା ? ମୋ ମୁହଁରୁ କଥା ବାହାରି ନାହିଁ - ଡାକବାଲା ଆଣି ଚିଠି ଖଣ୍ଡେ ଦେଇଗଲା; ଖୋଲି କରି ଦେଖିଲି - ନବୀନା ଚିଠି । ଲେଖିଥାଏ - 'ସେ ଗାଁର ଗୋପାଳ ବଳ, ମୁଁ ସାଙ୍ଗ ହେଇ ଯାଉଛୁଁ । ବୁଧବାର ଦିନ ଆମେ ଯାଇ ଓହ୍ଲେଇବୁ । ଜଗତ୍‌ପୁର ଆଗ ଷ୍ଟେସନରୁ ସେ ଓହ୍ଲେଇ ଯିବେ । ରାତି ଢେର ହୋଇଯାଇଥିବ, ମୁଁ ଏକା - ବୋଉକୁ କହିବ, ଜଣେ କାହାକୁ ଷ୍ଟେସନକୁ ପଠେଇ ଦବ ।' ସେଇ ଦିନ ବୁଧବାର ।

"ଏତେ ଦିନ ପରେ ପୁଅ ଘରକୁ ଫେରିବ ବୁଢୀ ତ ହାତରେ କୋଟିନିଧି ପାଇଲା ପରି ହେଲା । କହିଲା - 'ଆଉ ବସିବ କଣ ପଣ୍ଡାପୁଅ ! ଯାଉଛି କାହାର ହାତ ଓଠ ଧରିବି - କିଏ ହେଲେ ଷ୍ଟେସନକୁ ଯିବ ।' ବୁଲି ବୁଲି ଫେରି ସଞ୍ଜବେଳକୁ ଆସି ମତେ କହିଲା - ଢ଼େର ଲୋକଙ୍କର ହାତ ଓଠ ଧରି ନେହୁରା ହେଲି ପଣ୍ଡାପୁଅ, କେହି ହେଲେ ଜଣେ ମଙ୍ଗିଲେ ନାହିଁ । ତୁମେ ହେଲେ କାହାକୁ କହନ୍ତି କି, ତୁମ କଥା ମାନନ୍ତେ । - ନ ହେଲେ ପିଲାଟା ରାତିଟାଯାକ ଭୋକରେ କଲବଲ ହବ । ମୋ ଆଖିକି ରାତିରେ ଦେଖାଯାଉ ନାହିଁ । ନାହିଁ ତ ମୁଁ ଆଲୁଅ ଧରି ଚାଲିଯାନ୍ତି ।' ମୁଁ କହିଲି - 'ଏଗୁଡାକ କଣ ମଣିଷ ? ଏ କ'ଣ କାହାରି ଆପଦ ବିପଦ ବୁଝନ୍ତି ଯେ ୟାଙ୍କୁ କହିଲେ କିଏ ଯିବ ? କାହାକୁ କହିବି, କିଏ ଯିବ ? ତୁ ଏତେ ବ୍ୟସ୍ତ ହ ନା, ଖାଇସାରି ମୁଁ ଯାଇ ତାକୁ ଘିନି ଆସିବି - ଇମିତି କେତେଗୁଡା ବାଟ କି ?' ମୋତେ କେତେ କଲ୍ୟାଣ କରି ବୁଢ଼ୀ ଘରକୁ ଗଲା ।

"ରାତି ପହରେ ଖଣ୍ଡେ ବେଳକୁ ଖାଇପିଇ ସାରି ମୁଁ ନବୀନା ମା ଘରକୁ ଗଲି । ପୁଅ ଆସିବ ବୋଲି ବୁଢ଼ୀ ବୋହୂକୁ ରାନ୍ଧିବା ଲାଗି କେତେ କଣ ଫରମାସୀ ଦେଉଥାଏ । ମୁଗ ଥିଲା ଘରେ - ଡାଲି କରିବାକୁ ଦେଲା । ନବୀନା ଆସିବା ଶୁଣି ଦିପହର ବେଲୁ ଆଳୁ ଖଣ୍ଡେ ଖୋଳି ଆଣିଥାଏ, କେଉଟୁଣୀଠୁ ମାଛ କିଣିଥାଏ । ବୁଢ଼ୀ ବୋହୂକୁ ରାନ୍ଧିବାକୁ ସବୁ ବରାଦ କରିଦେଇ କହିଲା - 'ଟିକିଏ ଉଛୁର କରି ରାନ୍ଧିବୁ ଲୋ - ତା' ଆସିଲାବେଳକୁ କାହୁଁ କାହାଲକ ରାତି ହେଇଯିବ - ଭାତ ତରକାରୀ ଥଣ୍ଡା ହେଇ ନ ଯାଏ ଯିମିତି ।' କେତେ ରାତିଯାଏ ବସି ରହିବି ବୋଲି, ନାହିଁ କରୁ

କରୁ ଭାଙ୍ଗି କରି ମୋ ବଟାରେ ଆଠ ଦଶଖଣ୍ଡ ପାନ ଦେଲା। ମୁଁ ଷ୍ଟେସନକୁ ଯିବା ଲାଗି ବାହାରିଲି। ମୁଁ ବାହାରିଲା ବେଳକୁ ବୁଢୀ କହିଲା - 'ଯା ପଣ୍ଡାପୁଅ, ତୁମ ଆସିବା ଯାଏ ମୁଁ ଏଇଠି ତୁମ ବାଟକୁ ଅନେଇ କରି ବସିଛି।' ପୁଅ ଆସିବ ବୋଲି ବୁଢ଼ୀ ଆଖିକୁ ନିଦ ଆସୁ ନ ଥାଏ ଆଉ। ବୋହୂଟି ଗଲା ରାନ୍ଧିବାକୁ, ବୁଢୀ ଆସି ଦାଣ୍ଡ ଦୁଆରେ ବସିଲା, ମୁଁ ଆସିଲି ଷ୍ଟେସନକୁ।

"ସେହି ଯୋଉ ଲୋକ ଜଣକ - ନବୀନା ଓ ସେ ସାଙ୍ଗ ହୋଇ ଆସିଥିଲେ, ତା ସାଙ୍ଗରେ ଥରେ ମୋର ଦେଖା ହେଇଥିଲା। ନବୀନା କଥା କହୁଥାଏ ସେ - କୁଆଡେ, ଘରକୁ ଆସିବାକୁ ଦୁଇ ଚରି ଦିନ ଥାଏ, ତାକୁ ଆଉ ନିଦ ହେଲା ନାହିଁ, ଖାଲି ଗୋଡ ଟେକି ରହିଥାଏ - କୋଉ ଦିନ ଘରକୁ ଆସିବ। ଆସିବା ଆଗ ଦିନ ମା ଲାଗି ଦି'ଖଣ୍ଡ ଲୁଗା, ବୋହୂଟି ଲାଗି ଦି'ଖଣ୍ଡ ଲୁଗା, ଶୀତ ଦିନେ ବୁଢୀ କଷ୍ଟ ପାଏ ବୋଲି ବୁଢ଼ୀ ଲାଗି ଖଣ୍ଡେ କମଳ ବଜାରକୁ ଯାଇ କିଣି ଆଣିଲା। ତା ଆର ଦିନ ଦୁଇଜଣ ଯାକ ଗାଡି ଚଢ଼ିଲେ। ରାତିରେ ଗାଡିରେ ସମସ୍ତେ ଶୋଇଥାନ୍ତି - ତାକୁ କୁଆଡେ ଜମାରୁ ନିଦ ହଉ ନଥାଏ। ବାଟ ଯାକ ଘଡିକି ଘଡି ପଚରେ - 'ବଳପୁଅ, କେତେବେଳେ ଗାଡି ଜଗତ୍‌ପୁର ପହଞ୍ଚିବ?' - ମା ଭାରିଯାଙ୍କୁ ଦେଖିବାକୁ ମନ ତାର ଏତେ ଉଛନ୍ନ ହଉଥାଏ।

"ମାଘ ମାସ ଶେଷ ଶେଷ; ଭାରି କନକନିଆ ଉତରା ପବନ, ମେଘୁଆଟା କରି ବର୍ଷା ବି ଟୁପୁର୍ ଟୁପୁର୍ ହଉଥାଏ। ମୁଁ ଜାକିଜୁକି ହେଇ ଯୋଉ ଟିଣା ଘର, ତାରି ଗୋଟାଏ କଣରେ ବସି ଗାଡି ଆସିବାକୁ ଅନେଇ ଥାଏଁ। ଷ୍ଟେସନ ଘଡିରେ ଢଂ ଢଂ ହେଇ ବାରଟା ବାଜିଲା - ଗାଡି ପହଞ୍ଚିବାକୁ ଆହୁରି ଦେଢ଼ ଘଣ୍ଟା। ରାତି ନିଦରେ ଆଖି ବୁଜି ପଡୁଥାଏ - ଟିଣା କାନ୍ଥକୁ ଆଉଜି ଢୁଳେଇ ପଡିଲି ଟିକିଏ। କେତେବେଳେ ମତେ ଇମିତି ନିଦ ହେଇଗଲା କେଜାଣି?-ଗାଡି ଘଣ୍ଟା ଥର ଥର ହେଇ ତିନି ଥର କେତେବେଳେ ତା ଭିତରେ ବାଜିଗଲା, ମତେ ମାଲୁମ ନାହିଁ। ଶେଷକୁ ଗାଡି ଶବଦରେ ଚମକି ପଡି ନିଦ ମୋର ଛଟକିନି ଭାଙ୍ଗିଗଲା, ଦେଖିଲି - ଗାଡି ଆସି ଷ୍ଟେସନରେ ଠିଆ ହେଇଗଲାଣି। ଯୋଗକୁ ଦେଖ, ସେ ଦିନ ଲଣ୍ଠନଟା ବି ମୋର ଗୋଟାପରି କଳା ପଡିଯାଇଥାଏ, ତରତର ହେଇ ସେହି କଳାଧରା ଲଣ୍ଠନଟାକୁ ଆଉ ଟିକେ ତେଜି ଦେଇ ମୁଁ ନବୀନାକୁ ଅନିସା କରିବାକୁ ବାହାରିପଡିଲି।

ଗାଡି ସବୁଦିନ ଯୋଉ ଜାଗାରେ ଠିଆହୁଏ, ସେଦିନ ତା' ଆଗକୁ ଟିକିଏ ବାହାରି ଯାଇଥାଏ। ଏ ଷ୍ଟେସନଟାରେ ଆଲୁଅ ନା ଫାଲୁଅ । - ଅଫିସ୍ ଘର ଆଗରେ ଗୋଟାଏ ବତୀ ମିଞ୍ଜି ମିଞ୍ଜି ହେଇ ଜଳୁଥାଏ - ସତେ କି ଏଇସାତ୍ ଲିଭିଯିବ। ଏତେ ଗୁଡାଏ ଡବା, କୋଉ ଡବାରେ ସେ ଏବେ ଥିବ - ମୁଁ ତାକୁ କୋଉଠି ଖୋଜିବି ? ଗାଁରୁ କିଏ ଆସିଛି ବୋଲି, ଓହ୍ଲେଇ କରି ବଳେ ତ ସେ ଖୋଜିବ - ମନେ ମନେ ମୁଁ ଭାବିଲି। କେତେ ଲୋକ ଗାଡିରୁ ଓହ୍ଲେଇ କରି ଗଲେ, କେତେ ଲୋକ ଯାଉଥାନ୍ତି; ଲଣ୍ଠନ ଉପରକୁ ଟେକି ତାଙ୍କୁ ଦେଖିଲି - ନବୀନାକୁ ଆଉ ତାଙ୍କ ଭିତରେ ପାଇଲି ନାହିଁ। ମନରେ ସନ୍ଦେହ ହେଲା - ନବୀନା ଶୋଇ ପଡିଛି କି ଆଉ ? ଗାଡି ଯିବା ଉପରେ ଆସି ହେଲାଣି, ଓହ୍ଲଉ ନାହିଁ କାହିଁକି ? ସେଇଠୁ ମୁଁ 'ନବୀନା ରେ ନବୀନା ରେ' ଡବାକୁ ଡବା ଡାକି ଡାକିକା ଗଲି। ହେଲା ପାଖ ପାଖ, କଲିକତା ଫେରା ଯାତ୍ରୀ ଖୁବ୍। ଶ'ଶ' ଲୋକ ଓହ୍ଲଉଥାନ୍ତି, ଠେଲା ଠେଲି ହେଇ ଢ଼େର ଲୋକ ବି ଚଢୁଥାନ୍ତି। ବରଷା ବି ସେତିକିବେଳେ ଟିକିଏ ଜୋରରେ ହେଲା - ଭାରି ପାଟି ଗୋଳ ହଉଥାଏ। ମୋ ଡାକ ଶୁଭୁଥିବ କି ନାହିଁ, ଆଗଠୁଁ ଆହୁରି ଟିକିଏ ବଡ଼ ପାଟି କରି ଡାକିଲି - ତିନି ଚାରି ଡାକ ପରେ ସେଇ ଇଞ୍ଜିନ୍ ପାଖ ଡବା ଆଡୁ ମୋ ଡାକରେ କିଏ ଜବାବ୍ ଦେଲା - ମତେ ଶୁଭିଲା, ନବୀନା ପାଟି ପରି। ମୁଁ ସେଠୁ ଇଞ୍ଜିନ ଆଡକୁ ଦୌଡିଲି, ଦୌଡି ଦୌଡିକା ଅଧେ ଡବା ଡେଇଁ ଯାଇଛି, ଗାଡି ସିଟି ମାରିଦେଲା। ଯେ ସବୁ ଓହ୍ଲେଇ ପାରି ନ ଥାନ୍ତି, ଗଣ୍ଠୁଲି ପଟର ତଳକୁ ପକେଇଦେଇ ତରତର ହେଇ ଓହ୍ଲେଇ ପଡୁଥାନ୍ତି। ଇଞ୍ଜିନ ପାଖକୁ ପହଞ୍ଚିବାକୁ ଆଉ ଦୁଇ ତିନିଖଣ୍ଡ ଡବା ଥାଏ, ଦେଖିଲି - ଗଣ୍ଠୁଲିଟା ତଳକୁ ପକେଇ ଦେଇ ଜଣେ କିଏ ତରବର ହେଇ ଓହ୍ଲେଇ ପଡୁଛି। ଗାଡି ଚକ ସେତେବେଳକୁ କେଁ କାଁ କଲାଣି। ପାଖରେ ଯାଇ ପହଞ୍ଚି ଗଲିଣି ମୁଁ - ତଳକୁ ଗୋଡ ପାଇଯିବ ବୋଲି ଭାବି ସେ ଗୋଡ ବଢେଇ ଦେଲା କି କ'ଣ, ଠେଲାଠେଲିରେ ତରତର ହେଇ ଓହ୍ଲଉ ଓହ୍ଲଉ ଗୋଡ ତାର କିମିତି ଖସିଗଲା କି କଣ - ଅନଉଁ ଅନଉଁ ବାପ, ଦୁଲକିନା ଆସି ତଳେ କଘଡି ପଡିଲା। ଏ ଲୁହା ଗାଡି କ'ଣ କାହା କଥା ମାନେ ? ମୁଁ ହାଁ-ହାଁ କରି ତାକୁ ଉଠେଇବାକୁ ଯାଉଁ ଯାଉଁ, ଗୋଟାକ ପରେ ଗୋଟା, କେଁ କେଁ କରି, ରଣ ରଣ କରି ତା ଉପରେ ଚକ ଗଡିଗଲା ବାପ - ମୁଁ ସେଇମିତି ଥକାମରା ହେଇ ଅନେଇଥାଏଁ ? ଏ କଥା ଦେଖି ମୋ ଦେହରେ ଗୋଟାଏ ଦକ

ପଶିଗଲା – 'ନବୀନା କି ଆଉ ?' ତାରି ପାଟି ପରି ତ ଶୁଭିଲା ? ଦେହ ମୋର ଖାଲି ବରଡା ପତର ପରି ଥରୁଥାଏ ସେତେବେଳକୁ । ଓଃ, କି ରକ୍ତ ! ଖାଲି ପିଚକାରୀ ମାଇଲା ପରି ପିଚ୍ ପିଚ୍ ହେଇ ଛୁଟିଲା ! ମୋ ଗୋଡ, ମୋ ଲଣ୍ଠନ ମୋ ଲୁଗା ଲହୁରେ ଏକାବେଳେକେ ଲୁଗା ଲହୁରେ ଏକାବେଳକେ ଗୋଟା ପରି ହୋଇଗଲା । ଖାଲି ଉଷୁମ କଳା ରକତଗୁଡାକ ବାପ, ଖାଲି ଉଷୁମ କଳା ରକତଗୁଡାକ – ଓଦା ଭୂଇଁ ଉପରେ ପଡି ଧାର ଧାର ହେଇ ବୋହିଗଲା ।" କହୁଁ କହୁଁ ବୁଢ଼ା ଦେହ ଶୀତେଇ ଉଠୁଥାଏ । "ମୁଁ ଏକାକୀ ସେ ମଲା ମୁହଁକୁ ଭରସି କରି ଆଉ ଅନେଇ ପାରୁ ନ ଥାଏଁ । ଗାଡି ଯାଇ ମହାନଦୀ ପୋଲ ଉପରେ ହେଇଗଲାଣି, ସେଆଡୁ କୁଲିଟାଏ କିଏ ବତୀ ଧରି ଲାଇନ ପାଖେପାଖେ ଆସିଲା । ଲୋକଟା କିଏ ଲାଇନ ପାଖରେ ଇମିତି ଅବସ୍ଥାରେ ପଡିଛି ଦେଖି, ପାଖକୁ ଆସି ବତୀଟା ଟେକିଦେଇ ଦେଖିଲା, ସେହି ଆଲୁଅରେ ମୁଁ ବି ଦେଖିଲି, ନବୀନା, ଏତେ ଲମ୍ବର ଜିଭ କାମୁଡି ପକେଇ ପଡିଛି; ମୁଣ୍ଡଟା ଲାଇନର ସେ ପାଖରେ, ଗଣ୍ଡିଟା ଏ ପାଖରେ, ନୁଆ ଛତା ଖଣ୍ଡେ ହାତରେ ସେଇମତି ଧରା ହେଇଛି !

"ତା ପରେ ମୁଁ ..." ଠନ୍ ଠନ୍ ଠନ୍; ଠନ୍ ଠନ୍ ଠନ୍–ଷ୍ଟେସନ ଘଣ୍ଟା ବାଜିଉଠିଲା । ଛତା ବଟୁଆ କାଖରେ ଜାକି, "ହେଇ ଗାଡ଼ି ଆସିଲା" ବୋଲି କହି ପଣ୍ଡାପୁଅ ଚଞ୍ଚଳ ହେଇପଡ଼ିଲେ । ଆମେ କହିଲୁ – "ବସ, ବସ ପଣ୍ଡାପୁଅ, ଆହୁରି ତ ଗୋଟାଏଘଣ୍ଟା ବାଜିବ, ଇମିତି ବ୍ୟସ୍ତ କାହିଁକି ହଉଚ ? କଥାଟା ଶେଷ କରିଦେଇ ଯାଅ । ତା'ପରେ ତୁମେ କ'ଣ କଲ ? ଘରେ ତାଙ୍କୁ ଯେତେବେଳେ ଏ ଖବର ନେଇ ଦେଲ, ଶୁଣି କ'ଣ ହେଲେ ସେ ଦି'ଜଣ ?" ପଣ୍ଡାପୁଅ କହିଲେ – "ଛାଡ ବାପ ସେ କଥା, ସେସବୁ ଶୁଣି ଆଉ ଲାଭ୍ କ'ଣ ? ମନ ଯା' ଖାଲି ଖରାପ ହବ, ସେଇଆ ! ଆଜି ଭାରି ଭିଡ଼, ଗାଡି ଆସି ବନ୍ଦ ହେଇଥିବ କି ନାହିଁ, ଫେର ସିଟି ମାରିଦେବ । ମୁଁ ଯାଏଁ ବାପ, ଟିକଟ କରିନିଏଁ । ତୁମେ ତ କଟକ ଯିବ ? ଗାଡ଼ିରେ ସେସବୁ କଥା ମୁଁ ତୁମକୁ କହିବି ଯେ" – କହି ପଣ୍ଡାପୁଅ ଚାଲିଗଲେ ।

*(ନବଭାରତ / କୁମ୍ଭ / ୧୩୪୧ ସାଲ, ମାର୍ଚ୍ଚ ୧୯୩୫ ମସିହା )*

# ବଡ଼ଙ୍କଠୁଁ ବଡ଼ କିଏ ?

ଦୁଇଭାଇ - ରାମ ଓ ଶ୍ୟାମ; ରାମ ବଡ଼, ଶ୍ୟାମ ସାନ । ଏକା ସାଙ୍ଗରେ ରହିଲେ କାଳେ କଳିକଜିଆ କରିବେ କି ମାଡ଼ଗୋଳ ଲଗାଇବେ, ଏଥିଲାଗି ବାପା ଜୀଇଁ ଥାଉଥାଉ ବିଷୟ ସମ୍ପତ୍ତି ଦୁଇଭାଇଙ୍କୁ ବାଣ୍ଟି ଦେଇ ଯାଇଥିଲେ । ବିଷୟ ସମ୍ପତ୍ତି ଆଉ କ'ଣ କି ? - ଚାରିମାଣ ବୋଲି ଜମି, ରାମର ଦୁଇମାଣ, ଶ୍ୟାମର ଦୁଇମାଣ ।

ବାପା ଥାଉଥାଉ ରାମ ବିଭା ହୋଇଥିଲା - ରାମର ପୁଅ ଝିଅ ତିନିଟି । ଶ୍ୟାମ ବିଭା ହୋଇ ନାହିଁ - ସେ ବିଚରା ତାର ଏକାକୀ ଥାଏ ।

ନିତି ଶୋଇଲାବେଳେ ରାମ ତାର ସାନଭାଇ କଥା ଭାବେ - 'ଆହା ବିଚରା ! ବାପ ନାହିଁ, ମା' ନାହିଁ- ସବୁବେଳେ ଏକାକୀ ପଡ଼ିଛି । ମୋର ପୁଅଝିଅ ଅଛନ୍ତି, ଭାରିଯା ଅଛି - ବିଲକାମ ସାରି ଘରକୁ ଫେରିଲେ ଏମାନଙ୍କ ସାଙ୍ଗରେ କଥାବାର୍ତ୍ତା କରି, ହସକୌତୁକ କରି ଦୁଃଖ କ'ଣ, ଥକା କ'ଣ ମୁଁ ଜାଣୁନାହିଁ । ତାହାର ତ ଆପଣାର ହେଇ ଜଣେ କେହିନାହିଁ । ଦିନଯାକ ଖଟିଖଟି ଘରକୁ ଆସିବ - ଘରେ କଥା ପଦେ କହିବାକୁ କେହି ନାହିଁ । ବେମାର ଆରାମରେ ଦେହରେ ହାତ ଟିକିଏ ବୁଲେଇ ଦବାକୁ କେହି ନାହିଁ । ବିଭା ହୁଅନ୍ତା - ଟଙ୍କା ପଇସା ପାଇବ କୋଉଁଠୁ ? ଯାହା ଅର୍ଜୁଛି, ତା' ତ ପେଟକୁ ନିଅଣ୍ଟ । ବାପା ମରିଗଲାବେଳେ ତାକୁ ମୋ ହାତରେ ଦେଇ କହି ଯାଇଥିଲେ - 'ଶ୍ୟାମ ଏବେ ତୋତେ ଲାଗିଲା, ବାପ । ତୋ ଛଡ଼ା ଦୁନିଆରେ ତା'ର ଆଉ କେହି ନାହିଁ । ବିପଦ ଆପଦରେ ଟିକିଏ ସାହା ହେଉଥିବୁ ।' 'ବଡ଼ଭାଇ ମୁଁ, ସାନଭାଇଟି ଏତେ ଦୁଃଖ ପାଉଛି - କାହିଁ, ମୁଁ ତ ତାହାର କିଛିରେ ସାହା ହଉ ନାହିଁ ?' ରାମ ଆଖିରୁ ଲୁହ ଗଡ଼ିପଡ଼େ ।

ଏଣେ ଶ୍ୟାମ ନିତି ଶୋଇଲାବେଳେ ଭାବେ - 'ଆହା, ଭାଇ ମୋର ଭାରି ଗରିବ । ମୁଁ ଏକାକୀ, ମୋର ଦୁଇମାଣ ବିଲ; ଭାଇର ପିଲାଛୁଆକି ପାଞ୍ଚ ପ୍ରାଣୀ, ତାର ସେଇ ଦୁଇମାଣ ବିଲ । ସେଥିରେ ପୁଣି କୋଉଥର ଧାନ ଧୋଇରେ ଯାଉଛି ତ କେବେ ମରୁଡ଼ିରେ ମରୁଛି । ଯାନିଯାତ୍ରାରେ ପିଲାଏ ଭଲକି ଖଣ୍ଡେ ପିନ୍ଧିବାକୁ ପାଉ

ନାହାଁନ୍ତି, ପୁନେଇ-ପରବରେ ଭଲକିରି ଗଣ୍ଡିଏ ଖାଇବାକୁ ପାଉ ନାହାଁନ୍ତି - ଭାଇ ମନରେ କେତେ ଦୁଃଖ ହଉ ନଥିବ । ଭାଇକୁ ମୁଁ ନିତି ଦେଖୁଛି - କୋଉଦିନେ ଛିଣ୍ଡା-ଲୁଗା ଖଣ୍ଡେ ତ କୋଉଦିନେ ମଇଳା ଲୁଗାଖଣ୍ଡେ, ସେଥିରେ ପୁଣି ଦଶଜାଗାରେ ସିଲେଇ ହେଇଥିବ, ତାକୁ ପିନ୍ଧୁଛି । ଭାଉଜର ଦୁଃଖ କହିଲେ ନ ସରେ - ବିଚରା ଅଧେ ଦିନ ଉପାସ ରହୁଥିବ । ସବୁବେଳେ ଅଭାବ, ସବୁବେଳେ ଜଞ୍ଜାଳ । ଏହି ଅଭାବ ପାଇଁ ଏକାବେଳକେ କରଜରେ ବୁଡ଼ିଲାଣି । ଘରୁ ବାହାରକୁ ଗଲେ ମହାଜନର ଜୁଲୁମ, ବିଲରୁ ଥକି ଥକି ଘରକୁ ଆସିଲେ ପିଲାଛୁଆଙ୍କ ଜଞ୍ଜାଳ - ଭାରି ଦୁଃଖ ଭାଇର । ମୁଁ ସାନଭାଇ, ଏକା ମା' ପେଟରୁ ଆମେ ଜନମ ହେଇଚୁ - ମୁଁ କି ଉପକାର ତାର କରୁଚି ? ଭାଇ ମୋତେ କେତେ ଆଦର ନ କରେ । ପିଲାଦିନେ ମିଠେଇ ଗୋଟିଏ କୋଉଠୁଁ ପାଇଥିବ ତ ଖଣ୍ଡେ ଖାଇ ଖଣ୍ଡେ ମୋ ଲାଗି ରଖିଥିବ, ଫଳଟି ଖାଇଥିବ ତ ଫାଳେ ଖାଇ ଫାଳେ ମୋ ପାଇଁ ଧରିଥିବ । ଆଜିକାଲି, ଏଇ ଏତେ ଜଞ୍ଜାଳ ଭିତରେ ମଧ୍ୟ, ମୋତେ ଜର କି ଆଉ କିଛି ହେଲେ, ସବୁ କାମ ଛାଡ଼ିଦେଇ ଔଷଧ ପାଇଁ କୋଶ କୋଶ ବାଟ ଦୌଡ଼ିବ । ସବୁକଥା ପାସୋରି ଦେଇ, ଦିନରାତି ମୋ ମୁଣ୍ଡ ପାଖରେ ବସିଥିବ - କିନ୍ତୁ ମୁଁ କ'ଣ କରୁଛି ତାର ?' ଶ୍ୟାମ ଆଖି ଲୁହରେ ଭରିଯାଏ ।

ଇମିତି ପ୍ରତି ରାତିରେ ଦୁଇ ଭାଇ ଦୁଇଭାଇଙ୍କ କଥା କେତେ ଚିନ୍ତା କରନ୍ତି । ରାମ ତା ଭାରିଯା ସଙ୍ଗେ କେତେ ଭାବି ବିଚରି ଦିନେ ଠିକ୍ କଲା - 'ଶ୍ୟାମ ଯେତେ ଧାନ ପାଏ, ତା'ଠାରୁ କିଛି ଅଧିକ ପାଇଲେ ତା' ମନରେ ଟିକିଏ ହେଲେ ଆନନ୍ଦ ହୁଅନ୍ତା । ନିଜ ଖରଚରୁ କିଛି ବେଶି ପାଆନ୍ତା ଯଦି, ପ୍ରତି ବରଷ କିଛି କିଛି ଜମା କଲେ ଅବା ବିଭାଘରଟି କରିବାକୁ ହାତରେ ପଇସା ହେଇଯାନ୍ତା । ମୁଁ ତାର ବଡ଼ ଭାଇ - ମୁଁ ତାକୁ ଏଥିରେ ସାହା ହେବିନାହିଁ ତ ଆଉ କିଏ ହବ ?' ଏଇଆ ଭାବି ନିତି ରାତିରେ ଶ୍ୟାମ ଶୋଇପଡ଼ିଲେ ରାମ ନିଜ ଗଦାରୁ ଦୁଇବିଡ଼ା କଳେଇ ନେଇ ଶ୍ୟାମ ଗଦାରେ ଦେଇଆସେ ।

ଶ୍ୟାମ କେତେ ଭାବିଭାବି ଦିନେ ଠିକ୍‌କଲା - 'ଭାଇଟା କୁଟୁମାରିଆ, ଯେତେ ଧାନ ପାଉଚି, ତାଠୁଁ କିଛି ବେଶି ପାଆନ୍ତା ଯଦି, ଟିକିଏ ହେଲେ ଶାନ୍ତିରେ ରହନ୍ତା । ମୁଁ ଏକା ଲୋକ, ମୋର ଏତେ ଧାନ କ'ଣ ହବ ?' ଏଇ କଥା ଠିକ୍‌କରି

ନିତି ରାତିରେ ସମସ୍ତେ ଶୋଇପଡ଼ିଲେ, ଶ୍ୟାମ ନିଜ ଗଦାରୁ କଳେଇ ଦି'ବିଡ଼ା ନେଇ ଭାଇ ଗଦାରେ ଦେଇ ଆସେ ।

ସବୁଦିନ ରାତିରେ ଦୁଇଭାଇ ଯାକ ଲୁଚେଇ ଲୁଚେଇ ଏହିପରି କରୁଥାନ୍ତି । ଦଶଦିନ ଗଲା, ପନ୍ଦରଦିନ ଗଲା – ରାମ ଦେଖେ ତାର ଯେଉଁ ଗଦାକୁ ସେହି ଗଦା; ଶ୍ୟାମ ଦେଖେ ତାର ଯେଉଁ ଗଦାକୁ ସେହି ଗଦା ।

ରାମ ଭାବେ – 'ମୁଁ ତ ପ୍ରତି ରାତିରେ କଳେଇ ନେଇ ଶ୍ୟାମ ଗଦାରେ ଦେଇ ଆସୁଛି, ଗଦା କମୁନାହିଁ କେମିତି ?' ସେ ଆଶ୍ଚର୍ଯ୍ୟ ହୁଏ ।

ଶ୍ୟାମ ଭାବେ – 'କହ, ମୁଁ ତ ନିତିନିତି କଳେଇ ନେଇ ଆର ଗଦାରେ ଦେଇ ଆସୁଛି । ଗଦା କମୁନାହିଁ କାହିଁକି ?' ସେ ଅବାକ୍ ହୁଏ । ଦି'ଭାଇକି ଦି'ଭାଇ ଆଶ୍ଚର୍ଯ୍ୟ ହୁଅନ୍ତି; କିନ୍ତୁ କାହା ପାଖରେ କେହି କିଛି କହନ୍ତି ନାହିଁ ।

ଦିନେ ରାତିରେ ରାମ ଭାବିଚି – ଶ୍ୟାମ ଶୋଇ ପଡ଼ିଲାଣି, ଶ୍ୟାମ ଭାବିଚି – ଭାଇ ଶୋଇ ପଡ଼ିଲାଣି । କିନ୍ତୁ ଦୁହିଁଙ୍କ ଚିନ୍ତାରେ ଯେ ଦୁହିଁଙ୍କ ଆଖିକୁ ନିଦ ଆସୁନାହିଁ – ଏ କଥା ଆଉ ତାଙ୍କୁ ଜଣା ନାହିଁ । ରାମ ଉଠିଲା, ତା' ଗଦାରୁ ଦି'ବିଡ଼ା କଳେଇ ଧରି ଶ୍ୟାମର ଖଳାକୁ ଗଲା । ଶ୍ୟାମତାର ନିତି ଯିମିତି କରେ – ତା ଗଦାରୁ ଦି'ବିଡ଼ା କଳେଇନେଇ ଭାଇ ଖଳାକୁ ଗଲା । ଏଣୁ ରାମ ଆସୁଛି, ତେଣୁ ଶ୍ୟାମ ଆସୁଛି, ମଝିରେ ଦୁଇଭାଇ ଭେଟାଭେଟି ହୋଇଗଲେ । ସପ୍ତମୀ-ଜହ୍ନ ସେତେବେଳକୁ ବୁଡ଼ି ଯାଉଥାଏ, କାଳି-ଅନ୍ଧାରରେ ରାମ ଦେଖିଲା ଶ୍ୟାମ, ହାତରେ ଦି'ବିଡ଼ା କଳେଇ, ଶ୍ୟାମ ଚିହ୍ନିଲା – ଭାଇ, ତା' ହାତରେ ଦି'ଟା କଳେଇ । ରାମ ଶ୍ୟାମର ମନକଥା ବୁଝିପାରିଲା, ଶ୍ୟାମଭାଇର ମନକଥା ବୁଝିନେଲା । ଦୁହିଁଙ୍କ ମୁହଁ ଲାଜରେ ତଳକୁ ହୋଇଗଲା – କେହି କାହାକୁ ଆଉ କିଛି କହିପାରିଲେ ନାହିଁ । ମାତ୍ର ଗଦା ଯେ କାହିଁକି କମୁନାହିଁ, ଦୁଇଭାଇ ଆଜି ଜାଣିପାରିଲେ ।

ତା' ଆରଦିନ ସକାଳେ, ରାମ ଦାଣ୍ଡରେ ଯାହାକୁ ଦେଖିଲା, କହିଲା– "ଶୁଣିଲଣି ଆମ ଶ୍ୟାମ କଥା ? ମୋର କୁଟୁମାରିଆ ଘର-ଧାନ କାଳେ ଅଣ୍ଟୁଥିବ କି ନାହିଁ – ଏଥିଲାଗି ସେ ନିତି ଲୁଚେଇ ଲୁଚେଇ ରାତିରେ ନିଜ ଗଦାରୁ କଳେଇ ଆଣି ମୋ ଗଦାରେ ଦେଇଯାଉଚି, ମୋ ଉପରେ ତା'ର ଏତେ ଦରଜ । କିନ୍ତୁ ପିଲାଟା ଏକାକୀ ପଡ଼ିରହି କେତେ ଯାତନା ଭୋଗୁଚି – ମୁଁ ଦିନେ ହେଲେ ତା' ଦୁଃଖରେ 'ଆହା' ବୋଲି କହେ ନା ଇମିତି ଭାଇଟି କାହାରି ନଥିବ ।"

ଶ୍ୟାମ ସକାଳୁ ଉଠି ଯାହାକୁ ଦେଖିଲା, କହିଲା - "ଭାଇକଥା ଶୁଣିଲଣି ? ମୁଁ ଏକା ବୋଲି କାଳେ ମୋ ମନରେ ଦୁଃଖ ହଉଥିବ, ଏଇଆ ଭାବି ଭାଇ ମୋ ଗଦାରେ, ରାତିରେ ଲୁଚେଇ ଲୁଚେଇ କଳେଇ ଦେଇ ଯାଉଛି - ଦି ଗୌଣୀ ବେଶି ପାଇଲେ କାଳେ ମୋ ମନରେ ଟିକିଏ ଆନନ୍ଦ ହବ । ମୋ ଚିନ୍ତାରେ ଭାଇ ଆଖିକୁ ନିଦ ଆସୁ ନାହିଁ - କିନ୍ତୁ ଭାଇର ଏତେ ଦୁଃଖ, ମୁଁ ଦିନେ ହେଲେ ତାର କେଉଁଥିରେ ସାହା ହୋଇ ନାହିଁ । କପାଳ ଯାହାର ଭଲ, ଇମିତି ଭାଇ ତାକୁ ମିଳେ ।"

ଆସ୍ତେ ଆସ୍ତେ ଏ କଥା ରାଜାଙ୍କ କାନକୁ ଗଲା ଯେମିତି, ରଜା ଦୁଇ ଭାଇଙ୍କୁ ନଅରକୁ ଡକେଇ ନେଇ କେତେ ଆଦର କଲେ । ତହିଁ ଆରଦିନ ପାତ୍ର-ମନ୍ତ୍ରୀ, ପ୍ରଜାପାଟକଙ୍କୁ ନେଇ ରଜା ଗୋଟାଏ ଭାରି ବଡ଼ ସଭା କଲେ । ସଭାରେ ଦୁଇ ଭାଇଙ୍କୁ କେତେ ପ୍ରଶଂସା କରି କହିଲେ - 'ଭାଇ ଦୁଃଖରେ ଭାଇ ଆଖିକୁ ନିଦ ଆସୁ ନାହିଁ । ନିଜେ ପଛକେ ଉପାସ ରହନ୍ତୁ, ଭାଇର କିମିତି ଟିକିଏ ସୁଖ ହବ, ଏଥିଲାଗି ନିଜ ଗଦାରୁ ଧାନ ନେଇ ଭାଇ ଗଦାରେ ଦେଇ ଆସୁଚନ୍ତି । ୟାଙ୍କୁ ସିନା କହିବ ଭାଇ, ଭାଇ ଆଉ ଯୋଉମାନେ ଜମିଗୁଣ୍ଠକ ପାଇଁ, ଟଙ୍କା ଗୋଟାକ ପାଇଁ କଳିକଜିଆ କରି ମୁଣ୍ଡ ଫଟାଫଟି ହୁଅନ୍ତି, ସେମାନେ କ'ଣ ଭାଇ ? ..... ସେମାନେ ଶତ୍ରୁ, ସେମାନେ ଭଗାରି । ଭାଇ ଦୁଃଖରେ ଭାଇ ଜୀବନ କାନ୍ଦେ - ଇମିତି ଭାଇ ଯୋଉ ଘରେ ଥାନ୍ତି, ସେ ଘର ପବିତ୍ର । ଦୁହିଁଙ୍କ ଦୁଃଖରେ ଦୁହେଁ ସାହା ହେବାଲାଗି ଯାଉଁ ଯାଉଁ ଯେଉଁଠି ଭେଟାଭେଟି ହୁଅନ୍ତି - ସେ ଜାଗା ବଡ଼ଠାକୁରଙ୍କ ବଡ଼ ଦେଉଳଠୁଁ ଆହୁରି ପବିତ୍ର ।

ରଜା ଦୁଇଭାଇଙ୍କୁ ବହୁତ ଟଙ୍କା କଉଡ଼ି, କେତେ ଭଲ ଭଲ ଜମି ଦେଲେ - ଭଲ ଝିଅଟି ସାଙ୍ଗରେ ଶ୍ୟାମର ବିଭାଦେଇ ଦୁଇଭାଇଙ୍କୁ ଘରକୁ ଫେରେଇ ଦେଲେ ।

ସେହି ଦିନଠୁଁ ରାଜ୍ୟ ଯାକର ଘରେ ଘରେ, ମୁହେଁ ମୁହେଁ ଏ ଦୁଇ ଭାଇଙ୍କର ପ୍ରଶଂସା କହିଲେ ନ ସରେ ।

*(ଜହ୍ନମାମୁଁ -୧ମ ବର୍ଷ /ତୃତୀୟଖଣ୍ଡ/ବୈଶାଖ ୧୩୩୯ ସାଲ / ୧୯୩୨ ମସିହା)*

# ଉଷା

ଦୂର ନୀଳ ସରଗରେ - ଜନମାନବଙ୍କ ଚଲାବୁଲା ଥାନର ଅନେକ ଉପରେ ସୁନ୍ଦରୀ ପରୀଟିଏ ଥାଏ - ଆଉ ସାଙ୍ଗରେ ଥାଏ ତାର ଝିଅଟି।

ମା, ଝିଅ ଦୁହେଁ ଦେଖିବାକୁ ଭାରି ସୁନ୍ଦର। ମା-ପରୀ ସବୁବେଳେ ରେଶମୀ ରଙ୍ଗର ଶାଢ଼ୀ ଖଣ୍ଡିଏ ପିନ୍ଧିଥାଏ, ଏତେ ମଣି-ମାଣିକ୍ୟ ଶାଢ଼ୀରେ ତାହାର ଖଞ୍ଜା ହୋଇଥାଏ ଯେ, କହି ହବ ନାହିଁ! - ଆଉ ସେ ମଣି-ମାଣିକ୍ୟସବୁ ଏତେ ଚକଚକିଆ ଯେ, ଗଛରୁ ଫୁଲ ଝରିଲା ପରି କିରଣ ସେଥିରୁ ଝରି ପଡୁଥାଏ। ମା-ପରୀ ନିତି ରାତିରେ ତାରା-ହୀରାରେ ଜରିକରା ଶାଢ଼ୀ ପିନ୍ଧି ଆମର ଏଇ ପୃଥିବୀ ଉପରେ ଆସି ବୁଲିଯାଏ। ନିଶବଦ ରାତିରେ ଚାଲିଗଲା ବେଳେ ଗୋଡ଼ରେ ତାହାର ନୂପୁର ବାଜେ ରୁଣ୍ ଝୁଣ୍ ରୁଣ୍।

ଆଉ ଦିନେଦିନେ ସେ କଳା ବଦଳରେ ଧଳା ରେଶମୀଲୁଗା ପିନ୍ଧି, ମଥାରେ ପୁନେଇଁଜହ୍ନର ଟିପାଟି ଘିନି, ସଞ୍ଜହେଲା କ୍ଷଣି ବାହାରିପଡେ। ସେତେବେଳେ, ସେଇ ପୁନେଇଁ ରାତିରେ ରୂପର ଝଲକ ଦେହରୁ ତାହାର ଉଚ୍ଛୁଳି ପଡୁଥାଏ । ଏଡ଼େ ସୁନ୍ଦର ରୂପ ଯେ, ସାରା ସଂସାର ପୁଲକ ନୟନରେ ତାହାରି ଆଡ଼କୁ ଅନଇ ରହି ଭାବେ - "ଏଡ଼େ ସୁନ୍ଦର ରୂପ ଫେର୍ ଜଣ ଜଣକର ଥାଏ!"

ରାତି ସରି ଆସିଲା କ୍ଷଣି ମା-ପରୀ ଝିଅକୁ ତାହାର ଯାଇ କହେ - "ଉଠ୍ ଲୋ ଉଷା ଉଠ୍; ଯା, ଥଣ୍ଡା ସୁଲୁସୁଲିଆ ପବନରେ ଟିକିଏ ବୁଲିଆ।" ମା-ପରୀ ଘରେ ରହେ, ଝିଅ-ପରୀ ବାହାରିପଡେ-ଟିକିଏ ବୁଲି ଆସିବାକୁ।

ମା'ଠାରୁ ଝିଅ ଆହୁରି ସୁନ୍ଦରୀ - ଥରେ ଦେଖିଲେ ତା' ଉପରୁ ଆଉ ଆଖି ଫେରେଇ ଆଣିବାକୁ ମନ ବଳେ ନା । ସଂସାରର ସବୁଠାରୁ ସୁନ୍ଦର ରଙ୍ଗରେ ପୋଷାକ ତାହାର ତିଆରି - ଇମିତି ସୁନ୍ଦର ରଙ୍ଗ, ଇମିତି ସୁନ୍ଦର ଲୁଗା ଜୀବନରେ କେହି କେବେ ଦେଖି ନ ଥିବେ କି ସପନରେ ଭାବି ନ ଥିବେ! ସବୁ ରଙ୍ଗରୁ ଝିଅର ଲାଲ,

ବାଇଗଣି, ନାରଙ୍ଗୀ ରଙ୍ଗରେ ଭାରି ଶରଧା। ଝିଅ-ପରୀ ବଡ଼ ସୁନ୍ଦରୀ, ଏତେ ତା'ର ସୌକି ଯେ ଘଡ଼ିକୁ ଘଡ଼ି ଭଳିକିଭଳି ଲୁଗା ପିନ୍ଧେ - କେତେବେଳେ ଲାଲ୍ ତ କେତେବେଳେ ଗୋଲାପୀ, କେତେବେଳେ ବାଇଗଣି ତ କେତେବେଳେ ନାରଙ୍ଗୀ! ସକାଳର ସୁଲୁସୁଲୁଆ ପବନରେ ଲୁଗା କାନି ତାହାର ସରଗରେ ଉଡ଼ିଲା ବେଳେ ବଡ଼ ସୁନ୍ଦର ଦେଖାଯାଏ। ଉଷାର ରୂପଟି ଯେପରି ସୁନ୍ଦର, ଗୁଣଟି ତାହାର ତାହାଠାରୁ ଆହୁରି ମଧୁର। ତାକୁ ଦେଖିଲାକ୍ଷଣି ଫୁଲ ହସିହସି ଡ଼ାକେ - "ଆସ ଗୋ ଉଷା, ଆସ!" ପକ୍ଷୀ ନିଦରୁ ଉଠି ଡ଼ାକେ - "ଆସ ଉଷା, ଆସ!" - ସାରା ଦୁନିଆଟା ଉଷାକୁ ଦେଖି ଆନନ୍ଦରେ ଅଥୟ ହେଇପଡେ।

ଉଷାର ଭାରି ଲାଜ, ଭାରି ସରମ। ମା ପରି ସେ ସରଗ ଯାକରେ ବୁଲେ ନାହିଁ। ଦୂରରେ - ଖ୍ୱବ୍ ଦୂରରେ - ଯୋଉଠି ସରଗ ସାଙ୍ଗରେ ପୃଥିବୀ ମିଳି ଯାଇଥାଏ, ଯାଇ ସେଇଠି - ଲାଲ ରଙ୍ଗର ଓଢ଼ଣାଟି ଟାଣିଦେଇ ବସିଥାଏ। ସକାଳର ପାଗଳା ପବନରେ ଲୁଗା ଏଣେ ତେଣେ ଉଡ଼ିଗଲା ବେଳକୁ ଲାଜରେ ମୁହଁ ତାହାର ରଙ୍ଗା ପଡ଼ିଯାଏ, ଦେହରୁ ଝାଳ ବାହାରି ପଡେ। ସେହି ଝାଳ ବିନ୍ଦୁ ବିନ୍ଦୁ ହେଇ ଘାସ ପତର ଉପରେ ପଡିଥାଏ - ଆମେ ତାକୁ କହୁ 'କାକର'। ସୂର୍ଯ୍ୟ ଦେବତାଙ୍କୁ ତାହାର ଭାରି ଲାଜ - ତାଙ୍କୁ ଦେଖିଲା କ୍ଷଣି ଉଷା ତରତର ହେଇ ପଳେଇଯାଏ। କାହିଁକି କେ ଜାଣେ?

ଉଷା ଅସ୍ତବ୍ୟସ୍ତ ହେଇ ପଳେଇ ଗଲେ, ଦିନ-ଦେବତା ତାକୁ ଧରିବା ଲାଗି ତାଙ୍କ ରଥରେ ବସି ରଥ ଝପଟେଇ ଦିଅନ୍ତି। ଉଷା ପାରୁ ପରିଯନ୍ତେ ଧାଇଁ ଥାଏ, ଧାଉଁ ଧାଉଁ ବେଳେ ବେଳେ ବେକରୁ ତାହାର ଚମ୍ପା - ଗୋଲାପର ହାର ସବୁ ଛିଡ଼ି ପଡ଼ି ଫୁଲଯାକ ସରଗରେ ବିଞ୍ଚି ହେଇଯାଏ। ଉଡ଼ନ୍ତା ପାଟ-କାନି ଉପରେ ଦିନ-ଦେବତାଙ୍କ ତେଜ ବାଜି ଆଲୁଅ ସେଥିରୁ ଠିକରି ପଡ଼େ; ଆଉ ସେହି ଆଲୁଅରେ ବନ-ପାହାଡ଼, ବିଲ-ପଡ଼ିଆ, ନଈ-ନାଳ ସବୁ ଏତେ ସୁନ୍ଦର ଦେଖାଯାଏ ଯେ - ସତେ କି କିଏ ସରଗରୁ ଥାଇ ଏ ସବୁ ଉପରେ କେତେ ଯତନକରି ଫଗୁ ବୁଣି ଦେଉଛି! ସୂର୍ଯ୍ୟ ଦେବତା ପଛରୁ ଥାଇ ଡ଼ାକନ୍ତି - "ଉଷା, ରହ ଗୋ ରହ, କଥା ପଦେ ମୋର ଶୁଣି ଯା। ପଳା ନା, ପଳା ନା; ରହ, ତୁମକୁ ମୁଁ ମୋର ରାଣୀ କରିବି-ତୁମେ ମୋର କନକ-ପୁରର ଘରଣୀ ହବ। ତୁମର ଏଇ ଝଲମଲ ରୂପରେ ମୋର ଏଇ ତେଜ

ମିଶିଲେ ଧରଣୀ ହଜାର ଗୁଣରେ ଅଧିକ ସୁନ୍ଦର ଦିଶିବ।" କଥାରେ ତାଙ୍କର କାନ ନ ଦେଇ ଉଷା ପଳେଇଯାଏ । ତାକୁ ଧରିବା ଲାଗି ସୂର୍ଯ୍ୟଦେବତା ଆହୁରି ଜୋର୍‌ରେ ଘୋଡ଼ା ଝପଟେଇ ଦିଅନ୍ତି, କିନ୍ତୁ ପାରନ୍ତି ନାହିଁ ଆଉ। ଶେଷକୁ ସଞ୍ଜ ହୁଏ, ମନ ଦୁଃଖରେ ସୂର୍ଯ୍ୟଙ୍କର ମୁହଁ ଫିକା ପଡ଼ିଥାଏ। ତା' ପରେ ସେ ଘରକୁ ଯାଇ, କାଳି-ଅନ୍ଧାରର ମଶାରି ଖଣ୍ଡେ ଟାଣି ଦେଇ ନିରାଶ ମନରେ ଶେଯରେ ଢ଼ଳି ପଡ଼ନ୍ତି।

କେଜାଣି କେତେ ଲକ୍ଷ ବର୍ଷ ହେଲା - ଏଇ ସଂସାର ତିଆରି ହେଲା ଦିନରୁ ସୂର୍ଯ୍ୟ ଦେବତା ଗୋଡ଼େଇଛନ୍ତି ଉଷାକୁ ଧରିବା ପାଇଁ; କିନ୍ତୁ ଦିନେ ହେଲେ ଧରି ପାରୁ ନାହାନ୍ତି। ତାଙ୍କ କଥାରେ ରାଜି ହେଇ ଉଷା କୋଉ ଦିନ ତାଙ୍କ କନକପୁରକୁ ଯିବ କେ ଜାଣେ ?

*(ଝଙ୍କାମାମୁଁ - ୧ମ ବର୍ଷ / ଚତୁର୍ଥ ଖଣ୍ଡ / ଜ୍ୟେଷ୍ଠ - ୧୩୩୯ ସାଲ)*

# ବାସନ୍ତୀ

ଅକୂଳ ନୀଳସାଗର - ସେହି ନୀଳସାଗର ଉପରେ କେଡ଼େ ସୁନ୍ଦର ଦ୍ୱୀପଟିଏ - ଦୂରରୁ ଦେଖିଲେ ନୀଳକାନ୍ତ ହୀରା ଖଣ୍ଡିଏ ପରି ଦେଖାଯାଏ। ଜହ୍ନରାତିରେ ଯେତେବେଳେ ସମୁଦ୍ରରେ ଲହରୀ ଉଠେ, ଦେଖିଲେ ମନେ ହୁଏ - ସତେ କି ଲକ୍ଷେ ଜଳଦେବୀ ହାତତାଳି ଦେଇ ତା ଚାରିପାଖରେ ଗୀତ ଗାଇ ଗାଇ ନାଚୁଛନ୍ତି ! ଅନେକ ଯୁଗ ତଳେ ଏହି ଦ୍ୱୀପରେ 'ନଗରୀ ବୋଲି କେଡ଼େ ସୁନ୍ଦର ସହରଟିଏ ଥିଲା; କିନ୍ତୁ ସେ ନଗରୀ ଆଉ ନାହିଁ। ତାର କୋଠା, ତାର ରାସ୍ତା ସବୁ ଭାଙ୍ଗିରୁଜି ଯାଇ ମାଟି ସାଙ୍ଗରେ ମିଶିଗଲାଣି। ନଗରୀର ଅଳ୍ପ ଦୂରରେ ଅଗ୍ନି-ପର୍ବତ, ମେରୁ-ମେରୁ ତଳ ପାତାଳପୁରୀରେ ଯମ ରାଜାଙ୍କର ଘର।

ଧରଣୀ - ଆମେ ଯାହାଙ୍କୁ ବସୁମାତା ବୋଲି କହୁଁ, ତାଙ୍କର ଘର ଏଇ ନଗରୀରେ। ତାଙ୍କର ଗୋଟିଏ ବୋଲି ଝିଅ - ତା ନାଁ ବାସନ୍ତୀ। ସଞ୍ଜ ସକାଳେ ବାସନ୍ତୀ ତାହାର ସାଙ୍ଗ ସାଥୀଙ୍କୁ ନେଇ ନଗରୀର ଫୁଲ ବଗିଚାରେ ଦାଣ୍ଡ-ହାଟରେ କେତେ ଖେଳ ଖେଳେ। ସଂସାରରେ କି ଚିନ୍ତା ତାହାର ? ମେରୁର ନିଆଁ ଧୂଆଁକୁ କି ଡର ତାହାର ? ସେହି ପିଲାଟି ଦିନରୁ ସେ ମେରୁର ତଳେ ତଳେ, ନଗରୀର ସବୁଜ ପଡ଼ିଆରେ କେତେ ଖେଳ ଖେଳିଛି, କେତେ ଦୌଡ଼ି ଧାଇଁ ବୁଲିଛି - ଏସବୁ ଯେ ତାହାର କେତେ ଦିନର ଚିହ୍ନା - ଏ ସବୁ ଯେ ତାହାରି ! ଯମ ସିନା ଅନ୍ଧାର-ଘେରା ପାତାଳ-ପୁରୀର ରାଜା, ସେ ତ ଆଉ ଏ ଆଲୋକ-ସୁନ୍ଦର ପୃଥିବୀର ରାଜା ନୁହଁନ୍ତି ? ତେବେ ବାସନ୍ତୀ ଯମକୁ ଡରିବ କାହିଁକି ?

ମେରୁ ତଳେ ତଳେ ଗୋଲାପର ବନ। ଦିନେ ସକାଳର ଅଥୟ ପବନ ବାସନ୍ତୀର କାନେ କାନେ ଆସି କହିଗଲା - "ବାସ, ଆସ ଗୋ ଆସ। ମେରୁ ତଳେ ଗୋଲାପ ବନ ଆଜି ଫୁଟନ୍ତା ଫୁଲରେ ମହକି ଉଠୁଛି।" ଫୁଲରେ ବାସନ୍ତୀର ଭାରି ଶରଧା । ପବନ କଥାରେ ସେ ଗୋଲାପବନକୁ ଯିବାପାଇଁ ପାଗଳୀଙ୍କ ପରି ହେଇ

ତା'ର ସାଙ୍ଗସାଥୀମାନଙ୍କୁ ଯାଇ ଡାକି ଆଣିଲା । ହାତରେ ଝଙ୍ଗୁଡାଟି ଲେଖାଏଁ ଧରି ସମସ୍ତେ ଗୋଲାପ-ବନକୁ ବାହାରି ପଡ଼ିଲେ।

ସତକୁ ସତ ସେ ଦିନ ଏତେ ଚହଟରେ ଏତେ ଫୁଲ ଫୁଟି ଯାଇଥାଏ ଯେ ମେରୁ-ତଳଟି ଫୁଲେଫୁଲେ ଫୁଲମୟ ହେଇ ଯାଇଥାଏ । ଯାଇ ପହଞ୍ଚିଲା କ୍ଷଣି ତରବର ହେଇ ସମସ୍ତେ ଫୁଲ ତୋଳିବାରେ ମାତିଗଲେ। କାହାରି ଉପରେ କାହାର ଆଉ ନଜର ନାହିଁ - ସମସ୍ତେ ଫୁଲ ତୋଳିବାରେ ଲାଗିଛନ୍ତି। ଫୁଲ ତୋଳୁ ତୋଳୁ ଘଡିକ ଭିତରେ, ଏ ଆଡେ ସେ ଆଡେ ଯାଇ, ସମସ୍ତେ ଗୋଟି ଗୋଟି ହେଇଗଲେ। କିଏ କୁଆଡେ ଗଲା, ବାସନ୍ତୀର ସେ ଆଡକୁ ଆଉ ନଜର ନାହିଁ - ସେ ତାର ମନ ଲଗେଇଦେଇ ଫୁଲ ତୋଳିବାରେ ଲାଗିଥାଏ।

ବାସନ୍ତୀ ଏକା - ସାଙ୍ଗସାଥୀ ପାଖରେ କେହି ନାହାନ୍ତି। ଏତିକି ବେଳେ, ଗୋଡ଼ ତଳେ ତାହାର ମାଟି ଥର ହେଇ ଥରି ଉଠିଲା। ଦଣ୍ଡେ ଯାଇ ନାହିଁ-ଭୂଇଁ ଦୁଇଫାଳ ହେଇ ଫାଟିଗଲା - ଆଉ ସେହି ଫାଟଭିତରୁ ଧୂଆଁ-ଧୂଳିରେ ଢ଼ାଙ୍କି ହେଇ ବାହାରି ପଡ଼ିଲା ଗୋଟାଏ ରଥ - ରଥରେ କଳାକଳା ଘୋଡା ଦି'ଟାଙ୍କ ମୁହଁରୁ ଫେଣ ଥପଥପ ହେଇ ଖସି ପଡୁଥାଏ। ବାସନ୍ତୀକୁ ଦେଖି ରଥ ଥପ୍‌କିନା ରହିଗଲା- ରଥ ରହିଛି କି ନାହିଁ ସାଙ୍ଗେ ସାଙ୍ଗେ ତ୍ରିପଣ୍ଡ କଳା ଅସୁର ପରି ଲୋକଟାଏ କିଏ ରଥରୁ ଓହ୍ଲେଇ ଆସିଲା।- ଏ ଯେ ଯମ! - ଆଖିରେ ପଲକ ନ ପଡୁଣୁ ଯମ ବାସନ୍ତୀକୁ ରଥରେ ବସେଇ ପାତାଳ - ପୁରକୁ ରଥ ଛୁଟେଇ ଦେଲେ। ବାସନ୍ତୀ କେତେ ଡ଼ାକିଲା, କେତେ କାନ୍ଦିଲା - ମାତ୍ର କେହି ଶୁଣିଲେ ନାହିଁ କି ଆସିଲେ ନାହିଁ। ପାଖରେ କେହି ଥିଲେ ତ ଆସିବ କି ଶୁଣିବ ?

ବାସର ସାଥୀମାନଙ୍କ ଭିତରୁ, ଯେଉଁମାନଙ୍କୁ ତାହାର ବିକଳ ଡ଼ାକ ଶୁଭିଲା, ସେମାନେ ଦୌଡ଼ି ଦୌଡ଼ି ଆସିଲେ। ଆସି ଦେଖିଲେ - ବାସର ଝଙ୍ଗୁଡା ପଡ଼ିଛି, ଫୁଲସବୁ ବୁଣି ହେଇ ଯାଇଛି। ସେମାନେ ବାସକୁ କେତେ ଖୋଜିଲେ, କେତେ ଡାକିଲେ - ଶେଷକୁ ତାକୁ ନ ପାଇ ସମସ୍ତେ ଭାରି ବିକଳ ହେଇ କାନ୍ଦିଲେ।

ମେରୁର ଖଣ୍ଡେ ଦୂରରେ ବାସନ୍ତୀର ଘର। ଏପରି ବିକଳ ଡାକ ଧରଣୀ କାନରେ ବାଜିଲାରୁ ସେ କାନ ଡ଼େରି ଶୁଣିଲେ - "ଏ ତ ମୋର ବାସନ୍ତୀର ପାଟି !"

ସେ ମେରୁ ତଳକୁ ଧାଇଁ ଯାଇ କେତେ ଆକୁଳ ହେଇ ଡାକିଲେ - "ବାସନ୍ତୀ, ବାସ, ବାସରେ, ରେ ବାସ -" କିନ୍ତୁ ବାସ ତାଙ୍କର ଆଉ ଜବାବ ଦେଲା ନାହିଁ। ମେରୁର ଫୁତ୍କାରରେ, ଭୂମିକମ୍ପର 'ଗୁରୁଗୁରୁ' ଗର୍ଜନରେ ସେତେବେଳକୁ ପାତାଳ-ପୁରୀରେ ଯମରାଜାଙ୍କର ଉତ୍ସବର ବାଜଣା ବାଜୁଥାଏ।

ଦିନସାରା ଲୁହରେ କାନି ତିନ୍ତେଇ ଧରଣୀ ତାଙ୍କର ହଜିଗଲା ବାସକୁ କେତେ ଖୋଜିଲେ, ରାତିସାରା ଆଲୁଅ ଜାଳି "ବାସ, ବାସ" ବୋଲି କେତେ ଆତୁର ହୋଇ ଡାକିଲେ। ନ ଖାଇ ନ ପିଇ ଏହିପରି ସେ କେତେ ଦିନ, କେତେ ରାତି, ବନ-ପାହାଡ଼ରେ, ନଈ-କୂଳରେ, ସାଗର-ବେଳାରେ ବାସନ୍ତୀ ପାଇଁ କାନ୍ଦିକାନ୍ଦି ବୁଲିଲେ; କିନ୍ତୁ ଦିନ ଯାଇ ରାତି ଆସେ, ରାତି ପାହି ଦିନ ହୁଏ - ବାସନ୍ତୀକୁ ଆଉ ପାଇଲେ ନାହିଁ। ସେ କେତେ ବିକଳ ହେଇ ସୂର୍ଯ୍ୟଦେବତାଙ୍କୁ, ଜହ୍ନମାମୁଙ୍କୁ, ଅନ୍ଧାର ରାତିରେ ତାରାମାନଙ୍କୁ ପଚାରନ୍ତି - "ଦେଖିଚ କି ତୁମେ ମୋ ବାସ କୁଆଡ଼େ ଗଲା ?-କେହି କିଛି କହନ୍ତି ନାହିଁ ଆଉ।

କେତେଦିନ ପରେ, ଧରଣୀ ଦିନେ ମେରୁ ତଳେ ମନଦୁଃଖରେ ବୁଲୁ ବୁଲୁ ବାସନ୍ତୀର ସାଥୀମାନଙ୍କୁ ଦେଖିବାକୁ ପାଇଲେ। ସେମାନଙ୍କର ଆଉ ଏ ମଣିଷ ଶରୀର ନ ଥାଏ - ବାସନ୍ତୀ ପାଇଁ କାନ୍ଦିକାନ୍ଦି ସେତେବେଳକୁ ସେମାନେ ଲୁହ ହେଇ ତରଳି ଯାଇଥାନ୍ତି । ଆଜି ଯେଉଁ ନଈସବୁ ମେରୁରୁ ବାହାରି ସେହି ଦ୍ୱୀପ ଉପରେ ବହି ଯାଉଛନ୍ତି, ସେମାନେ ସବୁ ବାସନ୍ତୀର ସାଥୀ । ଏତେଦିନଯାଏ ବାସକଥା ତାଙ୍କ ମନରୁ ପାଶୋରି ଯାଇ ନାହିଁ - ତା'ପାଇଁ ଦୁଃଖରେ ତାଙ୍କର ଲୁହ ଝରଝର ହେଇ ନଈଧାରରେ ବହି ଯାଉଛି । ଦୁଃଖରେ କାନ୍ଦିକାନ୍ଦି ସେମାନେ ତ ଲୁହ ହେଇ ବହି ଯାଉଥାନ୍ତି-ସେମାନଙ୍କର ଆଉ କଥା କହିବାକୁ ଶକ୍ତି ନ ଥାଏ, ସେହି ନଈଭିତରୁ ଗୋଟିକରେ ବାସବେକର ବଉଳମାଳି ଭାସି ଯାଉଥିଲା। ବାସ-ମା'ର ଦୁଃଖ ଦେଖି ବାସର ବଉଳ ମାଳିକୁ ଦେଖେଇ ସେ କୁଳୁକୁଳୁ ହେଇ କ'ଣ କେତେ କାନ୍ଦିକାନ୍ଦି କହିଲା-ଧରଣୀ ଜମାରୁ ବୁଝିପାରିଲେ ନାହିଁ।

ସେଠୁ ଧରଣୀ ସେ ବଉଳମାଳିକୁ ପାଣିରୁ ଉଠେଇ ନେଇ ଦେଖିଲେ- 'ଏ ତ ବାସବେକର ବଉଳମାଳି!' ସେ ଦିନ ସେ ନିଜେ ଗୁନ୍ଥି କରି ବାସ ବେକରେ

ପିନ୍ଧେଇ ଦେଇଥିଲେ - ଆଖିରୁ ବି'ଧାର ହୋଇ ଲୁହ ବୋହିଗଲା । ଆଉ କରିବେ କ'ଣ ? - କାନିରେ ଲୁହ ପୋଛିପୋଛିକା - କାଳେ ଆଉ କାହାଠୁଁ ବାସନ୍ତୀର ଖବର ମିଳିଯିବ କି କ'ଣ, ମନରେ ଭାବି, ଆଗକୁ ଆଗକୁ ମେରୁ ଆଡକୁ ଚାଲିଲେ । ଯାଇ ଯାଇ ମେରୁ ପାଖରେ ଦେଖିଲେ - ଉତ୍ସ ଗୋଟିଏ, ତାର କେଡେ ସୁନ୍ଦର ପାଣି, ତଳୁ ଫୁଆର ଉଠୁଛି । ଦେବୀ ତାକୁ ପଚାରିଲେ - "ଆଲୋ ମା, ତୁ ମୋ ବାସକୁ ଦେଖିଛୁ କି ?" ସେ କହିଲା - "ହଁ, ମା', ମୁଁ ଯେତେବେଳେ ପାତାଳ-ପୁରୀରୁ ପାଣି ଆଣୁଥିଲି, ବାସକୁ ତୁମର ମୁଁ ସେଠି ଦେଖି ଆସିଲି । ଯମ ତ ବାସକୁ ତାଙ୍କର ରାଣୀ କରିବାକୁ ନେଇଗଲେ, କାହାର ଶକ୍ତି ଅଛି ମା, ଯମ-ରାଜାଙ୍କର ଅନ୍ଧାର-ପୁରୀରୁ ଫେରାଇ ଆଣିବ ? ଆଉ କାନ୍ଦ ନା ମା ! କାନ୍ଦି କାନ୍ଦି ରକ୍ତ ମାଂସ ତୁମର ଲୁହ ହେଇ ଆଖି ବାଟେ ଝରି ପଡ଼ିବ ପଛକେ, ବାସକୁ ତୁମେ ଆଉ ପାଇବ ନାହିଁ ।" ଏତିକି କହି ସେ ତାର ପାଣି ଆଣିବାକୁ ପୁଣି ପାତାଳକୁ ଚାଲିଗଲା ।

ଆଦରର ବାସନ୍ତୀ ତାଙ୍କର - ଯେ ନିଜର ଛାଇକୁ ଦେଖିଲେ ଡରେ, ଯେ ତାଙ୍କୁ ଘଡ଼ିକ ପାଇଁ ନ ଦେଖିଲେ ମା' ମା' ବୋଲି ଅଥୟ ହୁଏ - ସେ ଆଜି ଯାଇ ଯମ ରାଜାଙ୍କର ଅନ୍ଧାର-ପୁରୀରେ ! କି ବିକଳ ହେଇ କାନ୍ଦୁ ନ ଥିବଟି ?-ଦୁଃଖରେ ଦେବୀଙ୍କର ମନ ଏକାବେଳକେ ଭାଙ୍ଗି ପଡିଲା - ଅଜ୍ଞାନ ହେଇ ସେ ସେହି ଉତ୍ସ ପାଖରେ ଢ଼ଳି ପଡ଼ିଲେ ।

କେତେବେଳକ ପରେ ଉତ୍ସଟି ପାଣି ଆଣି ଉପରକୁ ଆସିଲା; ଆସି କରି ଦେଖିଲା -ଧରଣୀ ଅଚେତ୍ ହେଇ ନିହାତି ହତଭାଗୀ ପରି ପଡିଛନ୍ତି । ସେଠୁ ସେ ତାଙ୍କ ମୁହଁରେ ଶୀତଳଜଳ ସିଞ୍ଚି କେତେ କଷ୍ଟରେ ଚେତା କରେଇଲା । ଚେତା ଆସିଲାରୁ ମନରେ ତାଙ୍କର ପୁଣି ସେହିକଥା ପଡିଲା - ଯେ ତାଙ୍କୁ ଘଡ଼ିକପାଇଁ ନ ଦେଖିଲେ 'ମା' ମା' ବୋଲି ଅଥୟ ହୁଏ, ସେ ଆଜି ଯାଇ ଯମରାଜାଙ୍କର ଅନ୍ଧାର-ପୁରୀରେ । କି ବିକଳ ହେଇ କାନ୍ଦୁ ନ ଥିବଟି ? ଧରଣୀ ହାହାକାର କରି "ବାସ ବାସ" ବୋଲି ଖାଲି ଝୁରି ହେବାକୁ ଲାଗିଲେ ।

ଧରଣୀର ସୁଖରେ ସିନା ସମସ୍ତଙ୍କର ସୁଖ, ତାଙ୍କ ଆନନ୍ଦରେ ସିନା ସମସ୍ତଙ୍କର ଆନନ୍ଦ - କିନ୍ତୁ ସେ ଯେତେବେଳେ ମନଦୁଃଖରେ ଦିନରାତି ବିକଳ ହେଉଛନ୍ତି,

ଦୁନିଆରେ ସୁଖଶାନ୍ତି ଆଉ ଆସିବ କୁଆଡୁ ? ଯେଉଁ ଦିନଠୁ ବାସନ୍ତୀ ପାଇଁ ସେ ଝୁରି ହେଲେ, ସେହି ଦିନଠୁ ଗଛଲତା ଝାଉଁଳି ଯିବାକୁ ଲାଗିଲା, ଫୁଲ ଫଳ ମଉଳିଯାଇ ତଳେ ଝଡ଼ିଗଲା, ନଈ ଝରଣାରୁ ପାଣି ଶୁଖି ଆସିଲା, ପଡ଼ିଆର ସୁନ୍ଦର ସବୁଜ ଘାସ ଝାଞ୍ଜି ଖରାରେ ଶୁଖିଯାଇ ବିବର୍ଣ୍ଣ ହେଇ ଆସିଲା – କିନ୍ତୁ ବାସନ୍ତୀ ବିନା ଧରଣୀଙ୍କର ଦୁଃଖ ତ କମିବାର ନୁହେଁ – ଦେଖୁ ଦେଖୁ ଦିନ କେଇଟା ଭିତରେ ସବୁ ଝାଉଁଳି ମଉଳି ଯାଇ ହତଶିରୀ ହେଇ ପଡିଲା। ଗାଈ ବାଛୁରୀ ଆଉ ଘାସ କେରାଏ ପାଇଲେ ନାହିଁ, ଘାସ ତ ମରିଯାଉଛି, ବିଲରେ ଧାନ ଆସିବ କୁଆଡୁ ? – ଲୋକେ ଭୋକରେ ଆତୁର ହେଇ ଦିନରାତି ଖାଲି ଦେବତାଙ୍କୁ ଡାକିବାକୁ ଲାଗିଲେ।

ନନ୍ଦନ ବନରେ ଦେବତାଙ୍କ ମେଳରେ ଭାରି ଚହଳ ପଡ଼ିଗଲା। ତାଙ୍କ ମନରେ ଭାରି ଭୟ ହେଲା–ଲୋକଙ୍କର କାତର ଡାକ ନ ଶୁଣିଲେ, ସେମାନଙ୍କର ଦୁଃଖ କଷ୍ଟ ନ ଘୁଞ୍ଚେଇଲେ ସେମାନେ ତ ଆଉ ତାଙ୍କୁ ଦେବତା ବୋଲି ମାନିବେ ନାହିଁ, ଧୂପ ଦୀପ ଜାଳି ଫୁଲ ଚନ୍ଦନରେ ତାଙ୍କୁ ଆଉ ପୂଜା କରିବେ ନାହିଁ – ଦେବତାମାନେ ଉପାୟ ବିଚାର କରି ବସିଲେ। ଶେଷକୁ କେତେ ଭାବି ଚିନ୍ତି ଦେବତାଙ୍କ ରାଜା ଇନ୍ଦ୍ର ସବୁ ଦେବତାଙ୍କୁ ସାଙ୍ଗରେ ଧରି ଧରଣୀଙ୍କ ପାଖରେ ଆସି ପହଞ୍ଚିଲେ।

ଇନ୍ଦ୍ରଙ୍କୁ ଦେଖିଲାକ୍ଷଣି ଧରଣୀ ବଡ଼ ଅଥୟ ହେଇ କାନ୍ଦିଲେ – ସତେ, ମନ-ଦୁଃଖ ବେଳେ ଆପଣାର ଲୋକଙ୍କୁ ଦେଖିଲେ ଏଇମିତି କାହିଁକି ଭାରି କାନ୍ଦ ମାଡେ। କାନ୍ଦି କାନ୍ଦି ସେ ଇନ୍ଦ୍ରଙ୍କୁ କହିଲେ – "ଦେବରାଜ, ଦୁଃଖିନୀ ମା'ଟି ତା ଝିଅପାଇଁ ଦିନରାତି ବିକଳ ହେଉଛି, ତା ବିକଳ ଯଦି ତୁମକୁ ନ ବାଧିଲା – ଜଗତର ପିତା ତୁମେ ଯେତେବେଳେ, ତୁମର ତ ଝିଅ ସେ !–ଝିଅକୁ ତୁମର ଜଣେ ଚୋରିକରି ଘେନିଗଲା, ଏ ଅପମାନ କ'ଣ ତୁମକୁ ବାଧିନାହିଁ ? ମୁଁ ବିକଳ ହେଉଛି – ସେଥିପାଇଁ ନ ହେଲା ନାହିଁ। ତୁମର ମାନ ରଖିବାପାଇଁ ତ ବାସନ୍ତୀକୁ ତୁମର ଫେରାଇ ଆଣିବା ଉଚିତ ? ନ ହେଲେ ତୁମକୁ ଆଉ ରାଜା ବୋଲି କିଏ କାହିଁକି ମାନିବ ?"

ଇନ୍ଦ୍ର ସେଠୁ କହିଲେ "ଧରଣୀ, ବୃଥାଟାରେ ତୁମେ କାହିଁକି ଇମିତି କାନ୍ଦୁଛ କୁହ ତ ? ବାସନ୍ତୀ ତୁମର ତ ଆଉ ସବୁ ଦିନେ ତୁମ ପାଖରେ ରହି ନ ଥାନ୍ତା ? ଝିଅ ଯେତେବେଳେ, ଆଜି ହେଉ କାଲି ହେଉ, ଦିନେ ହେଲେ ପର ଘରକୁ ଯାଇଥାନ୍ତା

ନିଶ୍ଚୟ। ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ପୁରର ସମସ୍ତେ ଯାହାଙ୍କୁ ଡରନ୍ତି, ବାସ ତ ତାଙ୍କରି ରାଣୀ ହବ - ତେବେ ତୁମେ ମନଦୁଃଖ ଆଉ କାହିଁକି କରୁଛ କୁହ ତ ?" - ଏହିପରି ଇନ୍ଦ୍ର କେତେ ବୁଝେଇଲେ; ମାତ୍ର ଧରଣୀ କୌଣସି କଥାକୁ ବୁଝିଲେ ନାହିଁ। ଇନ୍ଦ୍ର ଆଉ କ'ଣ କରିବେ ? କିଛି ଉପାୟ ନ ଦେଖି ବାସନ୍ତୀକୁ ଫେରେଇ ଆଣିବାପାଇଁ ପାତାଳ-ପୁରକୁ ଗଲେ।

ଯମପୁର - ସେ ବଡ଼ ବିଷମ ପୁର ! ସେଠି ଚ଼ନ୍ଦ୍ର ନାହିଁ, ସୂର୍ଯ୍ୟ ନାହିଁ, ତାରା ନାହିଁ, ବର୍ଷା ନାହିଁ; ଦିନ ନାହିଁ ସବୁବେଳେ ରାତି, ଆଲୁଅ ନାହିଁ ସବୁବେଳେ ଅନ୍ଧାର। ସେ ନିଶବଦ ଅନ୍ଧାର ପୁରୀରେ ବାସନ୍ତୀକୁ ନିଶ୍ୱାସ ବନ୍ଦ ହେଇଗଲା ପରି ଲାଗୁଥାଏ। ଯମ ଯେତେ ଯାହା ତାକୁ ଆଣି ଖାଇବାକୁ ଦିଅନ୍ତି - ଖାଏ ନା, ଯେତେ ଯାହା ବୁଝାନ୍ତି - କିଛି ଶୁଣେ ନା, ଦିନ ରାତି ସେ ଖାଲି 'ମା ମା' ହେଇ କାନ୍ଦୁଥାଏ। ସେ ଅନ୍ଧାର ପୁରୀର ନୀତି-ନିୟମ ସବୁ ବଡ଼ ଆଶ୍ଚର୍ଯ୍ୟ ରକମର। ଆମ ଏ ପୁରର ଲୋକଙ୍କ ପାଇଁ ସେଠି ଗୋଟାଏ ନିୟମ ଅଛି ଯେ, ସେଠି କିଛି ଦିନ ରହିଲା ଭିତରେ ଯେ ସେ ପୁରର କିଛି ଦରବ ଖାଇବ, ସେ ପୁରରୁ ସେ ଆଉ ଆସି ପାରିବ ନାହିଁ - ସେଇ ଅନ୍ଧାର ରାଇଜରେ ତାକୁ ଯୁଗ ଯୁଗ ଯାଏ ଜୀବନ କଟେଇବାକୁ ପଡ଼ିବ; ଆଉ ଯେ ସେଠି କିଛିଦିନ ଧରି ରହି କିଛି ଖାଏ ନା, ତାକୁ ଅଟକେଇ ରଖିବାକୁ କାହାରି ବଳ ନାହିଁ - ସେ ପୁରର ଲୋକ ତାକୁ ଆଣି ଏ ପୁରରେ ଛାଡି ଦେଇଯାନ୍ତି।

ଏତେ ଦିନ ଆସି ହେଇଗଲାଣି, ତେବେ ବି ବାସନ୍ତୀ କିଛି ଖାଉ ନହିଁ-ଆଜି ଦିନକ ଯଦି ନ ଖାଏ, ତେବେ ତାକୁ ଆଣି ଏ ପୁରରେ ଛାଡିଦେଇ ଯିବାର କଥା। ଯମ ବଡ଼ ହଇରାଣରେ ପଡିଲେ - ବାସନ୍ତୀକୁ ଛାଡି ନ ଦେଲେ ନିୟମ ଲଙ୍ଘିବାକୁ ପଡୁଛି; କିନ୍ତୁ ନିଜେ ରାଜା ହେଇ ରାଜ୍ୟର ନିୟମ ଲଙ୍ଘିବେ କିପରି ? - ଏଣେ ନିୟମ ପାଳିବାକୁ ଗଲେ ବାସନ୍ତୀକୁ ଛାଡିବାକୁ ପଡୁଛି। ନିଶିବଦ ଅନ୍ଧାର-ପୁରୀରେ ଏକାକୀ ରହିବାକୁ ଭଲ ଲାଗେନା ବୋଲି କେତେ ଜଗିଜଗି ଏତେ ଦିନକେ ତାକୁ ପାଇକରି ଆଣିଥିଲେ ତାକୁ ନିଜର ରାଣୀ କରି, ତା ସାଙ୍ଗରେ ହସକୌତୁକ କରି ସୁଖରେ ଦିନ କଟାଇବେ ବୋଲି - କିନ୍ତୁ ସେ ଚାଲିଗଲେ ତାଙ୍କୁ ଆଗପରି ଫେର୍ ଦୁଃଖରେ ଦିନ କାଟିବାକୁ ପଡ଼ିବ - ବାସନ୍ତୀକୁ ଛାଡି ଦେବାକୁ ମନ ବଳୁଛି କୋଉଠୁ ? ସବୁ କଥା ଭାବିଚିନ୍ତି ଯମ ଏକ ଜିଦ୍ ଧରିବସିଲେ - ନା, ଯେ କୌଣସି ଉପାୟରେ ହେଉ

ବାସନ୍ତୀକୁ ଆଜି ଏ ପୁରର ଚିଜ ଖୁଆଇବାକୁ ହବ। ତା ପରେ ସେ ନିଜେ ସେ ପୁରର କେତେ ଜାତିର ସୁନ୍ଦର ଫଳମୂଳ ବାସନ୍ତୀ ହାତରେ ଆଣି ଦେଇ ତାକୁ କେତେ ମନଭୁଲାଣିଆ କଥା କହିଲେ, କେତେ ଆଡ଼ରୁ କେତେ କଥାର ଲୋଭ ଦେଖେଇଲେ, ହାତଓଠ ଧରି ଖାଇବା ପାଇଁ କେତେ ବହଲେଇଲେ। ବାସନ୍ତୀ ପିଲା ଲୋକ, ସେ କି ଜାଣେ ଏତେ ଅଡୁଆ ନୀତିନିୟମର କଥା ? ଯମଙ୍କ ମନଭୁଲା କଥାରେ ଭୁଲି, ତାଙ୍କ ହାତଓଠଧରାକୁ ଏଡ଼ି ଦେଇ ନ ପାରି ଅମନମନରେ ଫଳ ଗୋଟିକରୁ ଖଣ୍ଡିଏ ଆଣି ପାଟିରେ ଦେଇଛି, ଇନ୍ଦ୍ର ବଜ୍ରବିଜୁଳିରେ ଦଶ ଦିଗ ଆଲୁଅ କରି ଯମପୁରରେ ଯାଇ ପହଞ୍ଚିଲେ। ବାସନ୍ତୀ ଆଉ ଖାଇବ କଣ – ଇନ୍ଦ୍ରଙ୍କୁ ଦେଖିଲାକ୍ଷଣି 'ଭୋଭୋ' ହେଇ ଡକା ପକେଇଲା। ଇନ୍ଦ୍ର କେତେ ଆଦରରେ ତା ମୁଣ୍ଡ ଆଉଁସି ଦେଇ କହିଲେ – "ତୁ ଆଉ କାନ୍ଦୁଛୁ କାହିଁକି ମା ? ମୁଁ ପରା ତତେ ନବାକୁ ଆସିଛି – ଛି, ଇମିତି ଆଉ କାନ୍ଦନା।"

ବାସନ୍ତୀକୁ ଏହିପରି ପ୍ରବୋଧନା ଦେଇ ଇନ୍ଦ୍ର ଯମଙ୍କୁ ଧରଣୀଙ୍କର ଦୁଃଖ, ସେଥିପାଇଁ ଜୀବଜନ୍ତୁଙ୍କର ଅବସ୍ଥା, ସବୁ ଗୋଟି ଗୋଟି କରି କହି ବାସନ୍ତୀକୁ ଛାଡ଼ି ଦେବାକୁ କହିଲେ। ତାଙ୍କର ଏ କଥା ଶୁଣି ଯମ ଦୁଃଖିତ ହୋଇ କହିଲେ – "ଦେବରାଜ, ଆପଣ ତ ସମସ୍ତଙ୍କର ମନକଥା ଜାଣି ପାରନ୍ତି। ମୁଁ କ'ଣ ବାସନ୍ତୀକୁ ଦୁଃଖ ଦେବାକୁ ଏଠାକୁ ଆଣିଛି ଯେ, ଧରଣୀ ତା ପାଇଁ ଏତେ ଦୁଃଖିତ ହଉଛନ୍ତି ? – ମୋର ଏଠି ସାଥୀ ସଙ୍ଗାତ କେହି ନାହାନ୍ତି ବୋଲି ଏ ନିଶୂନ ପୁରୀରେ ମତେ ବଡ଼ ଏକାକୀ ଲାଗେ; ସେଥିପାଇଁ ମୁଁ ବାସନ୍ତୀକୁ ଘେନି ଆସିଥିଲି – ତାକୁ ମୋର ରାଣୀ କରି ରଖିଥାନ୍ତି, ତା ସାଙ୍ଗରେ ଗପସପ କରି, ହସଖେଳ କରି ଦିନ ମୋର ଟିକିଏ ହେଲେ ସୁଖରେ କାଟିଥାନ୍ତି। ଆଉ ସେ ତ ମଧ୍ୟ ଏ ପୁରର ଫଳ ଖାଇଛି – ଏତେ କଥାରେ ବି ତାକୁ ଯଦି ଆପଣ ନେଇଯିବାକୁ ଚହାଁନ୍ତି, ନେଇଯାନ୍ତୁ। କିନ୍ତୁ ବାସନ୍ତୀ ଗଲେ ଏ ଅନ୍ଧାର ପୁରୀରେ ବଞ୍ଚି ରହିବା ମୋ ପକ୍ଷରେ ଅସମ୍ଭବ ହୋଇ ପଡ଼ିବ।"

ଇନ୍ଦ୍ର ଦେଖିଲେ – ବାସନ୍ତୀକୁ ସେ ଯଦି ନେଇଯାନ୍ତି, ଯମଙ୍କର ମନକଷ୍ଟର ସୀମା ରହିବ ନାହିଁ – ନ ନେଇ ଛାଡିଯାନ୍ତି ଯଦି, ତେଣେ ଧରଣୀଙ୍କର ଦୁଃଖର ସୀମା ରହିବ ନାହିଁ। ସେଠୁ ସେ ଏକ ଉପାୟ ପାଞ୍ଚି ବସିଲେ – ଯେଉଁଥିରେ କି ଯମ ବି ରାଜି ହେବେ, ଧରଣୀ ବି ଖୁସୀ ହେବେ। ମନେ ମନେ ଉପାୟ ସ୍ଥିର କରି ସେ ଯମଙ୍କୁ

କହିଲେ - 'ମନଖୁସିରେ ଯେ ତୁମ ରାଇଜର ଦରବ ଖାଇବ ତାକୁ ସିନା ତୁମେ ଏଠି ଚିରଦିନ ଅଟକେଇ ରଖିବ - ବାସ କ'ଣ ତା ମୁନଖୁସିରେ ଏଠି କିଛି ଖାଇଛି ?-ଆଉ ସେ ଖାଇଛି ବା କ'ଣ ? - ଏତେ ଟିକିଏ କ'ଣ ପାଟିରେ ଦେଇଛି କି ନାହିଁ, ମୁଁ ତ ଆସି ପହଞ୍ଚିଲି - ଏଥିରେ ତ ତୁମେ ତାକୁ ସବୁ ଦିନ ପାଇଁ ଏଠି ଅଟକେଇ ରଖି ପାରିବ ନାହିଁ। ଆଉ ସେ ଏତେ ଟିକିଏ କ'ଣ ଖାଉ ବା ବେଶୀ ଟିକିଏ କ'ଣ ଖାଉ, ତା ମନଖୁସିରେ ଖାଉ ବା ତୁମ କଥାରେ ଭୁଲି ଖାଉ-ଏ ପୁରର ଚିଜ ଖାଇଛି ଯେତେବେଳେ, ସେ ପୁରରେ ସେ ମଧ ଚିରଦିନ ରହି ପାରିବ ନାହିଁ। ତୁମେ ମୋ କଥା ମାନିଯାଅ, ସବୁ ଅଡୁଆ ତୁଟିଯିବ - ବରଷକର ବାରମାସ ଭିତରୁ ବାସନ୍ତୀ ତା ମା' ପାଖରେ ରହୁ ଆଠ ମାସ, ତୁମ ପାଖରେ ରହୁ ଚ଼ାରିମାସ-ଧରଣୀ ଝିଅମୁହଁ ଦେଖି ଦୁଃଖ ପାଶୋରିବେ, ତୁମେ ବି ତୁମ ରାଣୀକୁ ପାଖରେ ପାଇ ସୁଖରେ କାଳ କାଟିବ।" ଏ କଥାରେ ଯମରାଜା ରାଜି ହୋଇଗଲାରୁ ଇନ୍ଦ୍ର ବାସନ୍ତୀକୁ ସାଙ୍ଗରେ ଘେନି ପାତାଳ ପୁରୀରୁ ବାହାରି ଆସିଲେ।

ଏଣେ ଧରଣୀ ଅଧୀର ହୋଇ ଚ଼ାହିଁ ରହିଥାନ୍ତି-ଇନ୍ଦ୍ର କେତେବେଳେ ବାସନ୍ତୀକୁ ସାଙ୍ଗରେ ଘେନି ଆସିବେ। ମନେ ମନେ ଭାବୁଥାନ୍ତି - ସତେ କଣ ବାସନ୍ତୀ କିଛି ନ ଖାଇ ଏତେ ଦିନଯାଏ ରହିଥିବ ?-ପିଲାଲୋକ ଭୋକ ଶୋଷ ସହି ନ ପାରି ସେ ପୁରର କିଛି ଯଦି ଖାଇ ଦେଇଥାଏ, ଯମ କ'ଣ ଆଉ ତାକୁ ଛାଡ଼ିଦେବେ ? ପୁଣି ଭାବନ୍ତି - ଇନ୍ଦ୍ର ତ ସବୁ ଦେବତାଙ୍କ ରାଜା, ସେ ନିଜେ ଯେତେବେଳେ ଯାଇଛନ୍ତି, ଯମ କ'ଣ ତାଙ୍କ କଥା କାଟିଦେବେ ? - ମନଭିତରେ ଏଇମିତି ସାତପାଞ୍ଚ ହଉଚନ୍ତି, ଇନ୍ଦ୍ର ବାସନ୍ତୀକୁ ଘେନି ଆସି ପହଞ୍ଚିଲେ। ଯାହା ପାଇଁ କାନ୍ଦି କାନ୍ଦି ଆଖିରୁ ଲୁହ ସରିଥିଲା, ତାଙ୍କର ସେଇ ହଜିଗଲା ବାସକୁ ଏତେ ଦିନ ପରେ କୋଳରେ ପାଇ ଧରଣୀ କେତେ ଯେ ଆନନ୍ଦିତ ହେଲେ, ତା କହି ହବ ନାହିଁ। ଝିଅକୁ ଦେଖିଲା କ୍ଷଣି ତାକୁ କୋଳକୁ ଟାଣି ନେଇ ମଥାରେ ତାର ଲକ୍ଷେ ଚୁମ୍ବନ ଢାଳି ଦେଲେ। ଇନ୍ଦ୍ରଙ୍କ ଗୋଡତଳେ ପଡ଼ି ତାଙ୍କ ଗୋଡ଼-ଧୂଳି ମୁଣ୍ଡରେ ମାରି ଧରଣୀ ତାଙ୍କୁ କେତେ କୃତଜ୍ଞତା ଜଣେଇଲେ; ତା ପରେ ଯମଙ୍କ ସାଙ୍ଗରେ ଯାହା ଯାହା ସବୁ କଥା ହେଇଥିଲା, ଧରଣୀଙ୍କୁ ସେଥିରେ ରାଜି କରେଇ ଇନ୍ଦ୍ର ନିଜ ନନ୍ଦନବନକୁ ଚ଼ାଲିଗଲେ।

ଝିଅକୁ ପାଇ ଧରଣୀଙ୍କର ଏବେ ମହା ଆନନ୍ଦ। ବାସନ୍ତୀ ହଜିଲା ଦିନରୁ ଧରଣୀଙ୍କର ବିକଳ ଦେଖି ଗଛର ପତରଟିଏ ବି ହଲୁ ନ ଥିଲା - ଏବେ କେଡ଼େ ସୁନ୍ଦର ମନଉଲାସିଆ ପବନ ଦକ୍ଷିଣ ଦିଗରୁ ବହିଲା, ଗଛମାନଙ୍କରେ କେମନ୍ତ ସୁନ୍ଦର ପତର କଅଁଳିଲା, ଗଛରେ ଲତାରେ ଫୁଲ ଫୁଟି ସୁବାସରେ ଦିଗ ମହକେଇଲା, ପ୍ରଜାପତି ହରଷରେ ଡ଼େଣା ମେଲିଦେଇ ଏଣେ ତେଣେ ଉଡିବୁଲିଲା, କୋଇଲି ସବୁ କଥା ପାଶୋରି ଦେଇ ପତର-ଗହଳ ଗଛଡାଳରେ ବସି ଦିନରାତି ଗୀତ ଗାଇଲା - ସତେ କି ଖରିଆଡ଼େ ଏବେ ସମସ୍ତଙ୍କର ଆନନ୍ଦଉତ୍ସବ ଲାଗିଛି !-ଏଇଆକୁ ଆମେ କହୁଁ ବସନ୍ତ ଋତୁ - ବାସନ୍ତୀ ପ୍ରଥମକରି ଯମପୁରରୁ ଆସିବ । ସଙ୍ଗେ ସଙ୍ଗେ ପୃଥିବୀରେ ଏଇ ଋତୁଟି ପହିଲିକରି ଆରମ୍ଭ ହେଲା।

ସେହି ଦୂର ପାଶୋରିଗଲା ଯୁଗରୁ ଆଜିଯାଏ, ଇନ୍ଦ୍ରଙ୍କ କଥା ଅନୁସାରେ ବାସନ୍ତୀର ଯମପୁରରୁ ମା' ପାଖକୁ, ମା'ପାଖରୁ ଯମପୁରକୁ ଯିବା ଆସିବା ଲାଗିଛି-ଆଉ ତାହାର ସେଇ ଯିବା ଆସିବା ସାଙ୍ଗରେ ଧରଣୀଙ୍କର ଦୁଃଖ ସୁଖ ଚିର ଦିନ ଲାଗି ରହିଛି।

   

ସୁଖର ଦିନ ଚଞ୍ଚଳ ସରେ। ଦେଖୁ ଦେଖୁ ମାସ ଆଠଟା ଗଡି ପଡେ-ଯମ କଳା ରଥରେ କଳାଘୋଡା ଯୋଚି ଆସି ପହଞ୍ଚନ୍ତି - ବାସନ୍ତୀ ନିଜେ କାନ୍ଦି ସମସ୍ତଙ୍କୁ କନ୍ଦେଇ ରଥରେ ବସି ଯମପୁରକୁ ଯାଏ; ଧରଣୀଙ୍କର ସୁଖ ପରି ଦୁଃଖ ଆସେ-ବସନ୍ତ ସରିଯାଏ । ଗୋଟିଏ ବୋଲି ସୁକୁମାରୀ ଝିଅ, ତାକୁ ପୁଣି ଯମପୁରରେ ଦିନ କାଟିବାକୁ ହବ ! - ଦୁଃଖରେ ଧରଣୀଙ୍କର ଛାତି ଫାଟିଯାଏ। ଏଡ଼େ ଉପକାରୀ ଜନର ଦୁଃଖ-ତାଙ୍କ ଦୁଃଖରେ କିଏ ସେ ଦୁଃଖିତ ନ ହବ ? ଦୁଃଖରେ ଗଛଲତା ଝାଉଁଳି ପଡ଼ନ୍ତି, ନଦୀ କ୍ଷୀଣ ହୋଇ ପଡେ, ପକ୍ଷୀ ଗୀତ ଭୁଲି ପତର-ଗହଳରେ ଧକେଇ ହୁଏ। ଏଡ଼େ ଉପକାରୀ ଲୋକ - ତାଙ୍କ କପାଳରେ ଏତେ ଦୁଃଖ ଯେ ଘଟଉଚି, ବଳ ଥାଇ ଲୋକେ ତା ଉପରେ କାହିଁକି ନ ରାଗିବେ ? ଧରଣୀଙ୍କର ଏ ଦୁଃଖ ଦେଖି ସୂର୍ଯ୍ୟ ଦେବତା ଯମଙ୍କ ଉପରେ ରାଗରେ ଜର ଜର ହୁଅନ୍ତି, ପବନ ମହା କ୍ରୋଧରେ ଗର୍ଜନ କରି ଏଣେ ତେଣେ ଛୁଟେ-ସତେ କି ଯମଙ୍କୁ ଦେଖିଲେ କେଉଁ ଲକ୍ଷେ ଯେ । ଜନର

ସେ-ପାରିକୁ ଉଡେଇ ନବ; ସଞ୍ଜବେଳେ କଳାମେଘ ଦିବାଅନ୍ଧାର କରି ଉଠିଆସେ । ଲାଗେ, ସତେ କି ଇନ୍ଦ୍ରରାଜା ଥାଟ ସାଜି ଯମଙ୍କ ସାଙ୍ଗରେ ଲଢେଇ କରିବାକୁ ଯାଉଛନ୍ତି !- ଏଇ ହେଲା ଆମର ଗ୍ରୀଷ୍ମଋତୁ -ମୁଣ୍ଡଫଟା ଖରା, ବାଆ ବତାସୀ ଓ ମେଘ ଧୂମାଳର ଦିନ ।

ବାସ ତ ସେ ପୁରର ଫଳ ଚାଖିଚି, ସେଥିପାଇଁ କଥା ହେଇଚି - ସେ ସେ ପୁରରେ ରହିବ-ରାଗିକରି ତାଙ୍କର ଆଉ କିଏ କ'ଣ କରିବ ? -ସମସ୍ତଙ୍କ ମନରାଗ ମନରେ ମରେ । ଧରଣୀ ଆଉ କ'ଣ କରିବେ ? - ଝିଅକୁ ଝୁରି ଝୁରି ଦିନରାତି ଖାଲି ଆଖିରୁ ଲୁହ ଝରାନ୍ତି । ତାଙ୍କର ଏ ବିକଳ ସହି ନ ପାରି ସରଗପୁରର ଦେବାଦେବୀ, ଦୂର ଆକାଶର ଚନ୍ଦ୍ର-ତାରା, ବାଦଲପୁରୀର ବାଦଲରାଣୀ ସମସ୍ତେ ଆକୁଳ ହୋଇ କାନ୍ଦନ୍ତି-କଳା ବାଦଲରୁ ଅସରନ୍ତି ଲୁହ ଝର ଝର ହୋଇ ଦିନ ରାତି ଝରେ, ନଈନାଳ ଉଚ୍ଛୁଳି ଉଠେ-ଆମେ କହୁଁ ବର୍ଷାଋତୁ ହେଲା ।

ଦୁଃଖରେ ଦୁଃଖରେ ଚାରିମାସ ବିତିଯାଏ - ଯମ ବାସନ୍ତୀକୁ ରଥରେ ବସେଇ ଧରଣୀଙ୍କ ପାଖରେ ଆଣି ଛାଡ଼ି ଦେଇଯାନ୍ତି । ଧରଣୀଙ୍କ ମନରୁ ଦୁଃଖ ଯାଏ, ଆଖିରୁ ଲୁହ ଶୁଖେ-ଆନନ୍ଦ ତାଙ୍କର ଏବେ କହିଲେ ନ ସରେ । ଚାରିମାସ ପରେ ପୁଣି ଆନନ୍ଦ ଉତ୍ସବର ଆୟୋଜନ ଲାଗେ - ସରଗ ନିର୍ମଳ ହେଇଯାଏ, ନଈ ନାଳର ପାଣି ଆପଣା ମନକୁ ଝଲମଲ କରି ଆସେ, ସରଗପୁରର ପିଲାମାନେ ସୁନେଲି ବଉଦରେ ଚଢି ଛୁଟା ଛୁଟି କରନ୍ତି, ବଉଦ ରାଣୀ ସାତବରଣୀ ଫୁଲରେ ବଉଦପୁରର ସିଂହ ଦୁଆର ସଜେଇ ବସନ୍ତି(ଆମେ କହୁଁ ଇନ୍ଦ୍ରଧନୁ ପଡିଛି); ଚନ୍ଦ୍ର ତାରା ରାତି ଯାକ ରୂପେଲି ଆଲୁଅରେ ଦିଗ ଉଜଳାନ୍ତି, ଜଳରେ ସ୍ଥଳରେ କେତେ ଜାତି ଫୁଲମାନ ସରାଗରେ ଫୁଟି ଉଠନ୍ତି, ଭରତିଆ ମୁକୁଳା ବିଲରେ ପାଗଳା ହୋଇ ନାଚ ଗୀତ ଲଗେଇ ଦିଏ । ବାସନ୍ତୀ ଆସିବା ସାଙ୍ଗେ ସାଙ୍ଗେ ଦିଗେ ଦିଗେ ଆନନ୍ଦରେ ଢ଼େଉ ଖେଳିଯାଏ ।-ଗ୍ରୀଷ୍ମ ବରଷା ପରେ ଏଇ ହେଲା ଆମର ଶରତ୍ ଋତୁ - ପୂଜା ପାର୍ବଣ, ପୁନେଇଁ ପର୍ବର ଦିନ ।

କହୁ କହୁ ସୁଖର ଦୁଇ ମାସ ସରେ । ବାସନ୍ତୀ ପୁଣି ମାକୁ ଛାଡି ପାତାଳ ପୁରକୁ ଯାଏ, ଧରଣୀଙ୍କର ଯେଉଁ ଦୁଃଖକୁ ପୁଣି ସେଇ ଦୁଃଖ-ଶରତ୍ ସରିଯାଏ ।

କପାଳରେ ଯାହା ଅଛି ତାହା ତ ଭୋଗିବାକୁ ହବ - କାନ୍ଦିଲେ କାଟିଲେ ଆଉ କ'ଣ ହବ? - ଧରଣୀ ନିଜକୁ ନିଜେ ପ୍ରବୋଧନା ଦେଇ ମନ ଦୁଃଖ ମନରେ ମାରି ମଉନରେ ରହନ୍ତି। ତେବେ ନିଶବଦ୍ ରାତିରେ କୋହ ସମ୍ଭାଳି ନ ପାରି କାନ୍ଦି ପକାନ୍ତି - ତାଙ୍କ କାନ୍ଦ ଦେଖି ଦେବାଦେବୀ, ଚନ୍ଦ୍ରତାରାଙ୍କ ଆଖିରୁ ଲୁହ ଝରି ଘାସ, ପତର ତିନ୍ତେଇଦିଏ - ଆମେ କହୁ କାକର ପଡିଛି। ସବୁଦିନେ ଦୁଃଖ!-ଝିଅକୁ ଝୁରି ଝୁରି ଧରଣୀ ଦିନକୁ ଦିନ ମଉଳିଯାନ୍ତି। ତାଙ୍କର ଏ କଥା ଦେଖି ସୂର୍ଯ୍ୟ-ଦେବତା ମନ ଦୁଃଖରେ ମଉଳି ଆସନ୍ତି, ଚନ୍ଦ୍ରତାରା ପାଣ୍ଡୁର ପଡିଯାନ୍ତି, ପବନ ମୁକୁଳା ବିଲରେ କାନ୍ଦି କାନ୍ଦି ବୁଲେ, ସରଗ ଧୂସର ହେଇ ଆସେ - ଲାଗେ, ସତେକି ସମସ୍ତଙ୍କ ମନରୁ ସବୁ ସୁଖ ତୁଟି ଯାଇଛି! ଧରଣୀଙ୍କର ଏଇ ଦୁଃଖର ଚ଼ରିମାସ ଆମର ହେମନ୍ତ ଓ ଶୀତ-କାକର କୁହୁଡି, ଉତ୍ତରା ପବନର ଦିନ।

ହେମନ୍ତ ଶୀତର ଚ଼ରିମାସ ପରେ ପୁଣି ବାସନ୍ତୀ ମା ପାଖକୁ ଆସେ ଧରଣୀଙ୍କର ଦୁଃଖ ଯାଇ ସୁଖ ହୁଏ - ପୁଣି ବସନ୍ତ ଜାଗି ଉଠେ - ମଳୟ ବହେ, ଫୁଲ ଫୁଟେ, କୋଇଲି ଡ଼ାକେ-ସବୁ ପୁଣି ସୁଖର ହେଇଯାଏ। କେଜାଣି କେତେ ଯୁଗରୁ, କେହି କହିପାରିବ ନାହିଁ - ଧରଣୀଙ୍କର ସୁଖ ହେତୁରୁ ଋତୁ ହେଉଛି, ବଦଳୁଛି - ଆଉ ତାଙ୍କର ସୁଖ ଦୁଃଖରେ ଭାଗୀ ହୋଇ ଆମକୁ ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତର ସୁଖ ଦୁଃଖ ଭୋଗିବାକୁ ପଡୁଛି।

*(ଜହ୍ନମାମୁଁ - ୧ମ ବର୍ଷ / ୧୨ଶ ଖଣ୍ଡ / ମାଘ ୧୩୪୦ ସାଲ / ୧୯୩୩ ମସିହା)*

# ଆଉ ଫେରିଲା ନାହିଁ

ବ୍ରଜକିଶୋର ମା' ବାପାଙ୍କର ଏକମାତ୍ର ସନ୍ତାନ, ଅତି ଆଦରରେ ସେ ଲାଳିତ ପାଳିତ । ବାପା ପୁଲିସ୍ ବିଭାଗରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ରୂପେ କାର୍ଯ୍ୟ କରୁକରୁ ରିଟାୟାର ସମୟ ଆସିଲା । ତାଙ୍କର କାର୍ଯ୍ୟକାଳ ପୂରିଲା ରିଟାୟାର୍ଡ଼ ହୋଇଗଲେ । ତାଙ୍କର କାମନା ଥିଲା, ତାଙ୍କର କାର୍ଯ୍ୟକାଳ ଭିତରେ ବ୍ରଜକିଶୋରକୁ କୌଣସି ଖଣ୍ଡିଏ ଚାକିରିରେ ଅବସ୍ଥାପିତ କରିଯିବେ; କିନ୍ତୁ ସେ କାମନା ତାଙ୍କର ଅପୂର୍ଣ୍ଣ ରହିଗଲା । ବାରମ୍ବାର ପରୀକ୍ଷା ଦେଇ ମଧ୍ୟ ପାସ୍ କରିପାରିଲା ନାହିଁ । ବ୍ରଜକିଶୋରର ତଳ ଦୁଇ ଶ୍ରେଣୀର ପିଲାଏ ପାସ୍ କରି ଆସି ତା ସାଂଗ ଧରିଲେ । ବ୍ରଜକିଶୋରକୁ ଲାଜ ମାଡ଼ିଲା ସେମାନଙ୍କ ସଂଗେ ବସି ପଢ଼ିବାକୁ । ସେ ପାଠପଢ଼ା ଛାଡ଼ିଦେଲା । ବ୍ରଜବାପା ଦୁଃଖପ୍ରକାଶ କରି ତାଙ୍କ ପରିଚିତ ମାନଙ୍କୁ କହନ୍ତି ପୁଅଟା ଆଉ ପଢ଼ିଲା ନାହିଁ, ନଷ୍ଟ ହୋଇଗଲା, ପଢ଼ା ଛାଡ଼ିଦେଲା । ପିଲାଟା ଯେ ହୁଣ୍ଡା କି ନିର୍ବୁଦ୍ଧିଆ ତା ନୁହେଁ, ବେଶ୍ ବୁଦ୍ଧିମାନ । ଟିକିଏ ମନଦେଇ ପଢ଼ିଲେ ପାସ୍ କରିଯାନ୍ତା । କିନ୍ତୁ ସେ ଲେଖା ପଢ଼ାପଢ଼ି କରିବାକୁ କାତର । ଘଡ଼ିଏ ତା଼କୁ ଲେଖାପଢ଼ା କରିବାର ମୁଁ ଦେଖିନାହିଁ ।

ଅଧେଦିନ ସ୍କୁଲକୁ ଯିବନାହିଁ । ଯା ସାଂଗରେ ତା'ସାଂଗରେ ବସି ତାସ୍ ଖେଳିବ । ପାଞ୍ଚ ପିଲାଙ୍କୁ ଘରକୁ ଡାକିଆଣି ଫିଷ୍ଟ କରିବ । ପର୍ବପର୍ବାଣିରେ ଶିକ୍ଷକଙ୍କ ଘରକୁ ପିଠାପଣା ପଠାଇବାର ବ୍ୟବସ୍ଥା

କରିବ । ଯେବେବା ସ୍କୁଲଯିବ, କ୍ଲାସ୍ ଛାଡ଼ି ଏଆଡ଼େ ସେ ଆଡ଼େ ବୁଲିବ । ବେଳେବେଳେ ରାଗ ହୁଏ, ଭାରି ଗାଳିଗୁଲଜ କରେ । ମାରଧର କରିବାକୁ ଧମକେଇଲେ ଦିନଯାକ ଉପାସ ରହିବ । ବହିପତ୍ର ଧରି ଅଖିଆ ଅପିଆ ବସିରହିବ । ପରୀକ୍ଷାରେ ଫେଲହେଲେ ତା ମା’ ମନରେ ଯେତେ ଦୁଃଖ, ତହିଁ ବଳି ତାହାର ଦୁଃଖ ହୁଏ ଉପବାସୀ ପୁଅର ବିଷଣ୍ଣ ମୁହଁକୁ ଦେଖି । ଏଇମିତି ତାଡ଼ନା କରିବାକୁ ବ୍ରଜବାବୁଙ୍କ ପୁଅ ଦିନେ କୁଆଡ଼େ ଚାଲିଗଲା ଯେ ଆଉ ଫେରିଲା ନାହିଁ ।



# ଚାନ୍ଦବାଲି ବନ୍ଦର

ଚାନ୍ଦବାଲି ଦୀର୍ଘ ଉପକୂଳ ବିଶିଷ୍ଟ ଓ ନଦୀ ମାତୃକା ଉତ୍କଳର ଏକମାତ୍ର ପ୍ରାକୃତିକ ନଦୀ ବନ୍ଦର । ସମୁଦ୍ରଠାରୁ ପ୍ରାୟ ୨୮ ମାଇଲ ଓ ବ୍ରାହ୍ମଣୀ-ବୈତରଣୀ ନଦୀଦ୍ୱୟର ସଂଗମ ସ୍ଥଳ ଧାମରାଠାରୁ ପଶ୍ଚିମକୁ ପ୍ରାୟ ୧୦ମାଇଲ ଦୂରତ୍ୱ ବୈତରଣୀ ନଦୀ କୂଳରେ ଏହା ଅବସ୍ଥିତ । ବୈତରଣୀ ଯେଉଁଠାରେ ବ୍ରାହ୍ମଣୀ ସହିତ ମିଶିଛି, ସେଠାରୁ ଏମାନଙ୍କର ମିଳିତ ସ୍ରୋତକୁ ଧାମରା ନଦୀ ବୋଲି କୁହାଯାଏ । ଆଜକୁ ୧୦୪ବର୍ଷ ତଳେ ୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା । ସେତେବେଳେ ଓଡ଼ିଶାରେ ରେଳପଥ ନଥିଲା । ଓଡ଼ିଶା ବାହାରୁ ଖାଦ୍ୟଶସ୍ୟ ନହେଲାରୁ ଲୋକେ ଅନ୍ନବିନା ମରିବାକୁ ଲାଗିଲେ । ୧୮୬୬-୬୭ର ଦୁର୍ଭିକ୍ଷବେଳେ ବାଲେଶ୍ୱର ଜିଲ୍ଲାକୁ ରିଲିଫ୍ ଦେବା ଉଦ୍ଦେଶ୍ୟରେ ଯେତେ ଚାଉଳ ଆସିଥିଲା, ତାହା ଏଇ ଧାମରାରେ ଖଲାସ କରାଯାଇଥିଲା । ଦେଶ ବିଦେଶକୁ ଲୁଣ ରପ୍ତାନୀ କରିବାରେ ଧାମରା ପ୍ରାଚୀନ ଉତ୍କଳର ପ୍ରଧାନ କେନ୍ଦ୍ର ଥିଲା । ଇଂରେଜ ପୋତାଶ୍ରୟ ଇଂଜିନିଅର ତଥା ମେରାଇନ୍ ସର୍ଭେୟର ମାନେ ମଧ୍ୟ ଭାରତର ପୂର୍ବ ଉପକୂଳରେ ହୁଗୁଳୀର ଦକ୍ଷିଣକୁ ଧାମରା ନଦୀ ନୌକା ଚଳାଚଳ ପାଇଁ ସବୁଠାରୁ ଉତ୍କୃଷ୍ଟ ନଦୀ ବୋଲି ମତ ଦେଇଛନ୍ତି ।

କେତେକ ଅସୁବିଧା ଯୋଗୁଁ ଧାମରାର ପ୍ରାଧାନ୍ୟ ଚାନ୍ଦବାଲିକୁ ସ୍ଥାନାନ୍ତରିତ ହେଲା । ଧାମରା ନଦୀକୂଳ ଅଞ୍ଚଳ ବଡ଼ ନିମ୍ନଭୂମି । ବନ୍ୟାଦାଉରୁ ଏହା ମୁକ୍ତ ନୁହେଁ-ହେଲା ପ୍ରଧାନ କାରଣ । ତେଣୁ କ୍ୟାପଟେନ୍ ମେକ୍‌ଲିନ୍ ଓଡ଼ିଶାର ତତ୍କାଳୀନ କମିଶନର ରେଭେନ୍‌ସାଙ୍କ ସହ ୧୮୭୦ରେ ଧାମରାନଦୀ ଉପରକୁ ଗୋଟିଏ ଉପଯୁକ୍ତ ସ୍ଥାନ ନିରୂପଣ କରିବା ନିମନ୍ତେ ଜାହାଜରେ ଆସିଥିଲେ । ସେତେବେଳେ ଚାନ୍ଦବାଲି ଗୋଟିଏ କ୍ଷୁଦ୍ର ଗ୍ରାମ ଥିଲା ଏବଂ ତାହା ଧୀବରମାନଙ୍କ କୁଟୀରରେ ପୂର୍ଣ୍ଣ ଥିଲା । ଏହାର ପତନ ଯଥେଷ୍ଟ ଉଚ୍ଚ ଥିବାରୁ ବନ୍ୟା ପ୍ଲାବନର ଭୟ ନଥିଲା । ନଦୀର ଗଭୀରତା ମଧ୍ୟ ଯଥେଷ୍ଟ । ବନ୍ଦର ପାଇଁ କୋଠାବାଡ଼ି ଓ ସୌଦାଗରୀ ଗୋଦାମ ସ୍ଥାପିତ ହେବାପାଇଁ

ସ୍ଥାନ ଉପଯୁକ୍ତ । ଏହିସବୁ ସୁବିଧା ଦୃଷ୍ଟିରୁ ବନ୍ଦର ସ୍ଥାପନ୍ ପାଇଁ ଚାନ୍ଦବାଲି ଉପଯୁକ୍ତ ସ୍ଥାନ ବୋଲି ବିବେଚିତ ହେଲା । ତେଣୁ କ୍ୟାପ୍ଟେନ୍ ମେକ୍‌ଲିନ୍ ଜମିଦାରଙ୍କ ସହ ବନ୍ଦୋବସ୍ତ କରି ସଂଗେସଂଗେ କ୍ଷୁଦ୍ର ଆୟତନ ବିଶିଷ୍ଟ ଜମି ସେଠାରୁ ପଟ୍ଟା କରିନେଲେ ।

ଏହାପରେ ସରକାର ଏହି ସ୍ଥାନର ଉପଯୋଗିତାକୁ ଉପଲବ୍ଧି କରି କେପ୍ଟେନ୍ ମେକ୍‌ନିଲ୍ ପଟାନେଇ ଥିବା ଜମିକୁ ମିଶାଇ ୨୦୦ଏକର ଜମି ନିଜ ଦଖଲକୁ ନେଇ ବନ୍ଦର ପ୍ରତିଷ୍ଠାର ଆୟୋଜନ କଲେ । ଯାହା ବର୍ତ୍ତମାନ ଚାନ୍ଦବାଲି ଖାସମାଲ ନାମରେ ଅଭିହିତ । ବନ୍ଦର ପ୍ରତିଷ୍ଠା ପୂର୍ବରୁ ଚାନ୍ଦବାଲି ଏକ ପ୍ରକାଣ୍ଡ ଚନ୍ଦାବାଲି ରୂପେ ପଡ଼ି ରହିଥିଲା, ତେଣୁ ଏହାର ଏପରି ନାମକରଣ ହୋଇଛି ।

ପୂର୍ବରୁ କଥିତ ହୋଇଛି ଯେ, ବେଙ୍ଗଲ ନାଗପୁର ରେଲବାଇ କମ୍ପାନୀ ୧୮୯୫-୯୬ରେ ଓଡ଼ିଶାରେ ରେଲପଥ ନିର୍ମାଣ କଲେ । ମାତ୍ର ୮୮ ମାଇଲ ରେଲପଥ ନିର୍ମାଣ କରିବାକୁ କମ୍ପାନୀକୁ ୪ବର୍ଷ ଲାଗିଥିଲା । କିନ୍ତୁ ୧୮୭୧-୭୨ରେ ଚାନ୍ଦବାଲି ବନ୍ଦର କାର୍ଯ୍ୟକାରୀ ହେଲା । ଉତ୍କଳର ତତ୍କାଳୀନ ଏକମାତ୍ର ସମ୍ବାଦପତ୍ର 'ଉତ୍କଳ ଦୀପିକା' ୧୮୭୨ ମସିହା ମାର୍ଚ୍ଚ ୨୩ ତାରିଖ ସଂସ୍କରଣରେ ଲେଖିଥିଲେ 'ଚାନ୍ଦବାଲି ବାଟେ ଜାହାଜରେ ବିସ୍ତର ଲୋକ ଯାତାୟତ କରୁଛନ୍ତି ଓ ଯେବେ ସେଠାରେ ଦ୍ରବ୍ୟ ଓହ୍ଲାଇ କଟକକୁ ଆଣିବା ଓ କଟକରୁ ଦ୍ରବ୍ୟନେଇ ସେଠାରେ ଲଦିବାର ସୁଯୋଗ ହୁଅଇ ତେବେ ସେହିବାଟେ ଏକା କଟକ ଜିଲ୍ଲାର ସବୁ ବାଣିଜ୍ୟ ଚଳିବ । ଚାନ୍ଦବାଲିର ସୁବିଧା ଏହି ଯେ, ଜାହାଜର ଭଡ଼ା ଊଣା ଓ ସ୍ଥଳପଥରେ ଜାହାଜ ନିକଟକୁ ଯିବାର ସୁଯୋଗ ଅଛି ।'

ଯାତାୟତର ସୁବିଧା ଅଭାବରୁ ବାହାର ରାଜ୍ୟମାନଙ୍କର ଓଡ଼ିଶା ସହିତ ବାଣିଜ୍ୟ କାରବାର ପାଇଁ ଏବଂ ବାହାର ରାଜ୍ୟ ମାନଙ୍କରୁ ଲୋକେ ଓଡ଼ିଶାକୁ ଯାତାୟତ କରିବାଲାଗି ସେତେବେଳେ ଚାନ୍ଦବାଲି ହିଁ ଥିଲା ପ୍ରବେଶ ଦ୍ୱାର । ଅନ୍ୟ ରାଜ୍ୟମାନଙ୍କରୁ ଅସଂଖ୍ୟ ପୁଣ୍ୟ ଲୋଭାତୁର ଯାତ୍ରୀ କଲିକତାରୁ ଜାହାଜରେ ଚାନ୍ଦବାଲିକୁ ଆସି ଏଠାରୁ ଜଗନ୍ନାଥ ଦର୍ଶନରେ ଯାଇଥିଲେ । ଏଣୁ ଚାନ୍ଦବାଲିରେ ପ୍ରଥମେ ଯେଉଁ ଡାକ୍ତରଖାନା ଥିଲା, ତାହାର ନାମ ଥିଲା 'ପିଲ୍‌ଗ୍ରିମ୍ ହସପିଟାଲ' (ବର୍ତ୍ତମାନ ଏହା ପରିବର୍ତ୍ତିତ ହୋଇ 'ମହତାବ ହସ୍‌ପିଟାଲ' ରୂପେ ନାମିତ ହୋଇଛି ।) ଯାତ୍ରୀମାନଙ୍କ ମଧ୍ୟରୁ

ଅନେକ ପ୍ଲେଗ ରୋଗୀଥିବାର ଦେଖାଯାଇଥିବାରୁ ଏମାନଙ୍କୁ ଅଲଗା ରଖାଯାଇ ଏମାନଙ୍କ ସ୍ୱତନ୍ତ୍ର ଚିକିତ୍ସା ପାଇଁ ଚାନ୍ଦବାଲିଠାରୁ ପ୍ରାୟ ଏକମାଇଲ ଦୂରରେ ପ୍ଲେଗ୍ ଚିକିତ୍ସା କେନ୍ଦ୍ର ଅବସ୍ଥାପିତ ଥିଲା । ଓଡ଼ିଶାରେ ସେସମୟରେ କୌଣସି ଶିଳ୍ପ ପ୍ରତିଷ୍ଠାନ କିମ୍ବା କଳକାରଖାନା ନଥିଲା । ଅନ୍ନସଂସ୍ଥାନ ନିମନ୍ତେ ଚିର ବନ୍ୟା ପ୍ରପୀଡ଼ିତ ଓଡ଼ିଶା ଉପକୂଳ ଅଞ୍ଚଳର ଲୋକଙ୍କ ଅନ୍ୟ ସୁବିଧା ନଥିବାରୁ କଲିକତାରୁ ଏଇବାଟେ ଜାହାଜରେ ଯିବା ଆସିବା କରୁଥିଲେ । ଚାନ୍ଦବାଲିରେ ଯାତ୍ରୀଭିଡ଼ ପ୍ରାୟ ସଦାସର୍ବଦା ଲାଗି ରହିଥିଲା । ୧୮୯୭-୯୮ ମସିହାରେ ଏଠାରୁ ୧,୮୩,୯୩୮ ଜଣ ଯାତ୍ରୀ ଯାଇଥିଲେ । ଏହାକ୍ରମେ କ୍ରମେ କମି ୧୯୪୧-୪୨ରେ ମାତ୍ର ୯,୨୦୧ ଏବଂ ୧୯୪୨-୪୩ରେ ୧,୧୫୧ ଜଣ ଯାତ୍ରୀ ଯାଇଥିଲେ । ଏହାପରଠାରୁ ଯାତ୍ରୀ ଯିବା ଆସିବା ବନ୍ଦ ହୋଇଗଲା ।

ଏହି ବନ୍ଦରରୁ ପ୍ରଚୁର ପଣ୍ୟଦ୍ରବ୍ୟ ଯଥା ଲୁଣ, କିରାସିନି, ଲୁଗା, ଗୁଆ, ଧଣିଆ ଇତ୍ୟାଦି ଜାହାଜରେ କଲିକତାରୁ ଏଠାକୁ ଆମଦାନୀ କରାଯାଇ ସ୍ଥଳପଥରେ ପ୍ରାୟ ଭଦ୍ରକ ପର୍ଯ୍ୟନ୍ତ ଏବଂ ନଦୀ ଓ କେନାଲବାଟେ ଜଳପଥରେ ବାଷ୍ପୀୟ ଲଞ୍ଚ ଓ ବୋଟ୍‌ଦ୍ୱାରା କଟକ ପର୍ଯ୍ୟନ୍ତ ଏହା ସରବରାହ କରାଯାଇଥିଲା । ସ୍ଥାନୀୟ ଉତ୍ପନ୍ନ ପ୍ରଚୁର ଧାନ, ଚାଉଳ, ମୁଗ, ବିରି, ଝୋଟ ଇତ୍ୟାଦି କଲିକତାକୁ ରପ୍ତାନୀ କରାଯାଉଥିଲା । ବର୍ଷେ ବର୍ଷେ ଏଠାରୁ ୮ଲକ୍ଷରୁ ୯ଲକ୍ଷ ମହଣ ପର୍ଯ୍ୟନ୍ତ ଧାନ ଚାଉଳ ରପ୍ତାନୀ ହେଉଥିବାର ବନ୍ଦର କାଗଜପତ୍ରରୁ ଜଣାଯାଏ ।

ଚାନ୍ଦବାଲି ବାଲେଶ୍ୱର ଜିଲ୍ଲାର ଭଦ୍ରକ ସବ୍‌ଡିଭିଜନ ଓ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ସବ୍‌ଡିଭିଜନର ମଧ୍ୟସ୍ଥଳରେ ଅବସ୍ଥିତ । ଭଦ୍ରକ ସବ୍‌ଡିଭିଜନର ଦକ୍ଷିଣାଂଶ ଏବଂ କେନ୍ଦ୍ରାପଡ଼ା ସବ୍‌ଡିଭିଜନର ଉତ୍ତରାଂଶ ସଦାସର୍ବଦା ବନ୍ୟା ପ୍ରପୀଡ଼ିତ ଅଞ୍ଚଳ । ଉକ୍ତ ଦୁଇ ଅଞ୍ଚଳରେ ବ୍ରାହ୍ମଣୀ, ଖରସୁଆ, ବୈତରଣୀ, ସାଳନ୍ଦୀ, ରେବ, କପାଳି, ଧାମରା, ମନ୍ତେଇ ଆଦି ନଦୀ ଏବଂ ନଦୀସବୁର ଶାଖାପ୍ରଶାଖା ବିଶିଷ୍ଟ ବହୁ ଜୁଆରିଆ ଜୋର, ନାଳ ପ୍ରବାହିତ ହେଉଥିବାରୁ ଏ ଅଞ୍ଚଳରେ ସ୍ଥଳପଥର ଘୋର ଅଭାବ । ଚାନ୍ଦବାଲି ଏହିସବୁ ନଦୀ ଓ ଜୋର, ନାଳ ଦ୍ୱାରା ଉକ୍ତ ସବ୍‌ଡିଭିଜନ୍ ଦ୍ୱୟର ଗ୍ରାମାଞ୍ଚଳ ସହିତ ସଂଯୁକ୍ତ । ଲୋକେ ନୌକାରେ ସେମାନଙ୍କର ଉତ୍ପନ୍ନ ଖାଦ୍ୟଶସ୍ୟ ଚାନ୍ଦବାଲିକୁ ଆଣି ବିକ୍ରୟ କରନ୍ତି ଏବଂ ଗ୍ରାମାଞ୍ଚଳର ଆବଶ୍ୟକୀୟ ପଦାର୍ଥ ଏଠାରୁ କିଣି ନେଇଯାନ୍ତି ।

ଚାନ୍ଦବାଲିର ଏହି ସୁବିଧାଜନକ ଅବସ୍ଥିତି ହେତୁ ଚାନ୍ଦବାଲିକୁ ସମୁଦ୍ରଗାମୀ ଜାହାଜ ନ ଆସୁ ପଛକେ, ଏହା ପ୍ରାୟ ପାଞ୍ଚଶହ ବର୍ଗ କି.ମି. ଅଞ୍ଚଳର ବାଣିଜ୍ୟ କେନ୍ଦ୍ର ହୋଇ ରହିଛି ଓ ରହିବ ।

ଚାନ୍ଦବାଲିର ତିନିକି.ମି. ବ୍ୟାପୀ ନଦୀକୂଳ ରାସ୍ତା ଚାନ୍ଦବାଲି ବନ୍ଦରର ସର୍ବସ୍ୱ । ଏହା କ୍ଷୟପ୍ରାପ୍ତ ହେଲେ ଚାନ୍ଦବାଲିର ଅସ୍ତିତ୍ୱ ସଂକଟାପନ୍ନ ହେବ । ସକଳ ବାଣିଜ୍ୟ ପ୍ରତିଷ୍ଠାନ ଏହି ରାସ୍ତା ପାଖେପାଖେ ଅବସ୍ଥିତ । ଏହାର ଉନ୍ନତିକରଣ ଓ ଉପଯୁକ୍ତ ସୁରକ୍ଷା ଏକାନ୍ତ ଆବଶ୍ୟକ । ଲୋକେ ସୁବିଧାରେ ଯେପରି ମାଲ ନୌକାରୁ ଖଲାସି ଓ ନୌକାରେ ବୋଝେଇ କରିପାରିବେ ତାହାପାଇଁ ନଦୀକୂଳ ବନ୍ଧରେ ସୁବିଧାଜନକ ଘାଟସବୁ ହେବା ଆବଶ୍ୟକ । ଏହି ନଦୀକୂଳ ରାସ୍ତାଟିର ଉନ୍ନତି କରଣ କରାଗଲେ ଚାନ୍ଦବାଲି ଏକ ରମଣୀୟ ଟାଉନରେ ପରିଣତ ହେବ ।

ଧାମରାରେ ମାଛଧରା ବନ୍ଦର ସ୍ଥାପିତ ହେବା ପରମ ଆନନ୍ଦର ବିଷୟ । ଏଠାରେ ଲୁଣ ମରାଯିବା ଏବଂ ଏ ଅଞ୍ଚଳରେ ପ୍ରଚୁର ଛଣକୁଟା ମିଳୁଥିବାରୁ କାଗଜ ପ୍ରସ୍ତୁତ ପାଇଁ କାରଖାନା ସ୍ଥାପିତ କରାଯିବା ଲାଗି ପ୍ରଶସ୍ତ କ୍ଷେତ୍ର ରହିଛି । ଏ ଅଞ୍ଚଳର ଲୋକେ ନୌକା ଉପରେ ବିଶେଷ ନିର୍ଭର କରନ୍ତି । ଚାନ୍ଦବାଲିରେ ଗୋଟିଏ ବୋଟ୍ ବିଲ୍‌ଡିଂ ୟାର୍ଡ଼ କରାଗଲେ ବିଶେଷ ଉପକାର ହୁଅନ୍ତା ।

ଓଡ଼ିଶାର ଏହି ଏକମାତ୍ର ନଦୀବନ୍ଦରର ଉନ୍ନତି ଲାଗି ରାଜ୍ୟର ସମସ୍ତେ ଧ୍ୟାନ ଦେବା ବାଞ୍ଛନୀୟ । ତାହେଲେ ସବୁଦୃଷ୍ଟିରୁ ଉନ୍ନତ ଏହି ଚାନ୍ଦବାଲି ନଦୀବନ୍ଦର ଓଡ଼ିଶାର ଏକ ଗର୍ବର ବିଷୟ ହେବ ।

ଚାନ୍ଦବାଲିର ଦୀର୍ଘ ନଦୀକୂଳ ଅଂଶଟି ହିଁ ଏହି ବନ୍ଦରର ଅତିଶୟ ପ୍ରଧାନ । ପୂର୍ବେ ପ୍ରାୟ ତିନି କି.ମି. ଦୀର୍ଘ ନଦୀକୂଳକୁ ପଥର ବନ୍ଧଦ୍ୱାରା ସୁରକ୍ଷିତ କରାଯାଇଥିଲା । ନୌକାରୁ ମାଲ ବାହାରିବା ଓ ବୋଝେଇ କରିବାପାଇଁ ସୁନ୍ଦର ଘାଟ ନିର୍ମିତ ହୋଇଥିଲା ଏବଂ ଜାହାଜ କୂଳରେ ଭିଡ଼ିବା ପାଇଁ ଜେଟି ରହିଥିଲା । ଚାନ୍ଦବାଲିର ଉନ୍ନତିକରଣ ଦୂରେ ଥାଉ, ଏହି ନଦୀକୂଳ ପଥରବନ୍ଧ ଭାଂଗିରୁଜି ଗଲାଣି । ନଦୀକୂଳର ପ୍ରଶସ୍ତ ସଡ଼କ କ୍ରମେ କ୍ଷୟପ୍ରାପ୍ତ ହୋଇ ବିପଦଗ୍ରସ୍ତ ହେଲାଣି । ଅଥଚ ଏହି ନଦୀକୂଳ ସଡ଼କ ଚାନ୍ଦବାଲି ବନ୍ଦରର ସର୍ବସ୍ୱ-ଏହି ସଡ଼କରେ ଚାନ୍ଦବାଲିର ପ୍ରାୟ ସକଳ ବାଣିଜ୍ୟ ପ୍ରତିଷ୍ଠାନ ଅବସ୍ଥିତ । କ୍ଷୋଭର କଥା ବିଦେଶୀ ସରକାର ଅମଳରେ ବନ୍ଦରର ସୁରକ୍ଷା

ନିମନ୍ତେ ଯାହା କରାଯାଇଥିଲା, ଜାତୀୟ ସରକାର ଅମଳରେ ଉପଯୁକ୍ତ ସୁରକ୍ଷା ଅଭାବରୁ ସେସବୁ ନଷ୍ଟଭ୍ରଷ୍ଟ ହେବାକୁ ବସିଲା । ନୌକାମାନଙ୍କରୁ ମାଲ ଉତାରିବା ଓ ନୌକାମାନଙ୍କରେ ମାଲ ବୋଝେଇ କରିବା ବଡ଼ ସଂକଟଜନକ ହେଲାଣି । ଯାତ୍ରୀମାନଙ୍କର ନୌକା ଏବଂ ଲଞ୍ଚ ଆରୋହଣ ଅବରୋହଣ ମଧ୍ୟ ସମଦଶାପନ୍ନ ।

ଧାମରା ତଥା ଧାମରାଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ବୈତରଣୀ ପ୍ରଶସ୍ତ ଓ ଗଭୀର ଏବଂ ଚିର ସୁନାବ୍ୟା । ଏପରି ପ୍ରାକୃତିକ ସମ୍ପଦକୁ କୌଣସି ଉପଯୋଗରେ ନ ଲଗାଇବା ଦୁଃଖର କଥା । ଧାମରା ଅଞ୍ଚଳରେ ପ୍ରଚୁର ଲୁଣ ତିଆରି କରାଯାଇ ପାରନ୍ତା । ଧାମରା ମୁହାଣରୁ ମାଛଧରାର ବ୍ୟବସ୍ଥା କରାଯାଇ ଚାନ୍ଦବାଲି ବାଟେ ଅତି ସୁବିଧାରେ ରପ୍ତାନୀ କରାଯାଇ ପାରନ୍ତା ଏବଂ ଚାନ୍ଦବାଲିକୁ ଜାହାଜ ଚଳାଚଳର ବ୍ୟବସ୍ଥା ମଧ୍ୟ କରାଯାଇ ପାରନ୍ତା । ଏହା ହେବାଦ୍ୱାରା ଶିଳ୍ପ ପ୍ରତିଷ୍ଠାନ ଓ କଳକାରଖାନା ହୀନ ଏହି ବନ୍ୟା ପ୍ରପୀଡ଼ିତ ଅଞ୍ଚଳର ବହୁ ଲୋକେ ଜୀବିକାର୍ଜନ କରି ସୁଖୀ ହୁଅନ୍ତେ । ଜଳପଥରେ ମାଲରପ୍ତାନୀ ଦ୍ୱାରା ମଧ୍ୟ ସଡ଼କ ଉପରୁ ଓ ରେଳବାଇ ଉପରୁ ପରିବହନ ଚାପ କମିଯାଆନ୍ତା । ଫଳରେ ଏ ଅଞ୍ଚଳର ଲୋକେ ଶସ୍ତା ଓ ସୁବିଧାରେ ଜିନିଷପତ୍ର ପାଇପାରନ୍ତେ ।

ସୁଖର କଥା, ଚାନ୍ଦବାଲି ବନ୍ଦରର ଉନ୍ନତି କଳ୍ପେ ନିକଟରେ ସରକାରୀ ସର୍ଭେ ହୋଇଯାଇଛି । ଧାମରା ମୁହାଣ ସମୁଦ୍ରରୁ ମାଛ ଧରାଯାଇ ଚାନ୍ଦବାଲି ବାଟେ ରପ୍ତାନୀ ପାଇଁ ମଧ୍ୟ ପର୍ଯ୍ୟବେକ୍ଷଣ କରାଯାଇ ଆୟୋଜନ ଚାଲିଛି ଏବଂ ଧାମରାରେ ଗୋଟିଏ ବୋଟ୍ ବିଲ୍ଡିଂ ୟାର୍ଡ଼ ପ୍ରତିଷ୍ଠିତ ହେବାକୁ ଯାଉଛି ।

ଓଡ଼ିଶାର ଏହି ଏକମାତ୍ର ନଦୀବନ୍ଦରର ଉନ୍ନତି ଲାଗି ରାଜ୍ୟର ସମସ୍ତଙ୍କ ଧ୍ୟାନ ଦେବା ବାଞ୍ଛନୀୟ । ଉନ୍ନତ ଚାନ୍ଦବାଲି ନଦୀବନ୍ଦର ଓଡ଼ିଶାର ଏକ ଗର୍ବ ହେତୁ ଏବଂ ଏକ ପରିବହନ ପଥହୀନ ପ୍ରାୟ ୫୦୦ବର୍ଗ କି.ମି. ବ୍ୟାପୀ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ପକ୍ଷରେ ବାଣିଜ୍ୟ କେନ୍ଦ୍ରରୂପେ କଲ୍ୟାଣକର ହେବ । ଏଠାକାର ଏହି ପ୍ରାକୃତିକ ତଥା ସୁବିଧାଜନକ ଅବସ୍ଥିତି ହେତୁ, ସମୁଦ୍ରଗାମୀ ଜାହାଜସବୁ ଏଠାକୁ ନଆସୁଥିଲେ ମଧ୍ୟ ପ୍ରାୟ ୫୦୦ବର୍ଗ କି.ମି. ସ୍ୱାଭାବିକ ବାଣିଜ୍ୟ କେନ୍ଦ୍ର ହୋଇ ରହିଛି । ସପ୍ତାହରେ ଦୁଇଦିନ ହାଟପାଳି ବ୍ୟତୀତ ପ୍ରାୟ ପ୍ରତିଦିନ ଅସଂଖ୍ୟ ନୌକା ଗ୍ରାମାଞ୍ଚଳ ମାନଙ୍କର ଖାଦ୍ୟଶସ୍ୟ ନେଇ ଏଠାରେ ଭିଡ଼େ । ଉକ୍ତ ଖାଦ୍ୟଶସ୍ୟ ସବୁ ଏଠାରେ ବିକ୍ରୟ

ହୋଇଥାଏ । ପୁନଶ୍ଚ ଗ୍ରାମାଞ୍ଚଳମାନଙ୍କର ଉତ୍ପନ୍ନ ଦୈନନ୍ଦିନ ଜୀବନଯାତ୍ରାର ଆବଶ୍ୟକୀୟ ପଦାର୍ଥ ଘେନିଯାଏ । ଏଠାରୁ ପ୍ରତିଦିନ ପ୍ରଧାନ ତୀର୍ଥକ୍ଷେତ୍ର ଆରଡ଼ିକୁ ଓ ସମୁଦ୍ରକୂଳ କଇଥଖୋଲା, ବାଁଶଡ଼ା ପ୍ରଭୃତି ଅଞ୍ଚଳକୁ ଦୈନିକ ଯାତ୍ରୀବାହୀ ଲଞ୍ଚ ଯାତାୟତ କରୁଛି । ସମୁଦ୍ର ମୁହାଣରେ ମାଛମରା ହୋଇ ଏଠାରୁ ଦୈନିକ ପ୍ରଚୁର ମାଛ କଲିକତାକୁ ରପ୍ତାନୀ ହେଉଛି । ଏଠାରେ ଆଠଟି ଚାଉଳକଳ, ଗୋଟିଏ ବରଫକଳ, ଗୋଟିଏ ସମବାୟ ପ୍ରତିଷ୍ଠାନ, ଗୋଟିଏ ଟାଇଲ୍ କାରଖାନା, ରେଗୁଲେଟେଡ ମାର୍କେଟିଂ ସୋସାଇଟି ଅଛି । ପୋର୍ଟ ଅଫିସ୍ ଓ ପାଣିପାଗ ଅଫିସ୍ ଏ ପର୍ଯ୍ୟନ୍ତ ଏଠାରେ ଅଛି ।

ଦୁଃଖର କଥା, ପଞ୍ଚବାର୍ଷିକ ଯୋଜନା ମାନଙ୍କରେ ଅନେକ କିଛି ନୂତନ ସୃଷ୍ଟି ଗଢ଼ି ଉଠୁଥିଲାବେଳେ, ଚାନ୍ଦବାଲି ବନ୍ଦର ଅବହେଳାକ୍ରମେ ନଷ୍ଟଭ୍ରଷ୍ଟ ହୋଇଯାଉଛି ।

୧୮୭୨ରୁ ୧୯୪୨ ପର୍ଯ୍ୟନ୍ତ ବନ୍ଦରରୂପେ ଚାନ୍ଦବାଲିର ମର୍ଯ୍ୟାଦା ଉଜ୍ଜ୍ୱଳ ଥିଲା । ଗତ ଦ୍ୱିତୀୟ ମହାସମର ବେଳେ ଚାନ୍ଦବାଲିକୁ ଯାତାୟାତ କରୁଥିବା ଜାହାଜ ସବୁକୁ ଯୁଦ୍ଧକାଳୀନ ଜରୁରି କାର୍ଯ୍ୟରେ ନିଯୁକ୍ତ ହେବାରୁ ଚାନ୍ଦବାଲିକୁ କଲିକତାରୁ ଆଉ ଜାହାଜ ଚଳାଚଳ ହେଲାନାହିଁ । ଯୁଦ୍ଧପରେ ଜାହାଜ ପୂର୍ବପରି ଯାତାୟାତ କମିଗଲା । ଚାନ୍ଦବାଲିକୁ ଜାହାଜ ଚଳାଚଳ ଧାନ-ଚାଉଳ ରପ୍ତାନୀ ଉପରେ ବିଶେଷ ଭାବରେ ନିର୍ଭର କରୁଥିଲା । ଯୁଦ୍ଧପରେ ଧାନ-ଚାଉଳ ରପ୍ତାନୀ ଉପରେ ସରକାରୀ କଟକଣା ଜାରି ହୋଇ ଅବାଧ ରପ୍ତାନୀ ବାଧାପ୍ରାପ୍ତ ହେବାରୁ ଜାହାଜ ଚଳାଚଳ ବନ୍ଦ ହୋଇଗଲା । ଚାନ୍ଦବାଲିର ବନ୍ଦର ମର୍ଯ୍ୟାଦା ମଳିନ ପଡ଼ିଲା, କିନ୍ତୁ ବନ୍ଦର ବାଣିଜ୍ୟ ନିମନ୍ତେ ଚାନ୍ଦବାଲିର ସେହି ଭୌଗୋଳିକ ସୁବିଧା ଯଥା କଲିକତା ସମେତ ବିଭିନ୍ନ ବନ୍ଦରରୁ ଜାହାଜ ଏହି ବନ୍ଦରକୁ ଆସିବାପାଇଁ ସୁନାବ୍ୟା ନଦୀ, ପଟ୍ଟାମୁଣ୍ଡାଇ, କେନ୍ଦୁପାଟଣା, କେନ୍ଦ୍ରାପଡ଼ା ମଧ୍ୟ ଦେଇ କଟକ ସହିତ ଲଞ୍ଚ, ନୌକା ପ୍ରଭୃତିରେ ଯୋଗସୂତ୍ର ରକ୍ଷାପାଇଁ ନଦୀ ଓ କେନାଲ ପଥ ଓ ଭଦ୍ରକ ପର୍ଯ୍ୟନ୍ତ ପ୍ରଶସ୍ତ ରାଜପଥ ପୂର୍ବପରି ଅକ୍ଷୁଣ୍ଣ ରହିଛି । ଅବଶ୍ୟ ବର୍ତ୍ତମାନ କୌଣସି ଜାହାଜ ଆସିବା ପୂର୍ବରୁ ସମୁଦ୍ର ମୁହାଣରୁ ଚାନ୍ଦବାଲି ପର୍ଯ୍ୟନ୍ତ ନଦୀପଥକୁ ଥରେ ସର୍ଭେ କରେଇ ନିଆଯିବା ଆବଶ୍ୟକ ।

ଏ ଅଞ୍ଚଳରେ ସଡ଼କ ନାହିଁ କହିଲେ ଚଳେ - ନଦୀ, ଜୋର ନାଳ ହିଁ ପଥ । କଥିତ ନଦୀ, ଜୋର ଓ ନାଳ ବ୍ରାହ୍ମଣୀ ଓ ବୈତରଣୀ ସହିତ ମିଳିତ ହୋଇଥିବାରୁ ଓ ଚାନ୍ଦବାଲି ବୈତରଣୀ ଓ ବ୍ରାହ୍ମଣୀର ସଂଗମସ୍ଥଳ ଧାମରାଠାରୁ ମାତ୍ର ୧୦ମାଇଲ ଦୂରରେ ବୈତରଣୀ କୂଳରେ ଅବସ୍ଥିତ ଥିବାରୁ ଏହି ବିସ୍ତୃତ ତଳମାଳ ଅଞ୍ଚଳର ପ୍ରତ୍ୟେକ ଗ୍ରାମାଞ୍ଚଳ ସହିତ ଜଳପଥ ଦ୍ୱାରା ସଂଯୁକ୍ତ । ଏହା ବ୍ୟତୀତ ତାଳଦଣ୍ଡା କେନାଲ ବାଟେ ଚାନ୍ଦବାଲିରୁ ପଟାମୁଣ୍ଡାଇ, କେନ୍ଦୁପାଟଣା, କେନ୍ଦ୍ରାପଡ଼ା ମଧ୍ୟଦେଇ କଟକ ଏବଂ ସ୍ଥଳପଥ ଦ୍ୱାରା ଭଦ୍ରକ ରେଲଷ୍ଟେସନ ସହିତ ଯୋଗାଯୋଗ ରହିଛି । ଏଣୁ ଚାନ୍ଦବାଲି ସ୍ଥଳପଥ ବିହୀନ ଉକ୍ତ ୧୦୦୦ବର୍ଗମାଇଲ ପରିମିତ ନଦୀନାଳ ଛନ୍ଦା ଅଞ୍ଚଳର ପ୍ରାକୃତିକ ବାଣିଜ୍ୟ କେନ୍ଦ୍ରରୂପେ ଦଣ୍ଡାୟମାନ ।

ଉପର ଲିଖିତ ବିଶେଷଜ୍ଞମାନଙ୍କ ବିବରଣୀ ଅନୁସାରେ ଗୋଟିଏ ଉତ୍କୃଷ୍ଟ ପ୍ରାକୃତିକ ନଦୀବନ୍ଦର ପାଇଁ ଚାନ୍ଦବାଲି ଏକାନ୍ତ ଅନୁକୂଳ । ଓଡ଼ିଶାର ସମଗ୍ର ଉପକୂଳ ଅଞ୍ଚଳ ଅନୁସନ୍ଧାନ କରି ବିଶେଷଜ୍ଞମାନେ ଚାନ୍ଦବାଲିରେ ବନ୍ଦର ସ୍ଥାପନ ପାଇଁ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଦୁଃଖର କଥା ଧାମରା ବୈତରଣୀ ବ୍ରାହ୍ମଣୀ ପରି ସୁନାବ୍ୟା ଜଳଧାର ଓ ଚାନ୍ଦବାଲି ପରି ପ୍ରାକୃତିକ ନଦୀବନ୍ଦରକୁ କୌଣସି ବ୍ୟବହାରରେ ଲଗାଯାଇ ନପାରିବା ପରିତାପର କଥା । ନଦୀପଥ ସଂକୀର୍ଣ୍ଣ ହେବା ଦୃଷ୍ଟିରୁ ନଦୀରେ ସାଂକେତିକ ବ୍ୟବହାର ଓ କୂଳକୁ ଭିଡ଼ିବାପାଇଁ ଘାଟ ତଥା ଜେଟିର ବ୍ୟବସ୍ଥା କରାଯାଇ ଜାହାଜ ଯାତାୟାତ ପାଇଁ ସୁବିଧା କରିଦିଆଗଲେ ଓ ସମୁଦ୍ରପଥରେ ମାଲପତ୍ର ଆମଦାନୀ ଓ ରପ୍ତାନୀ ପାଇଁ ଉତ୍ସାହ ଦିଆଗଲେ କୋଚିନ, ମାନ୍ଦ୍ରାଜ, ବିଶାଖାପାଟଣା, କଲିକତାରୁ ନିୟମିତ ନହେଉ ପଛକେ ସାମୟିକ ଭାବରେ ଜାହାଜସବୁ ଚାନ୍ଦବାଲିକୁ ଆମ ରାଜ୍ୟର ଆବଶ୍ୟକ କରୁଥିବା ପଣ୍ୟଦ୍ରବ୍ୟ ଘେନି ସେସବୁ ରାଜ୍ୟରୁ ଆସନ୍ତା ଓ ଏଠାରୁ ସେସବୁ ରାଜ୍ୟକୁ ଯୋଗାଉଥିବା ଚାଉଳ, ଧାନ; ବିରି, ମୁଗ ଉକ୍ତ ଜାହାଜରେ ରପ୍ତାନୀ କରାଯାଇ ପାରନ୍ତା । ଏହାଦ୍ୱାରା ଚାନ୍ଦବାଲିକୁ ଶସ୍ତାରେ ଓ ସୁବିଧାରେ ଅନେକ ଜିନିଷ ଆସିପାରନ୍ତା । ଅନେକ ନୌକା ମାଝି ଓ ମଜୁରିଆ ଶ୍ରେଣୀର ଲୋକେ ଜୀବିକାର୍ଜନ କରନ୍ତେ । ଚାନ୍ଦବାଲି ଭଦ୍ରକ ସଡ଼କ ଉପରୁ ଚାପ କମିଯାନ୍ତା । ରେଲବାଇ ଉପରୁ ମଧ୍ୟ ଚାପ କମିଯାନ୍ତା ଓ

ବେଳେବେଳେ ଅଭାବରୁ ଚିନି, କିରାସିନି, ଅଟା ଓ ଅନ୍ୟାନ୍ୟ ଆବଶ୍ୟକୀୟ ପଦାର୍ଥର ଯେପରି ଅସ୍ୱାଭାବିକ ଅନଟନ ଘଟେ ତାହା ଆଉ ଘଟନ୍ତା ନାହିଁ ।

ଅବଶ୍ୟ ଚାନ୍ଦବାଲି ବନ୍ଦରର ଉନ୍ନତିକରଣ ପାଇଁ ବିହିତ ପଦକ୍ଷେପ ନିଆଯିବ ବୋଲି ସମ୍ବାଦପତ୍ରରେ ବେଳେବେଳେ ପ୍ରକାଶ ପାଇଥାଏ । ପଦକ୍ଷେପ ନିଆ ହେଉହେଉ ଚାନ୍ଦବାଲିର ପୂର୍ବ ସ୍ଥିତାବସ୍ଥା ନଷ୍ଟହୋଇଯିବାକୁ ବସିଲାଣି । ଏହାର ନଦୀକୂଳ ପ୍ରଧାନ ରାସ୍ତା ଓ ପଥରବନ୍ଧ ନଦୀଗ୍ରାସରେ ଯିବାକୁ ବସିଲାଣି । ଜେଟିସବୁ ଭାଂଗିଗଲାଣି । ଜାହାଜ ଗତିପଥ ନିର୍ଦ୍ଦେଶ କରିବାକୁ ନଦୀରେ ବୟାଁ ଆଉ ନାହିଁ ।

### ସୂଚନା

୧. ଚାନ୍ଦବାଲିର ଐତିହ୍ୟ
୨. ଅନୁକୂଳ ପ୍ରାକୃତିକ ପରିସ୍ଥିତି
୩. କଣହେଲେ କାମ ମିଳିବ
୪. ଧାମରା କୂଳେକୂଳେ କ'ଣ ହୋଇପାରିବ
୫. ଆଞ୍ଚଳିକ ପ୍ରାଧାନ୍ୟ
୬. କ୍ଣ ଅଛି
୭. ଅବହେଳା
୮. କ'ଣ କରାଯିବ
୯. ଉପସଂହାର

ସେଦିନ ଏଦିନ ମଧ୍ୟରେ ଅନେକ ପରିବର୍ତ୍ତନ ଘଟିଲାଣି । ଆଜି ଜରାଜୀର୍ଣ୍ଣ ନଦୀକୂଳ ଅତୀତ ବାଣିଜ୍ୟର ମୂକସାକ୍ଷୀ । ଅତୀତର ସୁବର୍ଣ୍ଣସ୍ମୃତିକୁ ମନେପକାଇ ଝୁରୁଛନ୍ତି ତା'ର ତଟବାସୀ ଓ ଦେଶବାସୀ । ନଦୀତଟର ଶ୍ୟାମଳ ବୃକ୍ଷରାଜିର ଛାଇ ସବୁଜିମା ଓ ମୃଦୁମନ୍ଦ ସମୀରଣ ବହୁ ସ୍ୱଦେଶୀ ବିଦେଶୀ ପର୍ଯ୍ୟଟକଙ୍କ ମନକୁ ଏବେବି ସ୍ୱପ୍ନବିଭୋର କରିଦେଉଛି । ତଥାପି ବୋଇତ ବନ୍ଦିତ ରମ୍ୟ ଚାନ୍ଦବାଲି ତାର ଅତୀତ ବାଣିଜ୍ୟ ସମ୍ଭାରକୁ ବହୁ କଷ୍ଟରେ ଆଜିବି ସାଇତି ରଖିଛି ସମ୍ଭାଳି ସମ୍ଭାଳି ।



ଚାନ୍ଦବାଲି

ତା.୧୪.୦୮.୧୯୫୫

# ଆଳି ରିଙ୍ଗବନ୍ଧ

ଆଳି ରିଙ୍ଗବନ୍ଧ ପୁଣି ତିଆରି ହେବାର ଯୋଗାଡ଼ ଚାଲିଥିବାରୁ ଚାନ୍ଦବାଲି, ତିହିଡ଼ି, ଧାମନଗର ଓ ବନ୍ଧବାହାର ଆଳି ଅଞ୍ଚଳ ଲୋକେ ଚିନ୍ତିତ ହେଲେଣି । ରିଙ୍ଗ ବନ୍ଧ ହୋଇଗଲେ ଏହି ବିସ୍ତୃତ ତଳମାଳ ଅଞ୍ଚଳରେ ପୁଣି ଘୋର ବନ୍ୟା ହେବ ।

ଆଳି ରିଙ୍ଗବନ୍ଧର ଅବସ୍ଥିତି ଏପରି ଏକ ଅଖଞ୍ଜା ଜାଗାରେ ଯେ ଏହାରି ଯୋଗୁଁ ବ୍ରାହ୍ମଣୀ ଓ ଖରସୁଆଁ, ବିଶେଷତଃ ଖରସୁଆଁର ବନ୍ୟା, ସ୍ୱାଭାବିକ ନିଷ୍କାସନ ପଥରେ ବିଷମ ବାଧାପାଏ । ଏହି ବନ୍ୟା ବୈତରଣୀ ଓ ସାଳନ୍ଦୀ ବନ୍ୟା ସଂଗେ ମିଶି ଉପର କଥିତ ବିସ୍ତୃତ ତଳମାଳ ଅଞ୍ଚଳରେ ବହୁ ଦିନ ମାଡ଼ି ରହିବା ଦ୍ୱାରା ପ୍ରାୟ ପ୍ରତିବର୍ଷ ଫସଲ ନଷ୍ଟହୁଏ । ଅତ୍ୟନ୍ତ ପ୍ରବଳ ବର୍ଷା ଯୋଗୁଁ ଯେଉଁବର୍ଷ ବୈତରଣୀ ଓ ସାଳନ୍ଦୀରେ ବଡ଼ ବନ୍ୟା ହୁଏ ବାଧାପ୍ରାପ୍ତ ଖରସୁଆଁର ବନ୍ୟା ତାହା ସଂଗେ ମିଶି ଉକ୍ତ ଅଞ୍ଚଳରେ ଗୁରୁତର ବିପଦ ସୃଷ୍ଟିକରେ । ଅତୀତରେ ଯେତେଯେତେ ଭୟଙ୍କର ବନ୍ୟା ଏ ଅଞ୍ଚଳରେ ହୋଇଚି ସେସବୁ ଏହି ରିଙ୍ଗ ବନ୍ଧ ଯୋଗୁଁ ଓ ରିଙ୍ଗବନ୍ଧ ଥିଲାବେଳେ ହୋଇଚି । ରିଙ୍ଗବନ୍ଧ ଭାଂଗିଗଲା ଦିନଠାରୁ ତଳମାଳ ଲୋକେ ପ୍ରତିବର୍ଷ ଊଣାଅଧିକେ ଧାନ ଅମଳ କରୁଛନ୍ତି, ଏବଂ ଅତୀତରେ ଯେପରି ଭୟଙ୍କର ବନ୍ୟା ହୋଇ ଧନଜୀବନ ନଷ୍ଟ କରୁଥିଲା ସେପରି ବନ୍ୟା ଏ ଅଞ୍ଚଳକୁ ଆଉ ଘଟିନାହିଁ ।

ଓଡ଼ିଶା ବିହାର ସଂଗେ ଥିଲାବେଳେ ୧୯୨୮ରେ ଆଡାମ୍ ଉଇଲିୟମସ୍‌ଙ୍କ ସଭାପତିତ୍ୱରେ ଗୋଟିଏ ବନ୍ୟାବିଶାରଦ କମିଟି ବସିଥିଲା । ଉକ୍ତ କମିଟି ଉଡ଼ାଜାହାଜ ସାହାଯ୍ୟରେ ସର୍ଭେକରି, ନୌକା ପ୍ରଭୃତିରେ ବିଭିନ୍ନ ଅଞ୍ଚଳ ଗସ୍ତକରି ଓ ବହୁ ସରକାରୀ ଓ ଗଣ୍ୟମାନ୍ୟ ଲୋକଙ୍କଠାରୁ ସାକ୍ଷ୍ୟଗ୍ରହଣ କରି ଓଡ଼ିଶାରେ ବନ୍ୟା ନିବାରଣର ଗୋଟିଏ ସୁଚିନ୍ତିତ ରିପୋର୍ଟ ଦେଇଥିଲେ । ଉକ୍ତ କମିଟି ଆଳି ରିଙ୍ଗବନ୍ଧକୁ ଉଠେଇ ଦେବାକୁ ଓ ଏହି ଇଷ୍ଟେଟର ରୋଡ଼କୁ ତଳୁଆ କରିଦେବାକୁ ସୁପାରିଶ କରିଥିଲେ । ଉକ୍ତ କମିଟିଙ୍କ ମତରେ ଆଳି ରିଙ୍ଗବନ୍ଧ ୦ ପରି ଘେରିରହିଛି ବୋଲି ତା' ଗର୍ଭକୁ ବନ୍ୟା

ପ୍ରବେଶ କରିପାରେ ନାହିଁ । ତେଣୁ ଏହାର ଗର୍ଭ ଭିତରେ ଥିବା ଜମିରେ ପଟୁ ପଡ଼େନାହିଁ । କିନ୍ତୁ ବନ୍ଧ ବାହାରେ ଥିବା ଜମିରେ ବନ୍ୟାଯୋଗୁଁ ପ୍ରତିବର୍ଷ ପ୍ରଚୁର ପଟୁପଡ଼େ ଏବଂ ଏହାଫଳରେ ବନ୍ଧ ବାହାର ଜମି ବନ୍ଧ ଭିତର ଜମି ଅପେକ୍ଷା କ୍ରମେକ୍ରମେ ଉଚ୍ଚ ହୋଇଯାଉଛି । ବନ୍ଧଭାଂଗି ବନ୍ୟା ରିଙ୍ଗବନ୍ଧ ଭିତରକୁ ପଶିଗଲେ ଆଉ ସହଜରେ ନିଷ୍କାସିତ ହୋଇଯାଇପାରୁନାହିଁ ଏବଂ ଏହା ଫଳରେ ଫସଲ ସମୂଳେ ନଷ୍ଟ ହୋଇଯାଉଛି । ରିଙ୍ଗବନ୍ଧକୁ ଉଠାଇ ଦିଆଗଲେ ବନ୍ଧ ଭିତରେ ଥିବା ଜମିରେ ବନ୍ୟା ମାଡ଼ି ପଟୁପଡ଼ିବା ଦ୍ୱାରା ଉକ୍ତ ଜମି କ୍ରମେକ୍ରମେ ଉଚ୍ଚହୋଇ ବନ୍ଧ ବାହାର ଜମି ସଂଗେ ସମାନ ଉଚ୍ଚ ହୋଇଯିବ ଏବଂ ଫଳତଃ ଏହି ଜମି ଉର୍ବରତର ହେବା ସଂଗେସଂଗେ ବନ୍ୟାଦାଉରୁ ବହୁ ପରିମାଣରେ ରକ୍ଷା ପାଇବ । ଏହି କମିଟି ମତ ପ୍ରକାଶ କରିଥିଲେ କି ରିଂଗବନ୍ଧ ଉଠିଗଲା ପରେପରେ ରିଙ୍ଗବନ୍ଧ ଅଞ୍ଚଳ ପାଇଁ ଜଳସେଚନର ବ୍ୟବସ୍ଥା ହେବା ଉଚିତ, ଏହାହେଲେ ଏ ଅଞ୍ଚଳରେ ପ୍ରଚୁର ରବି ଫସଲ ଓ ଦାଳୁଅ ହୋଇପାରିବ ।

୧୯୩୭ରେ ମଧ୍ୟ ବିଖ୍ୟାତ ଇଂଜିନିଅର ସାର୍ ବିଶେଶ୍ୱରିଆ ଓଡ଼ିଶା ବନ୍ୟା ସମସ୍ୟା ବିଷୟରେ ଅନୁସନ୍ଧାନ କରି ବନ୍ୟା ପ୍ରତିକାର ପାଇଁ ନଦୀର ଉପରି ଭାଗରେ ଜଳଭଣ୍ଡାର ଖଞ୍ଜିବାକୁ ଉପଦେଶ ଦେବା ସଂଗେସଂଗେ ଆଡାମ ଉଇଲିୟମସ୍‌ଙ୍କ ପରି ସେ ମଧ୍ୟ ସୁପାରିଶ କରିଥିଲେ ଯେ ଯେଉଁ ବନ୍ଧବାଡ଼ ସବୁ ବନ୍ୟାର ଗତିରୋଧ କରୁଛି ସେସବୁକୁ ଉଠେଇଦେବା ଉଚିତ । ଏହା ହେବାଦ୍ୱାରା ବନ୍ୟାଜଳ ଖେଳେଇ ହୋଇଯାଇ ଶୀଘ୍ର ଓ ସହଜରେ ନିଷ୍କାସିତ ହୋଇଯିବ; ଏହାଫଳରେ ବନ୍ୟାର ପ୍ରକୋପ ବହୁ ପରିମାଣରେ କମିଯିବ ।

ଏହା ପରେପରେ ଶୁଣାଯାଉଥିଲା ଯେ ବନ୍ୟା ଗତିରୋଧ କରୁଥିବା ବନ୍ଧବାଡ଼ ସରକାର ଭାଂଗିଦେବେ ନାହିଁ କିନ୍ତୁ ସେପରି ବନ୍ଧବାଡ଼ ବନ୍ୟାରେ ଭାଂଗିଗଲେ ସରକାର ସେସବୁକୁ ଆଉ ମରାମତି କରିବେ ନାହିଁ ।

ଆଜି ରିଙ୍ଗବନ୍ଧ ଯେତେ ପରିମାଣ ଜମିର ଧାନ ଫସଲ ବନ୍ୟାରୁ ରକ୍ଷାକରିବା ଉଦ୍ଦେଶ୍ୟରେ ତିଆର ହେବାକୁ ଯାଉଛି, ଏହି ବନ୍ଧ ସଂପୂର୍ଣ୍ଣ ତିଆରି ହୋଇଗଲେ ତଳମାଳ ଅଞ୍ଚଳରେ ତାହାର ଅନେକ ଗୁଣ ଜମିର ଧାନ ଫସଲ ନଷ୍ଟ କରିଦେବ । ଭେଡ଼ା ବାରିଫସଲି ଜାଗା । ଶାରଦ ଧାନ ବ୍ୟତୀତ ଏହି ଅଞ୍ଚଳରେ ଦାଳୁଅ ଧାନ ଓ

ରବିଫସଲ ପ୍ରଚୁର ପରିମାଣରେ ହୁଏ । କିନ୍ତୁ ତଳମାଳ ଅଞ୍ଚଳରେ ଧାନ ବ୍ୟତୀତ ଆଉ କିଛି ହୁଏନାହିଁ - ଧାନ ଧୋଇଗଲେ ଗଲେ ଏ ଅଞ୍ଚଳରେ ସର୍ବନାଶ ହୁଏ ।

ଆଳି ରିଙ୍ଗବନ୍ଧର ପୁନଃ ନିର୍ମାଣ ଯେତେବେଳେ ଆରମ୍ଭ ହେଲା ତଳମାଳ ଅଞ୍ଚଳର ଲୋକେ ସରକାରଙ୍କୁ ଏହା ବିରୁଦ୍ଧରେ ଘନଘନ ପ୍ରତିବାଦ ଜଣେଇ ସଭାସମିତିରେ ଏହା ବିରୁଦ୍ଧରେ ଦୃଢ଼ ପ୍ରତିବାଦ ବ୍ୟକ୍ତ କରାହୋଇଚି, ଖବରକାଗଜ ମାନଙ୍କରେ ପ୍ରତିବାଦମୂଳକ ଲେଖା ବାରମ୍ବାର ପ୍ରକାଶିତ ହୋଇଚି ଓ ପ୍ରଧାନମନ୍ତ୍ରୀ ଯେତେବେଳେ ତଳମାଳ ଅଞ୍ଚଳକୁ ଆସିଛନ୍ତି ତାହାଙ୍କ ନିକଟରେ ଏହା ବିରୁଦ୍ଧରେ ଆପତ୍ତି କରାହୋଇଛି । ଏହାସତ୍ତ୍ୱେ ପୁଣି ଏହି ବନ୍ଧ ତିଆରି ହେବାକୁ ଯାଉଥିବାର ଶୁଣି ବାରମ୍ବାର ପ୍ରପୀଡ଼ିତ ବିସ୍ତୃତ ତଳମାଳ ଅଞ୍ଚଳର ଦରିଦ୍ର ଜନସାଧାରଣ ବଡ଼ ଚିନ୍ତିତ ହେଉଛନ୍ତି । ଏପରି ସ୍ଥଳେ ଏ ବନ୍ଧ କରାନଯାଇ ରିଙ୍ଗବନ୍ଧ ଅଞ୍ଚଳ ପାଇଁ ଜଳସେଚନରଂ ବ୍ୟବସ୍ଥା କରିଦିଆଯିବା ଉଚିତ୍ ।

ଜଗନ୍ନାଥ ପଢ଼ିଆରୀ
ସରପଞ୍ଚ
ବାଲିଗାଁ ଗ୍ରାମପଞ୍ଚାୟତ



# ଭାଷାର ମୂଳ ହେଲା ଶବ୍ଦ

ଭାଷାର ମୂଳଦୁଆ ହେଲା ଶବ୍ଦ । ଯେଉଁ ଭାଷା ଯେତେ ଅଧିକ ସଂଖ୍ୟକ ଶବ୍ଦର ସମଷ୍ଟି ସେହି ଭାଷାରେ ସେହି ତୁଳନାରେ ସ୍ୱଚ୍ଛନ୍ଦ ଭାବ ପ୍ରକାଶର ଅବକାଶ ବା ସୁଯୋଗ ରହିଛି ।

'ପୁଣ୍ୟ' ଶବ୍ଦ ଇଂରାଜୀରେ ଗୃହୀତ ହୋଇଛି ।

ଭାବପ୍ରକାଶ ପାଇଁ ଶବ୍ଦର ଆବଶ୍ୟକତା ରହିଛି । ସେହି ଆବଶ୍ୟକତାକୁ ପୂରଣ କରିବାପାଇଁ ଇଂରେଜମାନେ ସମଗ୍ର ପୃଥିବୀରୁ ଶବ୍ଦ ସଂଗ୍ରହ କରି ନିଜ ଅଭିଧାନରେ ରଖି ଦେଇଛନ୍ତି । ଭାରତରେ ଆମକୁ ଏତିକି କରିବାକୁ ହେବ ଯେ, ସେହି ସେହି ଶବ୍ଦ ଭିତରୁ କେଉଁ ଗୁଡ଼ିକର ପ୍ରତିଶବ୍ଦ ଆମ ଭାଷାରେ ନାହିଁ ବା ସଂସ୍କୃତ ଭାଷାକୁ ମୂଳକରି ନୂତନ ଶବ୍ଦ ସୃଷ୍ଟି କରିପାରୁନାହିଁ । ତେବେ ଇଂରାଜୀ ଭାଷାର ସେହି ଶବ୍ଦକୁ ଆମ ଭାଷାକୁ ନେଇ ଆସିବାକୁ ହେବ । ସେଭଳି ଆଣିବା ବେଳେ ଆମ ପରିସ୍ଥିତିକୁ ଖାପ ଖୁଆଇବାପାଇଁ ବା ଉଚ୍ଚାରଣରେ ସୁବିଧା କରିବାପାଇଁ ସେଥିରେ ଟିକିଏ ଟିକିଏ ପରିବର୍ତ୍ତନ କରିବାକୁ ହେବ । କାରଣ, ଅତୀତରେ ପାରସୀ ଶବ୍ଦଗୁଡ଼ିକୁ ଭାରତୀୟ ଭାଷା ଭିତରକୁ ଆସିଲାବେଳେ ଏହି ପନ୍ଥା ହିଁ ଅବଲମ୍ବନ କରାଯାଇଛି । ଭାଷାକୁ ଶବ୍ଦ ସମୃଦ୍ଧ କରିବାପାଇଁ ବିଶେଷ ଧ୍ୟାନ ଦେବା ବିଧେୟ ।

ଶବ୍ଦ ଗୁଡ଼ିକ ଅନ୍ୟଭାଷାକୁ ଗଲାବେଳେ ସେ ଭାଷାର ଉଚ୍ଚାରଣ, ବର୍ଣ୍ଣମାଳା ସହିତ ନିଜକୁ ଖାପ ଖୁଆଉ ଖୁଆଉ କିଭଳି ନୂତନ ରୂପ ଧରିଯାନ୍ତି, ସେଥିପ୍ରତି ମଧ୍ୟ ଦୃଷ୍ଟିଦେବା ଉଚିତ ।

ଯେ ଯେଉଁ ଭାଷାରେ କଥା କହୁଛି ବା ଭାବପ୍ରକାଶ କରିବାକୁ ଉଦ୍ୟମ କରୁଛି, ତାହା ଯଦି ଦୁର୍ବଳ, ଦରିଦ୍ର ତେବେ ସେ ତାହାର ଚିନ୍ତା ଓ ଭାବନାକୁ ଠିକ୍ ଭାବରେ ପ୍ରକାଶ କରିପାରୁ ନାହିଁ । ପ୍ରକାଶ ନକରି ପାରିଲେ ଚିନ୍ତା ମଧ୍ୟ ବ୍ୟାହତ ହୁଏ । ଏକଥା ମଧ୍ୟ ସ୍ୱୀକାର କରାଯିବ ଯେ, ସୁଯୋଗ ଅଭାବରୁ ବା ଯତ୍ନର ଅଭାବରୁ

ଅଥବା ଅବହେଳାରୁ ଗୋଟିଏ ଭାଷା ସବୁଜ୍ଞାନକୁ ନିଜ ଗର୍ଭରେ ସାଇତି ରଖିବା ସୁଯୋଗରୁ ବଞ୍ଚିତ ହୋଇଥାଏ ।

ଗୋଟିଏ ପ୍ରକାର ଲୋକେ ଯଦି ସ୍ୱଷ୍ଟ ଭାବରେ ଚିନ୍ତା ନକରନ୍ତି, ଭାଷାକୁ ସମୃଦ୍ଧ କରିବାପାଇଁ ଯେଉଁ ଉପାୟ ଅବଲମ୍ବନ କରିବା ଅତ୍ୟନ୍ତ ଆବଶ୍ୟକ, ସେ ଉପାୟ ଅବଲମ୍ବନରେ ହେଳା କରନ୍ତି, ତାହେଲେ ଭାଷାର ବିକାଶ ହୋଇପାରିବ ନାହିଁ ।

ନୂତନ ନୂତନ ଶବ୍ଦ ସୃଷ୍ଟିକରି ଲେଖିବାର ଶୈଳୀରେ ପରିବର୍ତ୍ତନ କରି ଯେକୌଣସି ଭାଷାକୁ ଭାବ ପ୍ରକାଶର ଚମତ୍କାର ମାଧମ କରି ଦିଆଯାଇପାରେ । ଆମ ଅଜାଣତରେ କେତେ ବିଦେଶୀ ଶବ୍ଦ ଆମ ଭାଷା ଭିତରକୁ ପଶିଆସୁଛି ।

ଆରମ୍ଭରେ ଲୋକ ଏକ ଭାଷାରେ ଭାଷିଥାଏ । ତାକୁହିଁ କୁହାଯାଏ ମନୁଷ୍ୟର ପ୍ରଥମ ଭାଷା । ବାପା, ମାଆ, ପରିବାର ପରିଜନ, ସାଇପଡ଼ିଶାର ଲୋକେ ଯେଉଁ ଭାଷା କୁହନ୍ତି ତାହାକୁ କୁହାଯାଏ ମାତୃଭାଷା । ଲକ୍ଷଲକ୍ଷ ଲୋକଙ୍କ ପାଖରେ ସେହି ଜ୍ଞାନ (ଯେକୌଣସି ଜ୍ଞାନ) କେବଳ ମାତୃଭାଷା ମାଧମରେ ହିଁ ପହଞ୍ଚାଇ ଦେଇ ହେବ । ଏଭଳି ପହଞ୍ଚାଇବା ପାଇଁ ଯେତିକି ସର୍ବନିମ୍ନ ସାମର୍ଥ୍ୟ ଲୋଡ଼ା ସେ ସାମର୍ଥ୍ୟ ମାତୃଭାଷା ଭିତରେ ଥିବା ଆବଶ୍ୟକ ।

ଭାବର ଆଦାନ ପ୍ରଦାନ କରିବାପାଇଁ ଭାଷା ଗୋଟିଏ ମାଧମ । ଉନ୍ନତ ଚିନ୍ତା ଓ ଭାବନା ସଂପନ୍ନ ଯେଉଁ ମାନବ ଗୋଷ୍ଠୀ ଯେତେ ଅଧିକ ଶବ୍ଦସୃଷ୍ଟି କରିପାରିଲେ ସେହିମାନଙ୍କର ଭାଷା ସେତେ ଉନ୍ନତ ବୋଲି କୁହାଗଲା । ଭାବ ପ୍ରକାଶ ପାଇଁ କଥାଟାକୁ ବୁଝାଇଦେବାପାଇଁ ଯେଉଁ ଭାଷାରେ ଯେତେ ଶବ୍ଦ ରହିଛି, ସେ ଭାଷା ସେତେ ସମୃଦ୍ଧ ବୋଲି କହିବା ସ୍ୱାଭାବିକ । ଅନ୍ୟ ଭାଷାରେ କହିବାକୁ ଗଲେ, ପ୍ରତ୍ୟେକ ଶବ୍ଦ ହୋଇଗଲା ଗୋଟିଏ ଗୋଟିଏ ମୂଲ୍ୟବାନ ସଂପଦ । ଯାହାର ଶବ୍ଦ ସଂପଦ ଯେତେ ଅଧିକ ତାହାର ସମ୍ମାନ ସେହି ପରିମାଣରେ ବଢ଼ିଲା । ସଭ୍ୟତା ବା ସମାଜର ଉନ୍ନତିର ମାପକାଠି ହୋଇଗଲା ଭାଷା ।

ଭାଷା ଯେ ନିଜର ମନକଥାକୁ ଅନ୍ୟକୁ କହିବାପାଇଁ ମନୁଷ୍ୟକୁ କେବଳ ସାମର୍ଥ୍ୟ ଦେଲା ତା ନୁହେଁ, ତାହାରି ଜରିଆରେ ସଂସ୍କୃତିର ମଧ୍ୟ ବିକାଶ ଘଟିପାରିଲା ।



# ଆମ ଭାଷା

ଯାହା ସାଧାରଣତଃ ଆମେ କହୁ ବା ଲେଖୁ, ଆମର ଚିନ୍ତା ବା ଭାବନା ପ୍ରକାଶ କରିଥାଉଁ ତାହାହିଁ ଆମର ଭାଷା । ଯେଉଁ ଭାଷାର ଶବ୍ଦ ସମ୍ଭାର ଯେତେ ବେଶି ଭାବପ୍ରକାଶ କରିବାରେ ତାହା ସେତେ କ୍ଷମ ଏବଂ କାଳକ୍ରମେ ସେହି ଭାଷାର ସାହିତ୍ୟ ଋଦ୍ଧିମନ୍ତ ହୋଇଥାଏ । ସାହିତ୍ୟିକ ଓ ଭାଷାବିତ୍‌ମାନେ ଭାବଦ୍ୟୋତକ ନୂଆ ଶବ୍ଦଟିଏ ପାଇଲାକ୍ଷଣି, ହେଉଥାଉ ପଛକେ ତାହା ବିଦେଶୀ, ନିଜ ଭାଷାରେ ତାହା ପ୍ରଚଳନ ପାଇଁ ଗ୍ରହଣ କରି ନିଅନ୍ତି । ଇଂରେଜୀ ଭାଷା ଫରାସୀ ଭାଷାରୁ ବହୁ ଶବ୍ଦ ଗ୍ରହଣକରି ନିଜର ଶବ୍ଦ ସମ୍ଭାର ପୁଷ୍ଟ କରିଛି । ଓଡ଼ିଆ ଭାଷାରେ ବହୁ ପାରସିକ ଶବ୍ଦ ଗୃହୀତ ହୋଇଛି । କିନ୍ତୁ ଦୁଃଖର କଥା, ଆମର ଏକାନ୍ତ ଆପଣାର ଭାଷା ଅର୍ଥାତ୍ ଆମ ଓଡ଼ିଶାର ପଶ୍ଚିମାଞ୍ଚଳରେ ପ୍ରଚଳିତ ଶବ୍ଦାବଳୀ ମଧ୍ୟରୁ ଗୋଟିଏ ହେଲେ ଶବ୍ଦ ଓଡ଼ିଆ ସାହିତ୍ୟରେ ମିଶିଥିବାର ଆଖିରେ ପଡ଼େ ନାହିଁ ।

ଭାଷାର ଶ୍ରୀବୃଦ୍ଧି ଓ ଭାବପ୍ରକାଶ କରିବା ନିମନ୍ତେ ଉପଯୁକ୍ତ ଶବ୍ଦାବଳୀ ଚୟନ ପାଇଁ ସାହିତ୍ୟିକ ଓ ଭାଷାବିତ୍‌ମାନଙ୍କ ଦାୟିତ୍ୱ ସର୍ବପ୍ରଧାନ । ଆମ ରାଜ୍ୟର ପଶ୍ଚିମାଞ୍ଚଳ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର ପ୍ରଭୃତି ଜିଲ୍ଲାମାନଙ୍କର କଥିତ ଭାଷାରେ ଅସଂଖ୍ୟ ଭାବ ପ୍ରକାଶକ ସୁନ୍ଦର ଶବ୍ଦାବଳୀ ଅଛି । ଏଥିପାଇଁ ଆମର ଭାଷାବିତ୍ ଓ ସାହିତ୍ୟିକମାନେ, ପ୍ରଧାନତଃ ପଶ୍ଚିମାଞ୍ଚଳର ଲେଖକମାନେ ଦାୟୀ । ଅବଶ୍ୟ, ଏହାର ପ୍ରତିବନ୍ଧକ ହେଉଛି ଯାତାୟାତ ପଥ ଓ ଯୋଗାଯୋଗର ବାସ୍ତବ ଅଭାବ ହେତୁ । ଆହୁରି ମଧ୍ୟ ପଶ୍ଚିମ ଓଡ଼ିଶା ଜନସାଧାରଣଙ୍କ ସହିତ ଓଡ଼ିଶାର ଅନ୍ୟ ଅଞ୍ଚଳର ଲୋକଙ୍କ ନିୟତ ଓତଃପ୍ରୋତଃ ମିଳାମିଶା ଘଟିପାରୁ ନାହିଁ । ମାତ୍ର ଉପରୋକ୍ତ ପ୍ରତିବନ୍ଧକ ଦୂରୀଭୂତ ହୋଇ ରେଳ ଓ ମଟର ପଥ ପଡ଼ିଗଲେ, ସମସ୍ତଙ୍କ ସହିତ ମିଳାମିଶା ସହଜରେ ହୋଇପାରିବ ଏବଂ ଜାତିର ସାମାଜିକ, ଆର୍ଥନୀତିକ, ଭାବଗତ, ଭାଷାଗତ, ଧାର୍ମିକ ଓ ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠା ହୋଇପାରିବ । ତାହା ସହିତ ଉନ୍ନତ ଗମନା

ଗମନ ଓ ଯୋଗାଯୋଗ ବ୍ୟବସ୍ଥା ହୋଇ ସାମାଜିକ ପ୍ରଗତିକୁ ଦ୍ରୁତତର ଓ ଦୃଢ଼ତର କରି ଭୌଗୋଳିକ ଦୂରତ୍ୱ ଏବଂ ଆଞ୍ଚଳିକ ମନୋଭାବକୁ ସଂପୂର୍ଣ୍ଣରୂପେ ଦୂର କରିବ ।

ଦୁର୍ଭାଗ୍ୟର କଥା ପଶ୍ଚିମାଞ୍ଚଳର କେନ୍ଦ୍ର ସମ୍ବଲପୁରକୁ ଯିବାକୁ ହେଲେ ପୂର୍ବାଞ୍ଚଳର ଲୋକଙ୍କୁ ପଶ୍ଚିମବଂଗ ଓ ବିହାର ମଧ୍ୟଦେଇ ଯିବାକୁ ପଡୁଛି । ଏହିପରି ଯଖପୁରା ସହିତ ବାଉଁଶପାଣି, କୋରାପୁଟ ସହିତ ରାୟଗଡ଼, ସମ୍ବଲପୁର ସହିତ ତାଳଚେର ସଡ଼କପଥ ଓ ରେଳପଥ କାର୍ଯ୍ୟକାରୀ ହୋଇଗଲେ ପଶ୍ଚିମ, ପୂର୍ବ, ଉତ୍ତର ଓ ଦକ୍ଷିଣ ସହିତ ଯାତାୟାତ ଶୀଘ୍ର ସୁଗମ ହେବ ଏବଂ ଉଭୟ ସହର ଓ ଗ୍ରାମାଞ୍ଚଳରୁ ମହା ଯୋଗାଯୋଗ ସ୍ଥାପିତ ହୋଇଯିବ । ଏହା ସହିତ ଖୋର୍ଦ୍ଧା ସହିତ ବଲାଙ୍ଗୀରର ଯୋଗାଯୋଗ ସ୍ଥାପିତ ହୋଇଗଲେ, ସମଗ୍ର ଓଡ଼ିଶାର ଲୋକେ ପରସ୍ପର ସହିତ ମିଳାମିଶା କରିବାର ସୁଯୋଗ ଲାଭ କରିବେ । ଏହାଦ୍ୱାରା ଆମର ଭାଷାଗତ, ଭାବଗତ ଅନୈକ୍ୟ ବହୁ ପରିମାଣରେ ଦୂରୀଭୂତ ହୋଇପାରିବ । ଉଭୟ ଅଞ୍ଚଳର ଲୋକେ ପରସ୍ପର କଥିତ ଭାଷା ସଂପର୍କରେ ଆସିଲେ ଭାଷା ପାଇଁ ଶବ୍ଦାବଳି ଚୟନ ପ୍ରଶସ୍ତ ହେବ । ଏହି ହେତୁରୁ ଏହି ଉଭୟ ଅଞ୍ଚଳର ଲୋକେ ଏକ ରାଜ୍ୟର ହୋଇଥିଲେ ହେଁ ପରସ୍ପର ପରସ୍ପରକୁ ଯେଉଁ ପରଦେଶୀ ରୂପେ ପ୍ରତିହତ ହୁଅନ୍ତି, ଏଭଳି ଭାବ ଦୂରୀଭୂତ ହୋଇ ଅଶେଷ ମଂଗଳ ସାଧିତ ହେବ ।

ଆମ ପଶ୍ଚିମାଞ୍ଚଳ ଭାଷାରେ ଭାବପ୍ରକାଶକ ସୁନ୍ଦର ଶବ୍ଦାବଳୀ ଥିଲେ ହେଁ, ଏହି ଶବ୍ଦ ଗୁଡ଼ିକ ଓଡ଼ିଶାର କଥିତ ଓ ଲିଖିତ ଭାଷାରେ ସାମିଲ୍ ହୋଇଗଲେ, ଓଡ଼ିଆ ଭାଷାର ଶବ୍ଦସମ୍ଭାର ବଢ଼ନ୍ତା ଓ ଭାବ ପ୍ରକାଶରେ ପ୍ରଭୂତ ସାହାଯ୍ୟ କରନ୍ତା । ସେ ଗୁଡ଼ିକ ମଧ୍ୟରୁ କେତେକ ଶବ୍ଦ ଉଦାହରଣ ସ୍ୱରୂପ ସାହିତ୍ୟିକମାନଙ୍କ ଦୃଷ୍ଟି ଆକର୍ଷଣ ନିମନ୍ତେ ନିମ୍ନରେ ପ୍ରଦତ୍ତ ହେଲା –

୧. ବାବୁ, ୨. ନନୀ – ପଶ୍ଚିମାଞ୍ଚଳରେ ଛୋଟଛୋଟ ପୁଅପିଲାଙ୍କୁ 'ବାବୁ' ଓ ଛୋଟଛୋଟ ଝିଅମାନଙ୍କୁ 'ନନୀ' ବୋଲି ଡକାଯାଏ । ସେହିପରି ବଙ୍ଗଳାରେ ଛୋଟଛୋଟ ପୁଅପିଲାଙ୍କୁ 'ଖୋକା' ଓ ଛୋଟଝିଅକୁ 'ଖୁକୀ' ବୋଲି ଡକାଯାଏ । କିନ୍ତୁ ଓଡ଼ିଆଭାଷାରେ ସେପରି କିଛି ଶବ୍ଦର ପ୍ରଚଳନ ନାହିଁ । ଉପରୋକ୍ତ ଶବ୍ଦ ଦୁଇଟିର ପ୍ରଚଳନ ଓଡ଼ିଆ ସାହିତ୍ୟର ଏହି ଅଭାବ ପୂରଣ କରିବ ଏବଂ ଲିଖିତ ଓ କଥିତ ଭାଷାରେ ଏହି ଦୁଇଟି ଶବ୍ଦ ଆମ ଭାଷା ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିବ ।

୩. ହୁଟୁନ୍ନା - ଇଂରାଜୀ ଭାଷାରେ ଚ୍ୟାଲେଞ୍ଜ ଶବ୍ଦର ପ୍ରତିଶବ୍ଦ (ସିନୋନମି) ଓଡ଼ିଆ ଭାଷାରେ ନାହିଁ । ଆମ ପଶ୍ଚିମାଞ୍ଚଳ ଭାଷାରେ ଏହାର ଓଡ଼ିଆ ପ୍ରତିଶବ୍ଦ ହେଉଛି 'ହୁଟୁନ୍ନା' । ଜଣେ ଜଣକୁ ପ୍ରତିଦ୍ୱନ୍ଦ୍ୱିତା କ୍ଷେତ୍ରରେ ସମ୍ମୁଖୀନ ହେବାକୁ 'ହୁଟୁନ୍ନା' କହି ଡାକରା ଦିଏ ।

ସେହିପରି ନିମ୍ନରେ ଅସଂଖ୍ୟ ପଶ୍ଚିମାଞ୍ଚଳ ଶବ୍ଦ ଗୁଡ଼ିକ ସହିତ ଏହାର ବ୍ୟବହାରିକ ଓ ଭାବ ପ୍ରକାଶଗତ ଅର୍ଥ ଦିଆଗଲା ।

୪. ଡୁଙ୍ଗ୍ରି - କ୍ଷୁଦ୍ର ପାହାଡ଼

୫. ଡୁଙ୍ଗିବା - ଲୁଚିଛପି ଅନେଇବା

୬. ଲେଡି - ପାଚିଲା ଆମ୍ବ

ନରିଆ - ଜଳଯୋଗାଇବା ବ୍ୟକ୍ତି (ଭୃତ୍ୟ)

ବଦ୍‌କି ଦବୀ - ଦୌଡ଼ି ପଳେଇବା

ଝୁରି - ଛୋଟଛୋଟ ଚୂନାମାଛ

ଦହି - ବସାଦହି

ମହି - ଘୋଳଦହି

ବଣା - ଲାଞ୍ଜଖଣ୍ଡିଆ କୁକୁର

ପାଙ୍ଗିବା - ଡାହାଣୀ ଖାଇଯିବା

ପାଙ୍ଗିନୀ - ଡାହାଣୀ

ବାଦଲ - ମେଘ ମଳେଇ, ମେଘଖଣ୍ଡ

ଝୁମ୍ରା - ଢୁଳ

ଝୁମ୍ରେଇବା - ଢୁଳେଇବା

ଝୁମ୍ରାଲାଗୁଛି - ଢୁଳ ମାଡୁଛି

ତନ୍ଦରା - ତରତର ହେବା

ତଳରଉଛି - ତରତର ହେଉଛି

ଟାଙ୍ଗର - ପଥର କୁଦ

କରା - କୁଆପଥର

ପାତଲ ଘଣ୍ଟ - ବିଲାତି ବାଇଗଣ, ଟମାଟୋ

ନିକୋ - ଭଲ, ଆଚ୍ଛା, ସୁନ୍ଦର

ମର୍‌ନୁ - ଯଥାସାଧ୍ୟ

ମଂର୍‌ନୁ ଖାଇଛି - ଆକଂଣ୍ଠ ଖାଇଛି

ବନେ - ଭଲ, କିପରି ଅଛ ?-

ଟୁରା - ଛେଉଣ୍ଡ (ମାଆବାପା ମରିଯାଇଥିବା ପୁଅପିଲା)

ଟୁରୀ - ଛେଉଣ୍ଡ (ଝିଅ)

ସୁଆଦୀ - ସ୍ୱାଦୁଯୁକ୍ତ (ସୁଆଦୀ ଆମ୍ବ)

ଉଷତ୍ - ଆନନ୍ଦିତ, ସ୍ଫୁର୍ତ୍ତିଯୁକ୍ତ

ନିସତ୍ - କ୍ଲାନ୍ତ, ଅସୁଆ

ନିସତ୍ ଲାଗୁଛି - କ୍ଲାନ୍ତି ଲାଗୁଛି

ପୁଡ୍ରା - ମହିଷି ବାଛୁଣୀ

ପରଘାନ୍ - ପଟୁଆରରେ ଆସୁଥିବା ବରପକ୍ଷଙ୍କୁ ବାଜା ପ୍ରଭୃତି ନେଇ ଖଣ୍ଡେ ବାଟକୁ ଯାଇ ନିମନ୍ତ୍ରଣ କରି ଆଣିବା କ୍ରିୟା । ପଶ୍ଚିମଓଡ଼ିଶାର ଏହା ଏକ ପ୍ରଚଳିତ ଚିରାଚରିତ ପ୍ରଥା ।

ଲଲୋଥପୋ - ଦୁର୍ବଳ ଲୋକ 'ଅଣ୍ଟା ନଡ଼ବଡ଼ ବାଉଁଶ କଣି'

ଛିନିକ୍ ଛିନା - ଡଉଳ ଡାଉଲ, ସୌକ୍‌ବାଜ୍ (ବିଶେଷତଃ ସୁନ୍ଦରୀ ସ୍ୱାସ୍ଥ୍ୟଯୁକ୍ତା ଯୁବତୀ ସ୍ତ୍ରୀଲୋକଙ୍କ ପ୍ରତି ଏହା ବ୍ୟବହାର ହୋଇଥାଏ ।)

ଦୁଃଖେଇବା - ପୀଡ଼ାହେବା

ଦୁଃଖାଲି ପଡ଼ିବା - ରୋଗରେ ପଡ଼ିବା

ଦୁଃଖଉଛି - ପୀଡ଼ା ଦେଉଛି

ତପୁଛି - ଗରମ ହେଉଛି

ତପତଭାତ - ଗରମ ଭାତ

ଘତେଇବା - ଜଣକ ପଛରେ ଲାଗି ରହିବା, ଦୃଷ୍ଟି ରଖିଥିବା

ଘିଚିବା - ଟାଣିବା ଓଟାରିବା (ଘଷାଡ଼ିବା)

ଫପସା - ଯାହା ନିଦା ନୁହେଁ

ଆଣ୍ଟସାଣ୍ଟ - ନିଦା, ଫପସାର ବିପରୀତ

ଅସ୍କଟ୍ - ଆବର୍ଜନା, ବିରକ୍ତିଜନକ

ଅସ୍କଟେଇବା - ବିରକ୍ତ କରିବା

ଚୁମା - ଚୁମ୍ବନ

ଉପନ - ଠାକୁରଙ୍କ ପାଇଁ ବଡ଼ଭୋଗ (ରଥପର୍ବରେ)

ଟାକିବା - ଲକ୍ଷ୍ୟକରିବା

ଭୋଜି - ଫିଷ୍ଟ

ଲହ୍ଲେଇବା - ହେଳା କରିବା, ଭଲ କାମ ନ କରିବା

ଅଥା - ଥକା

କିଲ୍ଲାଗୁଗା - ପାଟିଗୋଳ

କିଲ୍ଲେଇବା - ଜୋର ବଡ଼ ପାଟିକରିବା, ଚିତ୍କାର କରିବା

ନିଯୁଖାଏ - ଅସାମାଜିକ, ଦେଢ଼ଶୁର ଭାଇବୋହୂ କଥାବାର୍ତ୍ତା ହେବାକୁ

ରଂଗିବା - ଘୁଷୁରିବା (ବୁଲିବା) ଜିଆ ରଂଗିଲେ ବରଷା ହେବାର ସମ୍ଭାବନା ।

ପହଟି ଯିବା - ଅଭ୍ୟସ୍ତ ହୋଇଯିବା ।

ଛିଙ୍ଗଲ - ରନ୍ଧ୍ର

ଛିଙ୍ଗଲେଇବା - ଗଳେଇବା

ଗବେଇବା - କୌଣସି ଗୋଜିଆ କାଠ ବା ବାଉଁଶ ବା ଲୁହା ଜୋରରେ ନିକ୍ଷେପ କରିବା ବା ବଳପ୍ରୟୋଗ କରି ଭୂଇଁରେ ପୋତିବା । (ଖଣତିରେ ଗାତକରି ପୋତିବା ନୁହେଁ ।)

ଗୁହେରଗୁହେର - ବିପଦରେ ପଡ଼ି ଅନ୍ୟମାନଙ୍କଠାରୁ ସାହାଯ୍ୟ ପାଇ ପାଇଁ ଚିତ୍କାର କରିବା । ଏହି ଶବ୍ଦ ଶୁଣିଲେ ବିପଦଗ୍ରସ୍ତ ଲୋକକୁ ଉଦ୍ଧାର କରିବାକୁ ଦୌଡ଼ି ଆସନ୍ତି / ସାହାଯ୍ୟ ପାଇଁ ବିପଦଗ୍ରସ୍ତ ଲୋକର କରୁଣ ଆର୍ତ୍ତନାଦ / ସାଧାରଣତଃ ବଣ ରାଇଜରେ ବାଘ ହାବୁଡ଼ରେ ପଡ଼ିଲେ ଲୋକେ ଏହିପରି ଡାକ ଛାଡନ୍ତି ।

ଗୁନ୍ଦଲ୍ - ଗୋଳିଆ ବା ମଇଳା କରିବା । ପାଣିକୁ ଗୁନ୍ଦଲଉଛ କାହିଁକି ?

ଝୋ ଝୋ ବର୍ଷା - ଘୋର ବର୍ଷା ।

ପଣ୍ଡ୍ରା - ଗୋରା

ଅବ୍‌ଘା - କେବଳ, ଖାଲି (ଅବଘା ଧାନ, ଖାଲି ଧାନ)

କଲେକଲ - ଆସ୍ତେ (ସେ ଏପରି କଲେକଲ ଆସିଲା ଯେ ମୁଁ ଆଦୌ ଜାଣିପାରିଲି ନାହିଁ ।)

ଜୁଇ - ନିଆଁ

ତାପିବା - ପୋଇଁବା (ନିଆଁ ପୋଇଁବା)

ପରଦେଶୀ - ଭିନ୍ନ ରାଜ୍ୟର ଲୋକ

ସପୁର୍ - ସରୁ (ସପୁର୍ ଚାଉଳ, ସପୁର୍ ଧାନ)

ଲହଙ୍କିବା - ଅତିକ୍ରମ କରିବା (କ୍ଷୀଣ ସ୍ରୋତାନଦୀ ଓ ପାହାଡ଼ ଚାଲିଚାଲି ଅତିକ୍ରମ କରିବା)

ଛେଦ ଛେଦାନି - ସବାଶେଷକୁ (ଶେଷ ଭାଗ, ଅବଶିଷ୍ଟ ଯାହା ବଳେ)

ଭନ୍ଦୋ - ବୋକା

ଡିଣ୍ଡା - କୁମାର (ଅବିବାହିତ ପୁରୁଷ)

ବୁରୋ - ବରକୋଳି

ଚକନି - ଶାଳପତ୍ରରେ ନିର୍ମିତ ଠୁଙ୍ଗା, ଏହା ବେଲା ଆକୃତି । ଏହାକୁ ଭୂଇଁ ଉପରେ ରଖି ଏଥିରେ ଭାତ, ଜାଲି, କ୍ଷୀରି, ତରକାରୀ ସୁବିଧାରେ ଖାଇହୁଏ ।

ଶିକାର - ମାଂସ (ଆମର ଆଜି ଶିକାର ତରକାରୀ ହୋଇଥିଲା)

ଲିଆ - ଖଇ

ଲଲେହିବା - ଅସମର୍ଥ ଓ ଆଳସ୍ୟ ପରାୟଣ ସ୍ୱଭାବ ପ୍ରକାଶ କରିବା ।

ଦୁଟୁରା - ହରିଣ ଛୁଆ

ଚେନ୍ଦ୍ରି - ଛିଣ୍ଡାକନା

ହଦ୍ରା - ଆଶ୍ଚର୍ଯ୍ୟ (ମୁଁ ତାଙ୍କ କଥା ଶୁଣି ହଦ୍ରା ହେଲି)

ଖେଦିବା - ତଡ଼ିବା

ଖଙ୍ଗିଯିବା, ଖଙ୍ଗିବା - କମିଯିବା

ଛାଡ୍ରୀ - ସ୍ୱାମୀଛଡ଼ା (ଯେ ବାରମ୍ବାର ସ୍ୱାମୀ ଛାଡ଼ି ଅନ୍ୟ ପୁରୁଷ ଗ୍ରହଣକରେ)

ପାଓଁଲାଗେ - ପାଦ ସ୍ପର୍ଶକରି ଓଳଗି ହବା / ନମସ୍କାର ହେବା

ମରନୁ ଖାଇଛି - ଆକଣ୍ଠ ଖାଇଛି

ଗୋରସ - ଦୁଧ, ପଶ୍ଚିମ ଓଡ଼ିଶାର ସମସ୍ତେ ଦୁଧକୁ ଗୋରସ କହିବାରେ

ଅଭ୍ୟସ୍ତ

କ୍ଷୀରସା - ଛେନା

ବଡ଼େନ - ଭାରିତ (ମୋ ଘଡ଼ିକୁ ନେଇଯାଇ ପିନ୍ଧିଛି, ବଡ଼େନ!)

କିନ୍ଦ୍ରେଇବା - ବୁଲେଇବା (ମୋର ମୁଣ୍ଡ କିନ୍ଦ୍ରେଉଛି)

ଫେକାରି - ଫେରଣ୍ଡା ମାରୁଥିବା ଶୃଗାଳ

ପ଼ଦେଇବା - ଚଲେଇବା (ତୁମେ ମୋତେ କେତେଥର ପଦେଇଲଣି କହତ!)

ଲାଜଲଜନା - ଲାଜକୁ ସରମକୁ

ଡର୍ହୁ - ଡରୁଆ

ନିଖାଉଁ - ଖାଉଁନା, ଖାଇବୁ ନାହିଁ

ଗାରା କାଟିବା - ଶିକାର ପାଇଁ ବାଘକୁ ଆକୃଷ୍ଟ କରିବାକୁ ବନ୍ଧା ହୋଇଥିବା ପଶୁକୁ ବାଘ ମାରିବା । ଏହି ସମୟରେ ଶିକାରୀମାନେ ଆସି ବାଘକୁ ମାରିବାର ବ୍ୟବସ୍ଥା କରିବା ।

ଛେକିବା - ଓଗାଳିବା

ଡେରାଘର - ସରକାରୀ ଲୋକେ ଏବଂ ଅତିଥି ଅଭ୍ୟାଗତ ଯେଉଁଘରେ ଆସି ରହନ୍ତି ।

ଉଷ୍ମା - କ୍ରୋଧବଶ

ବିଦିବା - ମାନସିକ କରିବା (ମୁଁ ଠାକୁରଙ୍କୁ ଭୋଗ ଦେବାକୁ ବଦିଛି)

ପରଝିବା - ବଘାରିବା

ମୁଖଫଳି - ଚିନାବାଦମ

ବିରଝୀବା - ବିରକ୍ତ ହେବା

ବିଦ୍ରିଯିବା - ଖଣ୍ଡଖଣ୍ଡ ହୋଇଯିବା

ଆଲେଆଲ - ସହଜରେ, ଅକ୍ଲେଶରେ, ଅନାୟାସରେ

ନେତ୍ରା - ଅଇଣ୍ଠା, ମାରା

ଉନିଆ - ଆଲୋକ (ବତୀଜାଳ)

ଉକିଆକର - ଆଲୋକିକ କର

ପଣ୍ଡେଇ - ଜୋତା

ଗୁଡ଼ି - ମନ୍ଦିର

ଗୁନ୍ଦଲିଆ - ଗୋଳିଆ

ପାଁହଟିଯିବା - ଅଭ୍ୟସ୍ତ ହୋଇଯିବା

ଚାଲ - ଚାଳ

ଏଥିରୁ ସ୍ପଷ୍ଟ ଅନୁମେୟ ହୁଏ ଯେ, ପଶ୍ଚିମାଞ୍ଚଳ ଭାଷାରେ ହଳନ୍ତ ବ୍ୟବହାରର ବହୁଳତା ଥିବାବେଳେ ପୂର୍ବାଞ୍ଚଳରେ ହଳନ୍ତ ବ୍ୟବହାର ପ୍ରାୟ ହୁଏନାହିଁ । ଏହି ଶବ୍ଦାବଳିକୁ ଓଡ଼ିଆ କଥିତ ଓ ଲିଖିତ ଭାବରେ ବ୍ୟବହାର କଲାବେଳେ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ, ଯେପରି ଭାଷା ଅସୁନ୍ଦର କି ଭାବପ୍ରକାଶର ସ୍ୱାଭାବିକତା ନଷ୍ଟ ନହେବ । ତା' ସହିତ ଓଡ଼ିଶା ଭାଷାର ମୌଳିକତା, ଠାଣି ସହିତ଼ ଖାପଖୁଆଇ ଏହାକୁ ସର୍ବଜନାଦୃତ କରିବାକୁ ହେବ । ଏଥିପାଇଁ ଆଞ୍ଚଳିକ ସହଯୋଗ, ଯୋଗାଯୋଗ ତଥା ଉଦାର ମନୋଭାବ ଆବଶ୍ୟକ । ତା'ହେଲେ ଉତ୍କଳର ଜାତୀୟ ଏକତା, ରାଷ୍ଟ୍ରୀୟ ଅଖଣ୍ଡତା, ରାଜନୀତିକ ସ୍ଥିରତା, ଆର୍ଥନୀତିକ ବିକାଶ ସମ୍ଭବ ହେବ ।



# ଗୋବଧ ନିଷେଧ

ଶାସ୍ତ୍ର ପୁରାଣରୁ ଜଣାଯାଏ, ଆର୍ଯ୍ୟମାନେ ଗୋମାଂସ ଭକ୍ଷଣ କରୁଥିଲେ । ଗୋମେଧ ଯଜ୍ଞ ଅନୁଷ୍ଠିତ ହେଉଥିଲା । କିନ୍ତୁ ଯେତେବେଳେ ଦେଖାଗଲା ଯେ, ଗୋରୁ କାନ୍ଧ ଉପରେ ଦେଶର ଶସ୍ୟ ଉତ୍ପାଦନ ନିର୍ଭର କରୁଛି । ସେତେବେଳେ ସମାଜରେ ଗୋଜାତିକୁ ଧ୍ୱଂସମୁଖରୁ ରକ୍ଷା କରିବାକୁ ଏବଂ ଗୋବଧ ନିବାରଣ କରିବାକୁ ଗୋମାଂସ ଭକ୍ଷଣ ନିଷିଦ୍ଧ ହେଲା । ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ, ଆର୍ଯ୍ୟମାନେ ପ୍ରଥମେ ଗୋରୁକୁ ଦେବତା ବୋଲି ପୂଜା କରୁନଥିଲେ । ଏହାର ଉପକାରିତା ହୃଦୟଙ୍ଗମକରି ଗୋରୁକୁ ଗୋମାତା ବୋଲି ଆଖ୍ୟା ଦିଆଗଲା ସାଧାରଣ ଜନତା ଚିତ୍ତରେ ଗୋରୁର ସୁରକ୍ଷା ପାଇଁ । ସେତେବେଳେ ସମାଜରେ ସମସ୍ତ ଆଇନକାନୁନ ଶାସ୍ତ୍ର ଆକାରରେ ଲିଖିତ ହୋଇ ପ୍ରଚାରିତ ହେଉଥିଲା । ଏଥିରୁ ପରିଷ୍କାର ବୁଝାଯାଏ, ଭୂଦେବଙ୍କ ଗୋବଧ ନିବାରଣ ପାଇଁ ପ୍ରଯତ୍ନ କରିବେ । ଗୋସଂପଦ ଅଭାବରେ ଭୂମି ଆକର୍ଷିତ ରହିବା ସହିତ ନିରାମିଷ ଆହାରୀ ହୋଇ ଏ ଦେଶର ଲୋକେ ଦୁଗ୍ଧଜାତୀୟ ଖାଦ୍ୟ ଖାଇବାରୁ ବଞ୍ଚିତ ହେବେ ।

ଅନ୍ୟଦେଶ ତୁଳନାରେ ଭାରତବର୍ଷରେ ଗୋଜାତି ପ୍ରତି ଯଥେଷ୍ଟ ସମ୍ମାନ ଓ ଭକ୍ତି ଅଧିକ । ଅନେକ ଗୋରୁ ଅଭାବରୁ ସେମାନଙ୍କ ଚାଷଭୂମି ଚାଷ କରିପାରୁ ନାହାଁନ୍ତି । ଗୋରୁ ଗାଈ ବର୍ତ୍ତମାନ ଆଜି ଦୁର୍ଲଭ ଏବଂ ଦୁର୍ମୂଲ୍ୟ । ବର୍ତ୍ତମାନ ଯେତେ ଉଚ୍ଚମୂଲ୍ୟ ଯାଚିଲେ ମଧ୍ୟ ଶିଶୁ ଓ ରୋଗୀଙ୍କ ପାଇଁ ଦୁଗ୍ଧ ଗୋପିଏ ମିଳିବା ମୁସ୍କିଲ ।

ସମ୍ବାଦପତ୍ର ମାନଙ୍କରେ କେତେକଙ୍କର ମତବାଦକୁ ସାଂପ୍ରଦାୟିକ, ଧର୍ମନିରପେକ୍ଷତା ବିରୁଦ୍ଧ ବୋଲି କହୁଛନ୍ତି । କିନ୍ତୁ ଏହା ଆଦୌ ତାହା ନୁହେଁ, ଏହା ଏକାନ୍ତ ଭାବେ ଆର୍ଥିକ ଏବଂ ·ଦେଶପକ୍ଷରେ ପରମ ହିତକର । ଯୁଦ୍ଧ ସମୟରେ ଦେଶକୁ ପ୍ରାଣ ସଂକଟରୁ ରକ୍ଷା କରିବାକୁ ବ୍ଲାକ୍ଆଉଟ୍‌ର ପ୍ରବର୍ତ୍ତନ କରାଯାଇଥାଏ ଏଥିପାଇଁ ଦୀପାବଳୀ ନଜାଳି ହେଲା ବୋଲି କେହି ଆପତ୍ତି କରିନଥିଲେ ।

କେତେକ ଦେଶ୍ମାନିରେ (ରାଜ୍ୟରେ) ଆଇନ୍ ପ୍ରଚଳିତ ଯେ ୧୦ ବର୍ଷ କିମ୍ବା ୧୪ବର୍ଷରୁ ଊର୍ଦ୍ଧ୍ୱ ଗାଈଗୋରୁଙ୍କୁ ମାଂସ ସକାଶେ ବଧ କରାଯାଇ ପାରିବ । ଏହାରି ବଳରେ ଯେଉଁ ଅସଂଖ୍ୟ ଗୋରୁ ହାଣଖାନ୍ତି ତାଙ୍କୁ କିଏ ତନଖି ଦେଖୁଛି ଯେ ଏମାନେ ୧୦ କି ୧୪ ବର୍ଷରୁ ଊର୍ଦ୍ଧ୍ୱ କି ନା୍? ଏହି ଆଇନ୍‌ବଳରେ କେତେ ଯେ ଗୋସଂପଦ ନିପାତ ହୁଅନ୍ତି ତାହାର ସୀମାନାହିଁ । ଏପରି ଭାବରେ ନିରର୍ଥକ ଆଇନ୍ ରହିଥିବା ଯୋଗୁଁ ବିଷମ ସଂକଟ ଘଟୁଛି । ଏହି ଆଇନ୍ ଗୋରୁଗାଈ ବଂଶନିପାତ କଳ୍ପେ ପ୍ରଣୀତ କିନ୍ତୁ ଏହାରି ଫଳରେ ହିନ୍ଦୁର ସାମାଜିକ, ଧର୍ମୀୟ ଚେତନାର ଧ୍ୱଂସଲୀଳା ଚାଲିଛି । କେବଳ ଏତିକି ନୁହେଁ ବାହାର ରାଜ୍ୟକୁ ମଧ୍ୟ ଗୋସଂପଦର ପ୍ରଚୁର ରପ୍ତାନୀ ହୁଏ । ରପ୍ତାନୀ ହେଉଥିବା ଗୋସଂପଦ ହଣାହୋଇ ମାଂସ ଆକାରରେ ବିକ୍ରୀ ହୁଏ ।

ସାଧାରଣତଃ ଦେଖାଯାଏ କେବଳ ଗୋମାଂସ ବ୍ୟବହାର ଯୋଗୁଁ ଭାରତବର୍ଷରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସାମାଜିକ ବିଭେଦ ତୀବ୍ର ହୋଇଥାଏ । ଭାରତରୁ ଗୋବଧ ନିଷିଦ୍ଧ ହୋଇଗଲେ ଏଇ ବିଭେଦର ତୀବ୍ରତା ଲାଘବ ହୁଅନ୍ତା ।

ପ୍ରକାଶ ଥାଉକି ଆକବରଙ୍କ ରାଜତ୍ୱରେ ଗୋବଧ ନିଷିଦ୍ଧ ଥିଲା । ଶୁଣାଯାଏ ହାଇଦରାବାଦ ନିଜାମଙ୍କ ରାଜ୍ୟରେ ମଧ୍ୟ ଗୋବଧ ନିଷିଦ୍ଧ ଥିଲା ।



# ଉତ୍କଳ ସାହିତ୍ୟ ସମାଜ

'ଉତ୍କଳ ସାହିତ୍ୟ ସମାଜ' ଓଡ଼ିଶାର ପ୍ରାଚୀନତମ ଅନୁଷ୍ଠାନ । ଏହା ୧୯୦୩ ମେ' ମାସ ୭ତାରିଖରେ ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଆଭାଷା ଯେପର୍ଯ୍ୟନ୍ତ ଜୀବିତ ଥିବ ଏହି ଅନୁଷ୍ଠାନ ସେତେଦିନ ଜୀବିତ ଥିବ ଏବଂ ପ୍ରାଣବନ୍ତ ହୋଇ ରହିବା ଏକାନ୍ତ ଆବଶ୍ୟକ ମଧ୍ୟ । ଏହି ଅନୁଷ୍ଠାନ ଦ୍ୱାରା ଓଡ଼ିଆ ଭାଷାର ଅଶେଷ ଶ୍ରୀବୃଦ୍ଧି ଓ ସମୃଦ୍ଧି ସାଧିତ ହେବ । କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କୁ ଛାଡ଼ିଦେଲେ ସାଧାରଣ ଓ ଶିକ୍ଷିତ ଲୋକଙ୍କର ଏହା ସହିତ ପରିଚୟ ନାହିଁ । ଏହାର କାର୍ଯ୍ୟକାରିତା ସହିତ ଏମାନଙ୍କର ଆଦୌ ସଂପର୍କ ନାହିଁ କହିଲେ ଚଳେ । ଏଣୁ ଏହି ଅନୁଷ୍ଠାନକୁ ସକ୍ରିୟ କରି ଏହାଦ୍ୱାରା ଓଡ଼ିଆ ଭାଷା ସାହିତ୍ୟର କିପରି ଶ୍ରୀବୃଦ୍ଧି ସାଧିତ ହେବ, ଏ ଦିଗରେ ବ୍ୟବସ୍ଥା ଅବଲମ୍ବିତ ହେବା ବିଧେୟ ।

ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଉତ୍ସବ କେବଳ କଟକ ନଗରୀରେ ଅନୁଷ୍ଠିତ ନହୋଇ ପ୍ରତିବର୍ଷ ଗୋଟିଏ ଗୋଟିଏ ଜିଲ୍ଲାରେ ଏହା ଅନୁଷ୍ଠିତ ହେଲେ ଭାରି ଉପକାର ହେବ । କେଉଁ ବର୍ଷ କେଉଁ ଜିଲ୍ଲାରେ ଅନୁଷ୍ଠିତ ହେବ, ସେହି ଜିଲ୍ଲାରେ ଲୋକକଥା ଓ କାହାଣୀ, ଲୋକଗୀତି, ଢଗଢମାଳି, ପ୍ରବଚନ ସେ ଅଞ୍ଚଳର ସାହିତ୍ୟିକମାନଙ୍କ କୃତି ଏହି ଉତ୍ସବରେ ଉପସ୍ଥାପିତ ଓ ଆଲୋଚିତ ହେବା ଉଚିତ୍ । ଏହାଦ୍ୱାରା ସେ ଅଞ୍ଚଳର ସଂସ୍କୃତି, ସାହିତ୍ୟ ସହିତ ସଂପର୍କ ସ୍ଥାପିତ ହେବ ଏବଂ ସେ ଅଞ୍ଚଳର ଲୋକେ ଉତ୍ସାହିତ ହେବେ । ସେହି ସଭାରେ ଅନ୍ୟ ଜିଲ୍ଲାର ଲୋକେ ଆସନ୍ତାବର୍ଷର ସଭା ତାଙ୍କ ବା ସେମାନଙ୍କ ଜିଲ୍ଲାରେ ହେବାପାଇଁ ନିମନ୍ତ୍ରଣ ଉପସ୍ଥାପିତ ହେବ । ଆଗତବର୍ଷରେ କେଉଁ ଜିଲ୍ଲାରେ ଏହା ବସିବ ତାହା ଏହି ସଭାରେ ସ୍ଥିରୀକୃତ ହେବ, ଏହାଦ୍ୱାରା ସମଗ୍ର ଓଡ଼ିଶା ସହିତ 'ଉତ୍କଳ ସାହିତ୍ୟ ସମାଜ'ର ଯୋଗସୂତ୍ର ରହିବ ଏବଂ ଲୋକେ ଏହି ଅନୁଷ୍ଠାନଠାରୁ ପ୍ରେରଣା ଲାଭ କରିବେ ।

ଏଥିପ୍ରତି ମୁଁ 'ଉତ୍କଳ ସାହିତ୍ୟ ସମାଜର ଶ୍ରଦ୍ଧେୟ କର୍ମକର୍ତ୍ତା ଓ ଓଡ଼ିଶାର ସାହିତ୍ୟାନୁରାଗୀମାନଙ୍କର ଶୁଭଦୃଷ୍ଟି ଆକର୍ଷଣ କରୁଅଛି ।



# କାମିନୀ ଫୁଲ

ମୋତେ କାମିନୀଫୁଲ ଭାରି ଭଲଲାଗେ । ବର୍ଷା ଝରଝର ସଂଧ୍ୟାରେ ପ୍ରଚୁର ଫୁଟେ, ସୁନ୍ଦର ବାସନାରେ ପୁରା ପ୍ରାଙ୍ଗଣ ରାତିଯାକ ମହକାଏ, ସକାଳକୁ ଝରିପଡ଼ି ଗଛମୂଳେ ଫୁଲର ଶଯ୍ୟାରଚନା କରେ ।

ଆଦ୍ୟ ଆଷାଢ଼ । ଦେଖିଲି ଚାରା ବେପାରୀ କେତେଜାତିର ଫୁଲଫଳର ଚାରା ବିକ୍ରିପାଇଁ ସଜେଇ ଦେଇଛି । ପଚାରିଲି, କାମିନୀଫୁଲ ଚାରା ଅଛି କି ହୋ ? ଚାରା ଦେଖେଇ ଚାରାବାଲା କହିଲା, ହଁ ବାବୁ ବହୁତ ଅଛି । ଗୋଟିଏ କିଣିଲି । ଚାରାବାଲା ଠଉରେଇ ନେଲା ବାବୁଙ୍କର ଫୁଲ ଉପରେ ଭାରି ଶରଧା । ଆଉ ଗୋଟିଏ ଚାରା ବାହାରକରି କହିଲା, ବାବୁ କାମିନୀ ଚାରା ନେଲ, ଆଉ ଏଇ ଚାରାଟି ନିଅ । ଭାରି ଭଲଫୁଲ ସୁଗନ୍ଧରାଜ । ବଡ଼ବଡ଼ ଡଉଲଡାଉଲ ଫୁଲଫୁଟେ । ଗୋଟିଏ ଫୁଲଫୁଟିଲେ ଚାରିଆଡ଼େ ମହକେଇବ । ଯେମିତି ଦେଖିବାକୁ ସୁନ୍ଦର, ବାସନ ସେଇମିତି ଚମତ୍କାର । ଦାମ୍ ଜମା ଟଙ୍କାଟି । କେତେ ଟଙ୍କା କୁଆଡ଼େ ଯାଉଛି । ନେଇକି ଲଗେଇଦିଅ, ଦେଖିବ କିମିତି ବାସନା, କିମିତି ଚହଟ, ସୁନ୍ଦର ଫୁଲ । ଚାରାବାଲାର ପ୍ରଶସ୍ତି ଶୁଣି ଆଣିଲି ଚାରାଟିଏ ।

କାମିନୀ ଚାରାଟିଏ ଏବଂ ସୁଗନ୍ଧରାଜର ଚାରାଟିଏ ଯତ୍ନର ସହିତ ବାନ୍ଧିଦେଇ ମୋତେ ବଢ଼େଇ ଦେଲା । କହିଲା, ଦେଖ ବାବୁ ଚାରା ଲଗେଇବାରେ ଡେରି କରିବ ନାହିଁ । ଚାରା ସହିତ ଯେଉଁ ଦୁଧ ମାଟି ଦିଆ ହୋଇଛି । ସେଥିରୁ ଚାରା କେତେଦିନ ଖୋରାକ ପାଇବ । ଚାରା ଯେଉଁ ମାଟିରେ ପ୍ରଥମରୁ ହୋଇଥାଏ, ସେଇ ମାଟି ସହିତ ଚାରା ଉପୁଡ଼ା ହୋଇ ଆସିଛି ଏଇଆକୁ ଆମେ କହୁଁ ଦୁଧମାଟି । କଅଁଳ ପିଲା ଯେମିତି ମା' ଦୁଧ ଖାଇ ବଞ୍ଚେ, ଚାରାଗଛ ସେଇମିତି ଏଇ ମାଟିରୁ ଖୋରାକ ଖାଇ ବଞ୍ଚେ । ଏଇ ମାଟିରୁ ଚାରାଗଛ କେତେଦିନ ବା ଆହାର ପାଇବ ? ଆଜି ନେଇ ଲଗେଇ ଦେଲେ ଭାରି ଭଲ । ଯଦି ନହୋଇ ପାରିବ, କାଲକି ନିଶ୍ଚେ ଲଗେଇ ଦେବ ।

ଦେଖିବ, ଦୁଧମାଟି ଯେମିତି ଚାରା ମୂଳରୁ ଝଡ଼ି ନଯାଏ – ଦୁଧମାଟି ସହ ଚାରା ମାଟିରେ ରୋପିଦେବ । ଚାରା କେବେ ହାରିବ ନାହିଁ । ଚାରା ବିକ୍ରେତାଙ୍କୁ ଦାମ୍‌ଦେଇ ମୁଁ ଘରକୁ ଫେରିଲି ।

ରାତିଯାକ ଯେପରି କାକର ପଡ଼ିବ ଇମିତି ଜାଗାରେ ଚାରା ଦୁଇଟିକୁ ଥୋଇଦେଲି । ତହିଁ ଆରଦିନ ଥାଏ ଛୁଟି । ସକାଳୁଉଠି କେଉଁଠି ଚାରା ଲଗେଇବି ଜାଗା ଠାବ କରିବାକୁ ଗଲି । ଘରବାରି ଚାରିଆଡ଼ ନଜର ପକେଇ ଜାଗା ଠାବ କରି ଯତ୍ନକରି ଚାରା ଦୁଇଟିକୁ ଲଗେଇ ଦେଲି ।

ଆମ ଘରଚଟାଣ ଖୁବ୍ ପ୍ରଶସ୍ତ । ତା’ଚାରିପଟେ କେତେ ଜାତିର ଗଛ । ଏମାନଙ୍କ ଭିତରେ ଆମ୍ବ ଗଛଟିକୁ ମୋତେ ଭାରି ଭଲ ଲାଗେ । ମାତ୍ର ଦେଢ଼ ମଣିଷ କି ଦୁଇ ମଣିଷ ଉଚ୍ଚ ହୋଇ ରହିଛି ଆଉ ବଢୁନାହିଁ ଜମା । ଏହାର ବିଶେଷତ୍ୱ ହେଉଛି ପ୍ରଥମେ ଏହା ବଉଳେ – ବକୁଳ ବନ୍ଦନା ଏହାରି ମୂଳେ ପ୍ରତିବର୍ଷ ହୁଏ । ଏଥିରେ ବଉଳ ଲଦି ହୋଇଯାଏ । କେବେହେଲେ ହାରେନା । କେଡ଼େ ସୁନ୍ଦର ଏଇ ଉତ୍ସବଟି । ଚୁତ ତରୁ ପ୍ରତି କେଡ଼େ ଗଭୀର ଶ୍ରଦ୍ଧା ଓ କୃତଜ୍ଞତା ଜ୍ଞାପନ । ନିବେଦନ ପ୍ରଚୁର ଫଳ ଧରିବା ପାଇଁ କାମନା । ଆମ୍ବଗଛର ଛାଇ ଯେପରି ନପଡ଼େ । ଏପରି ଜାଗାରେ ଚାରା ଦୁଇଟିକୁ ଯତ୍ନକରି ଲଗେଇ ଦେଲି ।

ପ୍ରତିଦିନ ଉଠି ଦେଖେଁ ଚାରା ଦୁଇଟି କେମିତି ଅଛି ଝାଉଁଳିଛି ନା ତାଜା ଅଛି ? ଚାରା ଦୁଇଟି ବଢ଼ିବାକୁ ଲାଗିଲା । କୋଉଦିନ କଢ଼ ଧରିଫୁଲ ଫୁଟିବ ।



# ଟାଇଟାନିକ ଜାହାଜ

ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ଆମେରିକା ମଧ୍ୟରେ ଯାତ୍ରୀ ଯାତାୟାତ ପାଇଁ ଗୋଟିଏ ଉତ୍କୃଷ୍ଟ ଧରଣର ବାଷ୍ପୀୟ ପୋତ ଏକାନ୍ତ ଆବଶ୍ୟକ ବୋଲି, ଅନୁଭବ କରି ଇଂଲଣ୍ଡର କମ୍ପାନୀ ୧୯୧୨ ଖ୍ରୀଷ୍ଟାବ୍ଦରେ 'ଟାଇଟାନିକ୍' ନାମକ ଏକ ବିରାଟକାୟ ଜାହାଜ ନିର୍ମାଣ ଶେଷ କରିଥିଲେ । ସେ ସମୟରେ ତାହା ହୋଇଥିଲା ସମସ୍ତଙ୍କ ଠାରୁ ବଡ଼ ଓ ତତ୍କାଳୀୟ ସର୍ବାଧୁନିକ ବାଷ୍ପୀୟ ପୋତ । ଯାନ୍ତ୍ରିକ ଓ ଇଂଜିନିଅରିଂ କୌଶଳ ଏଥିରେ ଏପରି ପ୍ରୟୋଗ କରାଯାଇଥିଲା ଯେ, ଗର୍ବର ସହିତ ଘୋଷଣା କରିଥିଲେ ଯେ ଏହା କେବେ ହେଁ ଜଳମଗ୍ନ ହେବନାହିଁ କି ପୋଡ଼ିଯିବ ନାହିଁ । ଏଥିରେ ଟେନିସ୍, ଭଳି ଖେଳିବାପାଇଁ କ୍ରୀଡ଼ା ପ୍ରାଙ୍ଗଣ ଥିଲା । ସନ୍ତରଣ ନିମନ୍ତେ ମଧ୍ୟ ପୁଷ୍କରିଣୀର ବ୍ୟବସ୍ଥା ଓ ଆମୋଦ ପ୍ରମୋଦ ପାଇଁ ବହୁ ଆକାର ପୁସ୍ତକାଗାର, କ୍ଲବ, ହୋଟେଲ, ଭୋଜନାଗାର, ପୋଷ୍ଟଅଫିସ୍ ଆଦି ସକଳ ପ୍ରକାର ସୁବିଧା ଯାତ୍ରୀମାନଙ୍କ ପାଇଁ ଖଞ୍ଜା ହୋଇଥିଲା ଏହି ବିଳାସପୂର୍ଣ୍ଣ ତରୀରେ । ଜଣେ ଯାତ୍ରୀ ପଚାରିଥିଲେ, ସତେ କ'ଣ ଏହା ଅବୁଡ଼ ? ଟାଇଟାନିକ୍‌ର ଜଣେ କର୍ମକର୍ତ୍ତା ଫୁଲେଇ ହୋଇ କହିଥିଲେ, ଭଗବାନ ବି ଇଚ୍ଛାକଲେ ଏହାକୁ ବୁଡ଼େଇ ଦେଇପାରିବେ ନାହିଁ ।



# କୁଳବୃଦ୍ଧ ମଧୁସୂଦନଙ୍କ ଆବକ୍ଷ ସ୍ଥାପନ

କୁଳବୃଦ୍ଧ ମଧୁସୂଦନ ସ୍ୱତନ୍ତ୍ର ଓଡ଼ିଶାର ସ୍ରଷ୍ଟା । ଓଡ଼ିଆ ଜାତିପାଇଁ ତାଙ୍କ ତ୍ୟାଗର ପଟାନ୍ତର ନାହିଁ । କିନ୍ତୁ ଅତୀବ ଦୁଃଖର କଥା, ଯାହାଙ୍କ ପାଇଁ ଆମେ ସ୍ୱତନ୍ତ୍ର ରାଜ୍ୟ ପାଇଲେ, ରାଜଧାନୀ ପାଇଲେ, ସଚିବାଳୟ ପାଇଲେ ହେଲେ, ତାଙ୍କର ଆବକ୍ଷ ପ୍ରତିମାଟି ଏ ପର୍ଯ୍ୟନ୍ତ ରାଜଧାନୀର କେଉଁଠି ହେଲେ ସ୍ଥାପିତ ହେଲାନାହିଁ । ଅନ୍ତତଃ, ସଚିବାଳୟର ପରିସର ମଧରେ ଏକ ସୁବିଧାଜନକ ସ୍ଥାନରେ ତାଙ୍କର ଆବକ୍ଷ ପ୍ରତିମାଟି ସ୍ଥାପିତ ହେବା ଆବଶ୍ୟକ । ଯେପରି ସଚିବାଳୟକୁ ଯେଉଁମାନେ ଯିବେ, ସଚିବାଳୟରୁ ଯେଉଁମାନେ ଫେରିବେ, ସେମାନେ ଯେପରି ଦେଖିପାରିବେ ଓ ଏହାଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବେ, ନତମସ୍ତକ ହେବେ, ଧନ୍ୟହେବେ ଭାବିବେ ଏହି ବ୍ୟକ୍ତିଟି ପାଇଁ ଆମେ ସ୍ୱତନ୍ତ୍ରତା ଲାଭ କରିଛୁ ।

# ଉତ୍କଳ ସମ୍ମିଳନୀ ଓ ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ଲିପି ପ୍ରସଂଗ

'ଉତ୍କଳ ସମ୍ମିଳନୀ' ଉତ୍କଳର ପ୍ରାଚୀନତମ ଅନୁଷ୍ଠାନ । ୧୯୦୩ରେ ଏହା ଗଠିତ ହୋଇ ଏ ପର୍ଯ୍ୟନ୍ତ ଜୀବିତ ରହିଛି ଏବଂ ଏହାର ବଞ୍ଚି ରହିବା ଉତ୍କଳ ପାଇଁ ଏକାନ୍ତ ଆବଶ୍ୟକ । ଉତ୍କଳର ବିଚ୍ଛିନ୍ନ ଅଞ୍ଚଳ ସବୁ ଯେପରି ଚାରିଆଡ଼େ ବିଚ୍ଛୁଡ଼ି ହୋଇ ରହିଲା ଏବଂ ଏହାର ଭାଷା ଓ ସଂସ୍କୃତି ଯେପରି କ୍ରମେକ୍ରମେ ମଉଳି ଆସୁଛି, ଉତ୍କଳ ସମ୍ମିଳନୀର ଆବଶ୍ୟକତା ଆହୁରି ଗଭୀର ଅନୁଭୂତ ହେଉଛି । ଉପାନ୍ତ ଅଞ୍ଚଳର ମିଶ୍ରଣ ଓ ସେସବୁରେ ଓଡ଼ିଆ ଭାଷା ଓ ସଂସ୍କୃତି ଜୀବନ୍ତ ରଖିବାକୁ 'ଉତ୍କଳ ସମ୍ମିଳନୀ' ଅନୁଷ୍ଠାନ ହିଁ ଭାଜନ । ଉତ୍କଳ ସମ୍ମିଳନୀ ପାଣ୍ଠିପାଇଁ ଉଚ୍ଚ ବିଦ୍ୟାଳୟ (ହାଇସ୍କୁଲ) ସ୍ତରରେ ପ୍ରତି ଛାତ୍ରଛାତ୍ରୀ ମାସିକ ୧୦ପଇସା ଓ କଲେଜ ସ୍ତରରେ ୨୦ପଇସା ସଂଗୃହୀତ ହେଲେ ସମ୍ମିଳନୀର ପାଣ୍ଠି ପୁଷ୍ଟ ହୁଅନ୍ତା ତଥା କର୍ମ ତତ୍ପରତା ବୃଦ୍ଧି ହୁଅନ୍ତା ।

ବୃହତ୍ତର ଉତ୍କଳର ଭାବି ଦାୟାଦମାନେ ଉପଭୋଗ କରିବେ । ଏହା ସେମାନଙ୍କ ପକ୍ଷରେ ଗର୍ବ ଓ ଗୌରବ କଥା ହେବ । ଏପରି ଅର୍ଥଦାନ କରିବାକୁ ସେମାନେ କେବେହେଁ କୁଣ୍ଠିତ ହେବେନାହିଁ, ବରଂ ଦେବାରେ ଆନନ୍ଦ ଉପଭୋଗ କରିବେ । ସମ୍ମିଳନୀ ଏ ଦିଗରେ ଆଶୁ ପଦକ୍ଷେପ ନେଲେ ପରମ ହିତ ସାଧିତ ହୁଅନ୍ତା ।

ଉତ୍କଳ ସମ୍ମିଳନୀ ଯେଉଁ ଉଦ୍ଦେଶ୍ୟରେ ଗଠିତ ହୋଇଥିଲା, ସେ ଉଦ୍ଦେଶ୍ୟ ଏପର୍ଯ୍ୟନ୍ତ ସାଧିତ ହୋଇପାରି ନାହିଁ । ବେଳେବେଳେ ଆମର କେହିକେହି ଜନନାୟକ ଏବଂ ଶିକ୍ଷାବିତ୍‌ମାନେ ଅତି ଭାବପ୍ରବଣ ହୋଇ କହିପକାନ୍ତି ଯେ, ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ରଲିପି ମାନ କରାଯାଇ ସେମାନଙ୍କ ଭାଷାରେ ସେମାନଙ୍କ ପିଲାମାନଙ୍କୁ ପ୍ରାଥମିକ ସ୍ତରରେ ଶିକ୍ଷା ଦିଆଯିବା ଉଚିତ୍ । ଏହା ଏକ ମାରାତ୍ମକ ପ୍ରବଣତା । ଭାରତରେ ୧୪ଟି ଭାଷାମାନଙ୍କ ପାଇଁ ଲିପି ରହିଛି ଏବଂ କେତେ ଯେ ଲିପିହୀନ ଭାଷା ରହିଛି, ତାହାର ସୀମାନାହିଁ । ଏପରି ପରିସ୍ଥିତିରେ ଆଉ ଗୋଟିଏ ଲିପି ସୃଷ୍ଟି କରିବାର ଆବଶ୍ୟକତା କ'ଣ ? ଯେଉଁଯେଉଁ ରାଜ୍ୟରେ ଆଦିବାସୀମାନେ ଅଛନ୍ତି, ସେହିସେହି ରାଜ୍ୟର ପ୍ରଚଳିତ ଲିପି ମାଧ୍ୟମରେ ସେମାନଙ୍କ ଭାଷାରେ ସେମାନଙ୍କର ପିଲାମାନଙ୍କୁ ଶିକ୍ଷା ଦିଆଯାଇପାରେ । ଏହାଦ୍ୱାରା ଉକ୍ତ ପିଲାମାନଙ୍କର ରାଜ୍ୟ ପ୍ରଚଳିତ ଲିପି ସର୍ବତ୍ର ପରିଚିତ ହେବାଦ୍ୱାରା ଭବିଷ୍ୟତକୁ ଉଚ୍ଚତର ଶିକ୍ଷାପାଇଁ ସେମାନେ ସେ ସେ ରାଜ୍ୟର ଭାଷା ସହଜରେ ପଢ଼ି ପାରିବେ ଓ ଆୟତ୍ତ କରିପାରିବେ । ଆହୁରି ମଧ୍ୟ, ଆଦିବାସୀମାନେ ବହୁ ଛୋଟଛୋଟ ଦଳରେ ବିଭକ୍ତ ଏବଂ ଏମାନେ ଭିନ୍ନେଭିନ୍ନେ ଭାଷାରେ କଥା କହି ହୁଅନ୍ତି । ଏମାନଙ୍କ ପାଇଁ ଗୋଟିଏ ମାତ୍ର ସ୍ୱତନ୍ତ୍ର ଲିପି କଲେ ଚଳିବ କିପରି ? ବରଂ ବିଭ୍ରାଟ ସୃଷ୍ଟିହେବ । ସମସ୍ତେ ଦାବି କରିବେ ଯେ ସେମାନଙ୍କ ଭାଷା ପାଇଁ ମଧ୍ୟ ସ୍ୱତନ୍ତ୍ର ଲିପିହେବା ଆବଶ୍ୟକ । ଏମାନଙ୍କ ପୂର୍ବରୁ ଯଦି ଲିପିଥାନ୍ତା ତ କଥାନଥିଲା, କିନ୍ତୁ ସ୍ୱତନ୍ତ୍ର ଲିପି ସୃଷ୍ଟିକରି ସମସ୍ୟା ବଢ଼େଇବା ଅନାବଶ୍ୟକ ।



# ଦାରୁବ୍ରହ୍ମ ବା ଦାରୁ ବିଗ୍ରହ ଉପାସନା

ପ୍ରଭୁ ଜଗନ୍ନାଥ ଦାରୁବ୍ରହ୍ମ ବା ଦାରୁ ବିଗ୍ରହ । ଭାରତର ଆଉ କେଉଁଠାରେ ଆର୍ଯ୍ୟମାନଙ୍କ ଦ୍ୱାରା ଦାରୁବିଗ୍ରହ ପୂଜିତ ହୁଅନ୍ତି ଶୁଣାଯାଏ ନାହିଁ । କିମ୍ବଦନ୍ତୀ ଓ ପ୍ରମାଣିତ ତଥ୍ୟଦ୍ୱାରା ପ୍ରଭୁ ଜଗନ୍ନାଥ ଯେ ଶବର ଦେବତା ଏଥିରେ ସନ୍ଦେହ ନାହିଁ । ଦାରୁପୂଜା କେବଳ ଆଦିବାସୀମାନଙ୍କ ମଧ୍ୟରେ ହିଁ ପ୍ରଚଳିତ । କିନ୍ତୁ ଦୁଃଖର କଥା ଅନ୍ୟାନ୍ୟ ଅଞ୍ଚଳ ଆଦିବାସୀଙ୍କ କଥା ଦୂରେଥାଉ, ଓଡ଼ିଶାର ଆଦିବାସୀମାନେ ବି ଆଦୌ ଜାଣନ୍ତି ନାହିଁ କି ଏମାନଙ୍କ ମଧ୍ୟରେ ଏହା ଏପର୍ଯ୍ୟନ୍ତ ପ୍ରଚାରିତ ହୋଇନାହିଁ । ଜଗନ୍ନାଥ ଯେ ଦାରୁବିଗ୍ରହ ଆଦିବାସୀ ଦେବତା, ଏହି ଧାରଣା ସେମାନଙ୍କ ମନରେ ଯଦି ଜନ୍ମନ୍ତା, ପୁରୀ ସେମାନଙ୍କର ପ୍ରଧାନତୀର୍ଥ ହୁଅନ୍ତା । ସେମାନଙ୍କ ଧର୍ମ ଓ ସଂସ୍କୃତି ଯେ ଭାରତୀ ଆର୍ଯ୍ୟମାନଙ୍କ ଧର୍ମଧାରଣା ଠାରୁ ଭିନ୍ନ ଏହା ସେମାନେ ଭୁଲିଯାଆନ୍ତେ, ଗୋଟିଏ ପରମ ଏକତ୍ୱବୋଧ ସୃଷ୍ଟି ହୁଅନ୍ତା । ଏହାଦ୍ୱାରା କେବଳ ଉତ୍କଳ କାହିଁକି, ଆଦିବାସୀ ଅଧ୍ୟୁଷିତ ବଙ୍ଗ, ବିହାର, ମଧ୍ୟପ୍ରଦେଶ ପ୍ରତି ଶୁଭଙ୍କର ହୁଅନ୍ତା ।



# ବ୍ରହ୍ମା ମନ୍ଦିର

ସମଗ୍ର ଭାରତବର୍ଷରେ କେବଳ ମଧ୍ୟପ୍ରଦେଶ ପୁଷ୍କର ଠାରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ମନ୍ଦିର ଥିବାର ଶୁଣିଥିଲି । କିନ୍ତୁ ଜଣେ ଲୋକଙ୍କଠାରୁ ଯେତେବେଳେ ଜାଣିଲି ଯେ ବାଲେଶ୍ୱର ଜିଲ୍ଲା ପାଳିଆରେ ବ୍ରହ୍ମାଙ୍କ ମନ୍ଦିର ଅଛି, ମନରେ ବଡ଼ କୌତୁହଳ ଓ ଆନନ୍ଦ ଜାତ ହେଲା । ଉତ୍କଳରେ ମଧ୍ୟ ବ୍ରହ୍ମାଙ୍କ ମନ୍ଦିର ଅଛି ?

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ହିନ୍ଦୁ ମତବାଦର ପରମ ତ୍ରିଶକ୍ତି - ସୃଜନ, ପାଳନ ଓ ସଂହାରକ । ପାଳନ ଓ ସଂହାରକର୍ତ୍ତାଙ୍କ ପୂଜାରାଧନା ଭାରତର ଅସଂଖ୍ୟ ମନ୍ଦିର ମାନଙ୍କରେ ଭକ୍ତିର ସହିତ କରାଯାଉଥିଲେ ହେଁ, ସୃଜନକର୍ତ୍ତାଙ୍କ ପୂଜାରାଧନା ହେବାର ଓ ତାଙ୍କପାଇଁ ମନ୍ଦିର କୁତ୍ରାପି ଦେଖାଯାଏ ନାହିଁ । ସୃଜନଶକ୍ତି କାହିଁକି ଯେ, ଏପରି ଅବହେଳିତ ଜଣାଯାଏ ନାହିଁ ।

ପାଳିଆ ଗୋଟିଏ ବର୍ଦ୍ଧିଷ୍ଣୁ, ପ୍ରସିଦ୍ଧ, ପ୍ରଧାନ ଗ୍ରାମ । ଭଦ୍ରକଠାରୁ ପୂର୍ବକୁ ଏହା ୫/୬ ମାଇଲ୍ ଦୂରରେ ଅବସ୍ଥିତ । ଏହିଠାରେ ବ୍ରହ୍ମାଙ୍କର ମନ୍ଦିର ଅଛି । ମନ୍ଦିରଟି ମଧ୍ୟମ ଧରଣର ପ୍ରାୟ ୬୦/୭୦ଫୁଟ୍ ଉଚ୍ଚହେବ । ଏହା ଗୋଟିଏ ସୁନ୍ଦର ପ୍ରସ୍ତର ମଣ୍ଡପ / ପୀଢ଼ / ବେଦୀ ଉପରେ ଅବସ୍ଥିତ । ମନ୍ଦିରଟି ଚତୁଃଦ୍ୱାର ବିଶିଷ୍ଟ - ଅଧିଷ୍ଠିତ ଦେବତା ବିରଞ୍ଚି ପୂଜିତ । ଦ୍ୱାରଗୁଡ଼ିକ ତଥା ଦ୍ୱାରବନ୍ଧ (ଦେହଳି) ମାନଙ୍କରେ ହୋଇଥିବା କାରୁକାର୍ଯ୍ୟ ଖୁବ୍ ମନୋମୁଗ୍ଧକର । ମନ୍ଦିରର ମଧ୍ୟସ୍ଥଳରେ ଅଧିଷ୍ଠିତ ଦେବତା ବିରଞ୍ଚି ନାରାୟଣ ବିରାଜିତ । ସ୍ଥାନୀୟ ଲୋକେ କରିଥିବାର ଜନଶ୍ରୁତି ଅଛି ବୋଲି କହନ୍ତି । ମନ୍ଦିରର ବହିର୍ଭାଗ ଗାତ୍ରରେ ଅନେକ ଗୁମ୍ଫା ବା ଠଣା ଅଛି । ସେଥିମଧ୍ୟରୁ କେତେକଟିରେ ପ୍ରସ୍ତର ମୂର୍ତ୍ତି ଅଛି । ଆଉ କେତେଗୁଡ଼ିଏ ଗୁମ୍ଫା ଶୂନ୍ୟ ପଡ଼ିଚି । ଏ ସଂପର୍କରେ ଆମର କେହି ଏ ପର୍ଯ୍ୟନ୍ତ ଅନୁସନ୍ଧାନ କରିନାହାଁନ୍ତି । ଯେପରି ଆମେ ଜୟଦେବଙ୍କ ଜନ୍ମସ୍ଥାନ ବିଷୟରେ ବହୁକାଳ ବ୍ୟାପୀ କିଛି କରିନଥିଲେ ।

ଏ ବିଷୟରେ ଅନୁଧ୍ୟାନ କରିବାକୁ ମୁଁ ଆମର ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରୁଅଛି ।



# ବେଦବ୍ୟାସ ପୀଠ

ସୁନ୍ଦରଗଡ଼ ଜିଲ୍ଲାରେ ବେଦବ୍ୟାସ ପୀଠ ଅଛି । ଏହା ରାଉରକେଲାକୁ ସନ୍ନିକଟ ଶଙ୍ଖ ଓ କୋଇଲି ନଦୀର ଦ୍ୱୟର ସଂଗମସ୍ଥଳରେ ଅବସ୍ଥିତ । ଶଙ୍ଖ ଓ କୋଇଲିର ସଂଗମସ୍ଥଳରୁ ବ୍ରାହ୍ମଣୀନଦୀର ଉତ୍ପତ୍ତି । ଏଠାରେ ଆଶ୍ରମ ପ୍ରତିଷ୍ଠିତ ହୋଇଛି ଏବଂ ଶିବରାତ୍ରି ଉପଲକ୍ଷେ ଏଠାରେ ସପ୍ତାହବ୍ୟାପୀ ପ୍ରକାଣ୍ଡ ମେଳା ବସେ । ବେଦବ୍ୟାସଙ୍କର ଅନ୍ୟନାମ କୃଷ୍ଣ ଦ୍ୱୈପାୟନ ସେ ଦ୍ୱୀପରେ ଜନ୍ମ ହୋଇଥିଲେ । ମାତା ସତ୍ୟବତୀ କୈବର୍ତ୍ତ କନ୍ୟା । ନୌକାରେ ପାର ହେଉଥିଲାବେଳେ ଘନ କୁହେଳି ଆବରଣ ତଳେ ପରାଶରଙ୍କ ସଂଯୋଗରେ ସତ୍ୟବତୀଙ୍କ ଗର୍ଭରୁ ବ୍ୟାସଦେବଙ୍କ ଜନ୍ମ । ଶଙ୍ଖ ଓ କୋଇଲିର ସଂଯୋଗସ୍ଥଳ ଦ୍ୱୀପସଦୃଶ, ନୌକା ଏଠାରେ ପାରାପାର କରେ ଓ କୁହୁଡ଼ି ସମୟରେ ଏଠାରେ ଘନ କୁହୁଡ଼ି ହୋଇଥାଏ । ବ୍ୟାସଦେବଙ୍କ ଜନ୍ମ ସଂପର୍କରେ ମହାଭାରତ ବର୍ଣ୍ଣିତ ଏପରିସବୁ ବଳିଷ୍ଠ ଯୁକ୍ତି ଥାଉଥାଉ ଆମର କେହି ଏ ପର୍ଯ୍ୟନ୍ତ ଏ ବିଷୟରେ ଅନୁଧ୍ୟାନ କରିନାହାଁନ୍ତି ଯେପରି ଆମେ ଜୟଦେବଙ୍କ ଜନ୍ମସ୍ଥଳୀ ବିଷୟରେ ବହୁକାଳ ବ୍ୟାପୀ କିଛି ଅନୁଧ୍ୟାନ କରିନଥିଲେ । ଏ ଦିଗରେ ଯଥାଶୀଘ୍ର ଅନୁଧ୍ୟାନ କରାଯାଉ ।

# 'ହେ' ସମ୍ବୋଧନ

୰ପଣ୍ଡିତ ନୀଳକଣ୍ଠ ଦାଶ କହନ୍ତି ଯେ 'ହେ' ସମ୍ବୋଧନ ଓଡ଼ିଶାର ଏକାନ୍ତ ନିଜସ୍ୱ । କୌଣସି ସଂସ୍କୃତ ଶାସ୍ତ୍ରରେ 'ହେ' ସମ୍ବୋଧନ କ୍ୱଚିତ୍ ଦେଖାଯାଏ । କେବଳ ବ୍ୟାସଦେବ ଲିଖିତ ଗୀତାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ବହୁ ସ୍ଥଳରେ 'ହେ' ସମ୍ବୋଧନ କରିଛନ୍ତି ।



# 'ବୋଉ' ଡାକ

ମା'ଙ୍କୁ ବୋଉ ବୋଲି ଡାକିବା ଏକ ଅଶୋଭନୀୟ ଚଳଣି । ଭାରତବର୍ଷରେ ପ୍ରଚଳିତ ଆଉ କୌଣସି ଭାଷାରେ ଏପରି ଚଳଣି ନାହିଁ । ତେଲେଙ୍ଗାରେ କହନ୍ତି ଆମ୍ମା, ବଙ୍ଗଳାରେ ମା', ହିନ୍ଦୀରେ ମା, ଗୁଜୁରାଟିରେ ମା, ଆସାମିରେ ମା । ଏପରିକି ଆମ ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଆଦି ଜିଲ୍ଲା ମାନଙ୍କ ବ୍ୟତୀତ 'ବୋଉ' ବୋଲି କେହି ଡାକନ୍ତି ନାହିଁ । ସମସ୍ତେ ଡାକନ୍ତି ମା । ଆନ୍ତର୍ଜାତିକ କ୍ଷେତ୍ରରେ ଦେଖାଯାଏ, ପ୍ରାୟ ସମସ୍ତେ ଡାକନ୍ତି ମା' ଅବଶ୍ୟ କେଉଁକେଉଁ ସ୍ଥଳରେ ମା'କୁ ମୂଳକରି ସାମାନ୍ୟ ପରିବର୍ତ୍ତନ ଦେଖାଯାଇଥାଏ । ମା' ଡାକ ଏକ ଆନ୍ତର୍ଜାତିକ ସମ୍ମତ ଡାକ ।

ଏ ସଂପର୍କରେ ଭାଷା ପଣ୍ଡିତମାନେ କହିଥାନ୍ତି ଯେ ମା' ମୂଳ ଆର୍ଯ୍ୟ ଶବ୍ଦ । ସେମାନେ କହନ୍ତି, ମା'ଭଳି ଏତେ ଚମତ୍କାର ସୁନ୍ଦର ଶବ୍ଦ ମନୁଷ୍ୟ ଏ ପର୍ଯ୍ୟନ୍ତ ସୃଷ୍ଟିକରିପାରି ନାହିଁ । ଏହି ମୂଳ ଆର୍ଯ୍ୟ ଶବ୍ଦଟିକୁ ସଂସ୍କୃତରେ ମାତା, ମାତୃ, ମାତର ବୋଲି କୁହାଯାଏ । ସେହି ଶବ୍ଦ କେଉଁଠି କିପରି କିଭଳି ଟିକିଏ ଟିକିଏ ରୂପେ ପରିବର୍ତ୍ତନ ଘଟିଛି ଓ ତାହା ମୂଳ 'ମା' ଶବ୍ଦରୁ ବିଶେଷ ଦୂରେଇ ଯାଇନାହିଁ । ମୂଳରେ ଅଛି ମା । ତାହା କିପରି ସଂସ୍କୃତରେ ମାତା, ପାରସୀରେ ମାଦର, ଗ୍ରୀକ୍‌ରେ ମିଟର୍‌, ବୁଲେଶରଆରେ ମାତୀ, ସ୍ପେନୀୟ ଭାଷାରେ ମାଡରେ, ଇଂରାଜୀରେ ମଦର, ଜର୍ମାନୀରେ ମୁଟର, ଲାଟିନ୍‌ରେ ମାଟର, ଫରାସୀରେ ମେରେ, ରୁଷ୍‌ରେ ମାତେ ××× ଇତ୍ୟାଦି ।

ଓଡ଼ିଶାରେ ପୁଅର ସ୍ତ୍ରୀକୁ ଶାଶୁମାନେ 'ବହୂ' ବୋଲି ଡାକିଥାନ୍ତି ।



# ସତ୍ୟବାଦୀ ପ୍ରେସ୍ ବୁଲା ଓ ଗୋପବନ୍ଧୁଙ୍କୁ ଦର୍ଶନ

ସତ୍ୟବାଦୀ ପ୍ରେସ୍ ନୂଆକି କଟକକୁ ଉଠିଆସିଥାଏ । ଦିନେ ଆମେ କେତେଜଣ ସ୍କୁଲଛାତ୍ର ସତ୍ୟବାଦୀ ପ୍ରେସ୍ ବୁଲି ଦେଖିବାକୁ ଯାଇଥିଲୁ । ବୁଲିବାଲି ଦେଖିସାରି ଆମେ ଫେରୁଛୁ, ଆମ ଭିତରୁ ଜଣେ ଆମକୁ ସତର୍କ କରିଦେଲା ଭଳି କହିଉଠିଲା 'ଗୋପବନ୍ଧୁ ବାବୁ, ଗୋପବନ୍ଧୁ ବାବୁ' । ଦେଖିଲି ଗୋପବନ୍ଧୁବାବୁ ନିମ୍ନାଭିମୁଖୀ ହୋଇ ଗୋଟିଏ ଘର ଭିତରେ ଟହଲେଇ ହେଉଥାନ୍ତି । ଆମ୍ଭମାନଙ୍କ ଆଡ଼କୁ ଟିକିଏ ଅନେଇ ଦୃଷ୍ଟି ଫେରାଇ ନେଲେ । ଗୋପବନ୍ଧୁବାବୁଙ୍କୁ ଏଥିପୂର୍ବରୁ ମୁଁ ଦେଖିନଥିଲି । ନେପଥ୍ୟରେ ରହି କିଛିସମୟ ପାଇଁ ତାଙ୍କୁ ମୁଁ ନିରୀକ୍ଷଣ କରିଥିଲି ।

ତାଙ୍କୁ ଦେଖି ମନରେ ଧାରଣା ହୋଇଥିଲା ସତେକି ଅସରନ୍ତି ସମସ୍ୟା ତାଙ୍କୁ ବିଚଳିତ କରୁଛି । ମୁଖମଣ୍ଡଳରେ ଗଭୀର ଚିନ୍ତାର ଛାୟା, ସମାଧାନର ଉପାୟ ସେ ଖୋଜି ବୁଲୁଛନ୍ତି, ଗୋପବନ୍ଧୁବାବୁଙ୍କୁ ଆଜି ପ୍ରଥମକରି ଦେଖିଲି ଦିନଟି ସାର୍ଥକ ବୋଲି ମଣିଲି ।

## ଗୋପବନ୍ଧୁ ଓ ଗାନ୍ଧି ଦର୍ଶନ

ଦ୍ୱିତୀୟବାର ଗୋପବନ୍ଧୁବାବୁଙ୍କୁ ଦେଖିଥିଲି କଟକ ମ୍ୟୁନିସିପାଲଟି ପଡ଼ିଆ ସାଧାରଣ ଜନସଭାରେ । ମହାତ୍ମାଗାନ୍ଧି ୧୯୨୫ ମସିହାରେ କଟକ ଆସିଥାନ୍ତି । ଆମ୍ଭେମାନେ ଶୁଣିଲୁ ଗାନ୍ଧି ମଧୁବାବୁଙ୍କ ଘରେ ଅଛନ୍ତି । ଦେଖିବାପାଇଁ ଆମ୍ଭେମାନେ ମଧୁବାବୁଙ୍କ ଘର ଉଦ୍ଦେଶ୍ୟରେ ଗଲୁ । ବାଟରେ ଶୁଣିଲୁ ମଧୁବାବୁଙ୍କ ଘରେ ଗାନ୍ଧିଙ୍କୁ ଦେଖିହେବ ନାହିଁ । ସଂଧ୍ୟା ୬ଟାବେଳକୁ ରାମଚନ୍ଦ୍ର ଭବନରେ ସଭାହେବ, ଗାନ୍ଧି ସେହି ସଭାରେ ଯୋଗଦେବେ । ଆମ୍ଭେମାନେ ପୁଣି ରାମଚନ୍ଦ୍ର ଭବନ ଆଡ଼କୁ ଗଲୁ ।

ସେଦିନ ଉପରଓଳି କଟକରେ ଘୋର ବର୍ଷା ହେଲା । ଆମେ ମ୍ୟୁନିସିପାଲଟି ପଡ଼ିଆକୁ ଯାଇ ଦେଖି ଯେ ପଡ଼ିଆରେ ବର୍ଷାପାଣି ଠିଆ ହୋଇଛି ଲୋକେ ସୁବିଧା ଜାଗାଦେଖି ଛତାଧରି ଠିଆ ହୋଇଛନ୍ତି, ତେବେବି ବର୍ଷା ହେଉଥାଏ । ମ୍ୟୁନିସିପାଲ୍‌ଟି ପଡ଼ିଆର ଖଣ୍ଡିଏ ଅତି ସାଧାରଣ ଚାଳିଆରେ ଗାନ୍ଧିଙ୍କ ବସିବା ପାଇଁ ଆୟୋଜନ ହେଉଥାଏ । ପଚାରି ବୁଝିଲୁ ଯେ ଟାଉନ୍‌ହଲ୍ କିମ୍ବା ରାମଚନ୍ଦ୍ରଭବନ ଜନସମାଗମ

ସମ୍ଭାଳି ପାରିବ ନାହିଁ ବୋଲି ଖୋଲାପଡ଼ିଆରେ ସଭା ହେବାର ଆୟୋଜନ ଚାଲିଛି । ଚହଳପଡ଼ିଲା 'ଗାନ୍ଧି ଆସିଲେ' । ଗାନ୍ଧି ମଟରରେ ଆସିଲେ । ବର୍ଷା ହେଉଥାଏ ବୋଲି ଚାରିପାଖେ ପର୍ଦ୍ଦା ଟଣା ହୋଇଥାଏ । ଗାନ୍ଧିଙ୍କୁ ଦେଖିବେ ବୋଲି ଲୋକେ ମଟର ଆଗକୁ ମାଡ଼ି ଯାଉଥାନ୍ତି । ଏହାଦେଖି ଗାନ୍ଧି ପର୍ଦ୍ଦାଟେକି ମୁହଁ ପଦାକୁ ବଢ଼ାଇଲେ । ରାମଦାସ ବାବାଜି ମଟର ଆଗେଆଗେ ଚାଲି ଜନଗହଳି ମଧ୍ୟରେ ବାଟ ସଫା କରୁଥାନ୍ତି । ବହୁକଷ୍ଟରେ ମଟର ଚାଳିଆ ନିକଟରେ ପହଞ୍ଚିଲା । ସଭାରେ ସମସ୍ତେ ଦେଖିପାରିବେ ବୋଲି ଗାନ୍ଧି ଗୋଟିଏ ଟେବୁଲ୍ ଉପରେ ଛିଡ଼ା ହୋଇଥାନ୍ତି । ବର୍ଷା ଛାଡ଼ି ଆସିଥାଏ । ପାଣି କାଦୁଅରେ ଲୋକେ ନବସି ଠିଆ ହୋଇ ରହିଥାନ୍ତି । ଲୋକଙ୍କ ସୁଅ ଲାଗିଛି । ପଛଲୋକେ ଗାନ୍ଧିଙ୍କୁ ଦେଖି ନପାରି ଆଗକୁ ଆସିବାକୁ ଚାହୁଁଥାନ୍ତି । ଆଗ ଲୋକେ ପଛଲୋକଙ୍କୁ ଆଗକୁ ଛାଡ଼ିଦେବାକୁ ନାରାଜ । ଠେଲାପେଲା ପାଟିଗୋଳରେ ସଭାସ୍ଥଳରେ ବିଷମ ବିଶୃଙ୍ଖଳା ଜନ୍ମିଥାଏ । ଗାନ୍ଧି ବକ୍ତୃତା ଆରମ୍ଭ କରିବେ । ରାମଦାସ ବାବାଜି ଲୋକଙ୍କୁ ଧୀରସ୍ଥିର ହୋଇ ବସିବାକୁ ଅନୁରୋଧ କଲେ, କେହି ଶୁଣିଲେ ନାହିଁ । ଏହା ଦେଖି ପରେ ମଧୁବାବୁ ଉଠି କେତେକଥା କହି ଲୋକଙ୍କୁ ବସିଯିବାକୁ ଅନୁରୋଧ କଲେ । ତେବେବି କିଛି ଫଳ ହେଲାନାହିଁ । ସେହିପରି ଠେଲାପେଲା ପାଟିଗୋଳ ଲାଗିଥାଏ । ଶେଷକୁ ଗୋପବନ୍ଧୁବାବୁ ଉଠିପଡ଼ି ବଡ଼ ଆବେଗରେ କହିବାକୁ ଆରମ୍ଭ କଲେ - ଭାରତର ପ୍ରଧାନ ନେତା ବସିଛନ୍ତି । ତାଙ୍କ ସଂଗରେ ଭାରତର ଅନ୍ୟାନ୍ୟ ଅଞ୍ଚଳର ପ୍ରଧାନ ଲୋକେ ଅଛନ୍ତି । ଓଡ଼ିଶାବାସୀଙ୍କର ଏପରି ଢଙ୍ଗ ଦେଖି ସେମାନେ ଭାବିବେ କ'ଣ ? ଏପରି ଆଚରଣ ଅତି ଲଜ୍ଜାର କଥା । ହେଉ ବର୍ଷା, ହେଉ ବଜ୍ରପାତ । ଜଗନ୍ନାଥଙ୍କ ଦ୍ୱାହି, ସମସ୍ତେ ସ୍ଥିର ହୋଇ ବସ, ଭାରତର ପ୍ରଧାନ ନେତା କ'ଣ କହୁଛନ୍ତି ଶୁଣ ? କୁଟୁମ୍ବ ଲୋକଙ୍କର ହୀନ ଆଚରଣ ଦେଖି କୁଟୁମ୍ବର କର୍ତ୍ତା ମୁରବି ଅଭିମାନରେ ଅତି ବିଚଳିତ ହୋଇ ଯେପରି କ୍ରୋଧ ଓ ଅଭିମାନରେ ବିରକ୍ତ ହୋଇ ଗାଳି ଓ ଉପଦେଶ ଦିଅନ୍ତି, ଗୋପବନ୍ଧୁ ସେହିପରି କ୍ରୋଧ ଓ ଅଭିମାନରେ ବିଚଳିତ ହୋଇ ଏପରି କହିଲା ପରି ଲାଗିଲା । ସମସ୍ତେ ଧୀରସ୍ଥିର ହୋଇ ବସିବାକୁ ଆରମ୍ଭ କଲେ - ସମସ୍ତେ ଚୁପ୍‌ଚାପ୍ । ତାଙ୍କ ଭାଷାଠାରୁ ତାଙ୍କ ସ୍ୱରରେ ଥିଲା ବେଶି ଅର୍ଥ । ତାଙ୍କ ଭାଷା ତାଙ୍କ ସ୍ୱରରେ କ୍ରୋଧ ଅଭିମାନ ଉପଦେଶ ଉଛୁଳି ପଡୁଥିଲା ପରି ଲାଗିଲା ।



# ଗୋତ୍ର

ଗୋତ୍ରର ପ୍ରକୃତ ଅର୍ଥ ଯେ କ'ଣ, ତାହା ଆମଦେଶର ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ - ଏପରିକି ଅଧେରୁ ଅଧିକ ଶିକ୍ଷିତଲୋକଙ୍କୁ ମଧ୍ୟ ଅଗୋଚର । ସେହି ସୁଦୂର ଯୁଗରୁ ନିଜର ସବୁକଥା ଭୁଲିଭୁଲି ଲୋକେ ଆଜି "ଭରଦ୍ୱାଜ"ଙ୍କୁ 'ଭରତିଆ' ପକ୍ଷୀ କରିସାରିଲେଣି, 'ନାଗସ'ଙ୍କୁ ଛାଡ଼ି ନାଗରେ ମଜିଲେଣି, 'କାଶ୍ୟପ'ଙ୍କୁ ଛାଡ଼ି 'କଚ୍ଛପ'ରେ ଭୁଲିଲେଣି ।

ଆମେ ଅନେକ କଥା ବ୍ୟବହାର କରୁଁ, କିନ୍ତୁ କାହାର ଅର୍ଥ ପ୍ରଣିଧାନ କରି ଦେଖୁନା । 'ଗୋତ୍ର' ଗୋଟିଏ ପ୍ରଚଳିତ କଥା; କିନ୍ତୁ ଏହାର ଅର୍ଥ ବିଷୟରେ ଅନେକଙ୍କର ପରିଷ୍କାର ଧାରଣା ନାହିଁ । ପ୍ରକୃତିବାଦ ଅଭିଧାନରେ ଲେଖାଅଛି । "ଗୋତ୍ର = ଗୁ (ଶବ୍ଦ କରିବା) + ତ୍ର, ସଂଜ୍ଞାର୍ଥେ; ଯେ' ପୂର୍ବପୁରୁଷଗଣଙ୍କୁ ଭକ୍ତି କରେ ।" କେହିକେହି କୁହନ୍ତି "ଗୋତ୍ର = ଗୋ (ପୃଥିବୀ) + ତୈ (ତ୍ରାଣ କରିବା) + ତ; ଯେ ପୃଥିବୀକୁ ରକ୍ଷାକରନ୍ତି ବା ପାଳନ କରନ୍ତି, ଅର୍ଥାତ୍ ଭରଦ୍ୱାଜାଦି ଋଷି ।" ଏ ଅର୍ଥସବୁ କିନ୍ତୁ ମନଃକଳ୍ପିତ ବୋଲି ବୋଧହୁଏ । ଯେଉଁଠାରେ ସାଧାରଣ ଅର୍ଥ ଗ୍ରହଣ କରିଲେ କୌଣସି ସନ୍ଦେହ ରହେନା ଅଥଚ ଅର୍ଥ ପରିଷ୍କାର ହୁଏ, ସେଠାରେ ସାଧାରଣ ଅର୍ଥକୁ ହିଁ ଗ୍ରହଣ କରିବା ଉଚିତ । "ଗୋତ୍ର" = ଗୋ + ତ୍ରୈ + ତ; ଏଠାରେ 'ଗୋ' ଏବଂ 'ତୈ'ଶବ୍ଦ ପ୍ରଚଳିତ ଅର୍ଥରେ ଗ୍ରହଣ କରିଲେ ଗୋତ୍ର ଶବ୍ଦର ପ୍ରକୃତ ଅର୍ଥ ନିର୍ଣ୍ଣୀତ ହେବ । 'ଗୋ' = ଗୋରୁ ଏବଂ 'ତୈ' = ତ୍ରାଣ କରିବା; ଯାହା ଗୋରୁକୁ ରକ୍ଷାକରେ ତାହାହିଁ ଗୋତ୍ର ଅର୍ଥାତ୍ 'ଗୋଶାଳା', 'ଗୁହାଳ' । ଆମ୍ଭେମାନେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଅଛୁଁ, ଋକ୍‌ବେଦର ଆଶ୍ରୟ ନେଲେ ସେହି ସିଦ୍ଧାନ୍ତକୁ ପ୍ରକୃତ ସିଦ୍ଧାନ୍ତ ବୋଲି ବୋଲିବାକୁ ହେବ । ଋକ୍‌ବେଦରେ ଲେଖାଅଛି -

୧. ହେ ଇନ୍ଦ୍ର, ତୁମେ ଅଙ୍ଗିରା ପ୍ରଭୃତିଙ୍କ ପାଇଁ 'ଗୋତ୍ର' ଖୋଲି ଦେଇଥିଲ ।
(ତ୍ୱମ୍ ଗୋତ୍ରମ୍ ଅଙ୍ଗିରୋଭ୍ୟ ଅନୃଣୋଃ ।)

୨. ସୋମରସର ମତ୍ତତାରେ ଇନ୍ଦ୍ର ଦୃଢ଼ ଗୋତ୍ର ଭଗ୍ନ କରିଥିଲେ । (ଗୋତ୍ରା ସହସା ମଦେ ସୋମସ୍ୟ ଦୃଂହିତାନି ଐରୟତ୍ ।)

୩. ତୁମେ ଗୋସମୂହର ଗୋତ୍ରକୁ ଖୋଲି ଦେଇଥିଲ । (ଗବାମ୍ ଗୋତ୍ରମ୍ ଉତ୍ ଅସୃଜଃ ।)

୪. ଗୋତ୍ର ବିଦୀର୍ଣ୍ଣ କରି ଆମ୍ଭମାନଙ୍କୁ ଗୋଦାନ କରି, ଉପଭୋଗଯୋଗ୍ୟ ଧନାଦି ଆମ୍ଭମାନଙ୍କ ନିକଟକୁ ଆଗମନ କରୁ, ହେ ମଘବନ୍ ! ତୁମ୍ଭେ ଆମ୍ଭମାନଙ୍କୁ ଗୋଦାନ କର । (ଆନଃ ଗୋତ୍ର ଦିଦୃହି - ଇତ୍ୟାଦି)

୫. ହେ ଇନ୍ଦ୍ର ! ଆମ୍ଭମାନଙ୍କର ଯେ ପିତୃଗଣ ଗୋ ସମୂହ ନିମନ୍ତେ ଯୁଦ୍ଧ କରିଥିଲେ, ପୃଥିବୀରେ ସେମାନଙ୍କର ନିନ୍ଦୁକ କେହିନାହିଁ । ମହିମାବାନ୍ ପରାକ୍ରମଶାଳୀ ଇନ୍ଦ୍ର ଏମାନଙ୍କ ପାଇଁ ଦୃଢ଼ଗୋତ୍ର ଖୋଲି ଦେଇଥିଲେ । (ଇନ୍ଦ୍ର ଏଷାମ୍ ଦୁହିତା ମାହିନବାନ୍ ଉତଗୋତ୍ରାଣି ସସୃଜେ ଦଂସନାବାନ୍ ।)

୬. ତୁମ୍ଭେ ଆମ୍ଭମାନଙ୍କର ନେତା, ଅଙ୍ଗିରାଗଣ କର୍ତ୍ତୃକ ସ୍ତୁତ ହୋଇ ତୁମ୍ଭେ ଗୋତ୍ର ଭେଦ ପୂର୍ବକ (ଗୋତ୍ରାରୁଜନ୍) ବହୁ ଧନ ପ୍ରଦାନ କରିଥିଲ ।

୭. ହେ ଉଷା ! ବର୍ତ୍ତମାନ ଅଙ୍ଗିରାଗଣ ତୁମର ଗୋସମୂହର ଗୋତ୍ରକୁ ପ୍ରଶଂସା କରୁଅଛନ୍ତି । (ଗୋତ୍ରା ଗବାମ୍ ଗୃଣନ୍ତି ।) ସେମାନେ ମନ୍ତ୍ର ଦ୍ୱାରା ଗୋତ୍ର ଭେଦ କରିଥିଲେ । (ବିଭିଦୁଃ)

୮. ଏକ ସ୍ଥାନରେ ବୋଲା ହୋଇଅଛି ଯେ, ସ୍ତୋତୃଗଣ ଗୋତ୍ର ଲାଭ ନିମନ୍ତେ (ଗୋତ୍ରସ୍ୟ ବାଦନେ) ସ୍ତୁତି କରୁଅଛନ୍ତି । (ମୋକ୍ଷମୁଲାର ସଂସ୍କରଣ)

୯. ମୋତେ ଗୋତ୍ର ଅର୍ପଣ କର (ତ୍ୱ ମୟି ଗୋତ୍ରମ୍) ।

୧୦. ତୁମେ ଅଙ୍ଗିରା ପ୍ରଭୃତିଙ୍କ ପାଇଁ ଗୋତ୍ର ଉନ୍ମୁକ୍ତ କରିଥିଲ । (ଗୋତ୍ରମ୍ ଅଙ୍ଗିରୋଭ୍ୟଃ ଅନୃଣୋଃ ଅପ)

୧୧. ମୁଁ ଦଧୀଚ୍ଚ ଓ ମାତରିଶ୍ୱାଙ୍କୁ 'ଗୋତ୍ର' ପ୍ରଦାନ କରିଥିଲି । (ଆଦରେ ଗୋତ୍ରା)

୧୨. ଏକ ସ୍ଥାନରେ ଇନ୍ଦ୍ରଙ୍କୁ 'ଗୋତ୍ରଭିଦମ୍' 'ଗୋବିଦମ୍' ବୋଲା ହୋଇଅଛି । ଯେ ଗୋତ୍ର ଭେଦ କରନ୍ତି, ସେ ଗୋତ୍ରଭିତ୍ ।

୧୩. ଆଉ ଏକ ସ୍ଥାନରେ ବୃହସ୍ପତିଙ୍କର ରଥକୁ ଗୋତ୍ରଭିଦମ୍ ବୋଲା ହୋଇଅଛି । ରଥରେ ଆରୋହଣ କରି ଶତ୍ରୁମାନଙ୍କର ଗୋତ୍ରରୁ ଗାଭୀ ଆନୟନ କରାହୁଏ, ଏଥିପାଇଁ ରଥକୁ ଗୋତ୍ରଭିଦ୍ କୁହା ଯାଇଅଛି ।

୧୪.ଅନ୍ୟ ଏକ ସ୍ଥାନରେ ବଳପୂର୍ବକ ଗୋତ୍ର ପ୍ରବେଶ କଥା ବୋଲା ହୋଇଅଛି । (ଅଭି ଗୋତ୍ରାଣି ସାହସା ଗାହ୍ମମାନଃ - ଅଥର୍ବ ବେଦ)

ଏସବୁ ଅଂଶରୁ ସ୍ପଷ୍ଟ ବୁଝାଯାଏ 'ଗୋତ୍ର' 'ଗୋଶାଳା' - ଯେଉଁଠାରେ ଗୋରୁଙ୍କୁ ଆବଦ୍ଧ କରି ରଖାହୁଏ । ପ୍ରାଚୀନକାଳରେ ପଶୁ ବିଶେଷତଃ ଗୋରୁ ହିଁ ଲୋକଙ୍କର ପ୍ରଧାନ ସମ୍ପତ୍ତି ଥିଲା । ପାଶ୍ଚାତ୍ୟ ଭାଷାରୁ ମଧ୍ୟ ଏହାର ପ୍ରମାଣ ମିଳେ । ଇଂରାଜୀ Peeuniary ଅର୍ଥ ସମ୍ବନ୍ଧୀୟ; ଏହା ଲାଟିନ 'peeus'ରୁ ନିଷ୍ପନ୍ନ ଏବଂ ଏହି 'peeus'ର ଅର୍ଥ ପଶୁ ।

ଗୋରୁ ପଲ ଛାଡ଼ି ଅନ୍ୟତ୍ର ଚାଲିଯାଇ ପାରେ, ହିଂସ୍ରଜନ୍ତୁ ଗୋରୁ ବାଛୁରୀ ନେଇ ପଳାୟନ କରି ପାରନ୍ତି - ଏହିସବୁ ବିପଦରୁ ରକ୍ଷା କରିବା ପାଇଁ ଗୋରୁ ବାଛୁରୀଙ୍କୁ ଗୋଟିଏ ସ୍ଥାନରେ ଆବଦ୍ଧ କରି ରଖାହୁଏ - ଏହାରି ନାମ ଗୋତ୍ର ବା ଗୋଷ୍ଠ । ପ୍ରାଚୀନ କାଳରେ ଗୋରୁ ଘେନି ପ୍ରାୟ ଯୁଦ୍ଧ ହୁଏ - ଋକ୍‌ବେଦରେ ଏହାର ଯଥେଷ୍ଟ ପ୍ରମାଣ ରହିଅଛି । ମହାଭାରତରେ ମଧ୍ୟ ଏହାର ପ୍ରମାଣ ମିଳେ । ଯେଉଁମାନେ ଦୁର୍ବଳ କିମ୍ବା ଏକାକୀ ବାସ କରୁଥିଲେ, ସେମାନଙ୍କ ପକ୍ଷରେ ଏସବୁ ରକ୍ଷାକରିବା ବଡ଼ ବିପଦର ବିଷୟ ହୋଇପଡ଼ିଥିଲା । ସେଥିପାଇଁ ସମସ୍ତେ ଦଳବଦ୍ଧ ହୋଇ ବାସ କରୁଥିଲେ ।

ଦଳ ହେଲେ ନେତା ଦରକାର - ଯେଉଁମାନେ ଜ୍ଞାନରେ, କ୍ଷମତାରେ ଶ୍ରେଷ୍ଠ, ସେହିମାନଙ୍କୁ ହିଁ ନେତୃତ୍ୱରେ ବରଣ କରାହେଉଥିଲା । ବଶିଷ୍ଠ, ଅତ୍ରି, କାଶ୍ୟପ, ଭରଦ୍ୱାଜ ପ୍ରଭୃତି ଋଷିଗଣ ଏହିରୂପେ ଦଳପତି ହୋଇଥିଲେ । ପ୍ରତି ଦଳର ଗୋଟିଏ ଗୋଟିଏ ଗୋତ୍ର ଥିଲା ଏବଂ ଗୋତ୍ର ପତିଙ୍କର ନାମ ଅନୁସାରେ ଗୋତ୍ରର ନାମ ହେଉଥିଲା - ଏହି ରୂପେ ଭରଦ୍ୱାଜ ଗୋତ୍ର, ବଶିଷ୍ଠ ଗୋତ୍ର, କାଶ୍ୟପ ଗୋତ୍ର ଇତ୍ୟାଦିର ନାମ ସୃଷ୍ଟି ହୋଇଅଛି । ଯେଉଁମାନେ ଅତ୍ରିଙ୍କ ଦଳରେ ରହୁଥିଲେ, ସେମାନେ କହୁଥିଲେ - ଆମେ ଅତ୍ରିଗୋତ୍ରର ଲୋକ; ଯେଉଁମାନେ ଭରଦ୍ୱାଜଙ୍କ ଦଳରେ ରହୁଥିଲେ ସେମାନେ କହୁଥିଲେ - ଆମେ ଭରଦ୍ୱାଜ ଗୋତ୍ରର ଲୋକ; ପରିଚୟ ଦେବା ସମୟରେ ଲୋକେ ଗୋତ୍ର ଦ୍ୱାରା ପରିଚୟ ଦେଉଥିଲେ ।

ଯେଉଁମାନେ କୌଣସି ଗୋଟିଏ ଗୋତ୍ରରେ ବାସ କରୁଥିଲେ, ସେମାନେ ଯେ ସମସ୍ତେ ଏକ ରକ୍ତର ସମ୍ପର୍କୀୟ ଲୋକ, ତାହା ନୁହେଁ - ବିଭିନ୍ନ ପରିବାରର ଲୋକ ଦଳବଦ୍ଧ ହୋଇ ଏକ ଗୋତ୍ର ପତିଙ୍କର ଆଶ୍ରୟ ନେଉଥିଲେ । ସମୟ ସମୟରେ ଏହା ମଧ୍ୟ ଘଟୁଥିଲା । ଜଣେ ଏବଂ ଏକ ସମୟରେ ଗୋଟିଏ ଗୋତ୍ରରେ ଅଛି, ସମୟରେ ହୁଏତ ସେ ଅପର ଗୋତ୍ରକୁ ଚ଼ଲିଗଲା ଗୃତ୍ସମଦ ଅଙ୍ଗିରା କୁଳରେ ଜନ୍ମଗ୍ରହଣ କରିଥିଲେ; କିନ୍ତୁ ଯୋଗ ଦେଇଥିଲେ ଭୃଗୁବଂଶରେ ।

ପ୍ରଥମେ 'ଗୋ' ଘେନି ହିଁ 'ଗୋତ୍ର' ରଚିତ ହୋଇଥିଲା । ସଭ୍ୟତାର ସଙ୍ଗେସଙ୍ଗେ 'ଗୋ' ସଂପର୍କ ଚ଼ଲିଗଲା - କିନ୍ତୁ ରହିଗଲା 'ଦଳ' ଓ 'ଦଳପତି' । ପୂର୍ବେ ଯେପରି ଲୋକେ 'ଗୋତ୍ର' ଦ୍ୱାରା ପରିଚିତ ହେଉଥିଲେ । 'ଗୋ' ସଂପର୍କ ଚ଼ଲିଯିବା ପରେ ମଧ୍ୟ ସେହି ପୂର୍ବ ନାମ ଅନୁସାରେ ପରିଚିତ ହେବାକୁ ଲାଗିଲେ । ସେମାନଙ୍କର ବଂଶଧରମାନେ ମଧ୍ୟ ଅଦ୍ୟାପି ସେହି ଗୋତ୍ର ଦ୍ୱାରା ପରିଚିତ ହେଉଅଛନ୍ତି; କିନ୍ତୁ ବର୍ତ୍ତମାନ ସେ 'ଗୋ' ନାହିଁ କି ସେ 'ଗୋତ୍ର' ନାହିଁ ।

ଅନୁବାଦ

• ସହକାର / ୧୪ଭାଗ / ୧ମସଂ( ୧୩୪୦)

# ମରୁଭୂମି

ସାଗରର ଯେଉଁଆଡ଼େ ଦୃଷ୍ଟି ଯାଏ, ସେ ଆଡ଼େ କେବଳ ଜଳ, ଜଳ, ଜଳ । ସେହିପରି ମରୁଭୂମିରେ ଯେଉଁ ଆଡ଼କୁ ଦେଖିଯାଅ, ସେ ଆଡ଼େ କେବଳ ବାଲି, ବାଲି । ସାଗର ଜଳର ସମୁଦ୍ର, ମରୁଭୂମି ବାଲିର ସମୁଦ୍ର । ସମୁଦ୍ର ଯେପରି ପୃଥିବୀର ଚାରିଭାଗରୁ ତିନିଭାଗ ମାଡ଼ି ବସିଛି । ମରୁଭୂମି ସେହିପରି ସ୍ଥଳଭାଗର ଚାରିଭାଗରୁ ଭାଗେ ମାଡ଼ି ବସିଛି ।

ଆମ ଦେଶର ଉତ୍ତର ପଶ୍ଚିମରେ ରାଜପୂତନା ପାଖକୁ ଅଛି ମରୁଭୂମି, ତାହାର ନାମ ଥର । ଚୀନ୍ ଦେଶର ପଶ୍ଚିମକୁ ଯେଉଁ ମରୁଭୂମି ଅଛି, ତା' ନାଁ ଖୋର୍ବି । ଆରବ ଦେଶଟାଯାକ ତ ଏକ ମରୁଭୂମି । ଆଫ୍ରିକାର ଉତ୍ତରେ ଅଛି ମରୁ, ତା'ର ନାମ ସାହାରା । ଉତ୍ତରଆମେରିକାର ପୂର୍ବକୁ ଅଛି ମରୁଭୂମି, ତା'ର ନାମ କାଲିଫର୍ନିଆ ଏବଂ ଅଷ୍ଟ୍ରେଲିଆ ସାରା ଦେଶଟା ତ ଗୋଟିଏ ବାଲିର ସମୁଦ୍ର ।

ଆମର ଯେପରି ଏଠି ବସନ୍ତରେ ଗଛେ ଗଛେ ନୂଆ ପତ୍ରଧରେ, ଲତାରେ ଲତାରେ ନୂଆ ଫୁଲଫୁଟେ, ମଳୟପବନ ଅଥୟ ହୋଇ ଦିନରାତି ବହି ଯାଉଥାଏ, ବର୍ଷାଦିନରେ କେଡ଼େସୁନ୍ଦର କଳାମେଘରୁ ବର୍ଷାଝରେ, ମେଘର ଡମ୍ବରୁ ଆକାଶରେ ବାଜେ, ଶରତରେ ନଈନାଳରେ କାଚଧାର ପରି ଜଳ ଦୁଇକୂଳ ଭରି ଚାଲିଥାଏ, କ୍ଷେତମାନଙ୍କରେ କେଡ଼େ ସୁନ୍ଦର ସବୁଜରଙ୍ଗର ଶସ୍ୟ ଓ ନୀଳ ଆକାଶରେ କେଡ଼େ ସୁନ୍ଦର ଜହ୍ନ ବି ଥାଏ । ମାତ୍ର ମରୁଭୂମିରେ ସେସବୁ କିଛି ନାହିଁ । ଅଛି ଖାଲି ବୈଶାଖମାସର ଜୀବନ-ମରା ଖରା, ଆଉ ପୌଷମାସର ପଥର-ଫଟା ଶୀତ । ବର୍ଷା ମାସରେ ବେଳେବେଳେ ଉପରେ, ଖୁବ୍ ଉପରେ କଳାମେଘ ଆଉ କେଉଁ ଦେଶକୁ ଉଡ଼ି ଯାଉ ଯାଉ ଝରଝର କରି ଦୁଇଅସରା ବର୍ଷା ଝରେଇ ଦେଇଯାଏ । ସେ ପୁଣି ସବୁ ମରୁଭୂମିରେ ନୁହେଁ । ସାରାଦିନ ଧରି ପ୍ରଚୁର ଖରା ଆଉ ରାତି ହେଲେ ଏତେ ଥଣ୍ଡା ପଡ଼େ ଯେ, ବଡ଼ବଡ଼ ପଥରସବୁ ଫାଟି ବାଲି ହୋଇଯାଏ ।

ଭାବି ଦେଖ ତ - କେଡ଼େ ଭୀଷଣ ଏ ବାଲିର ରାଜ୍ୟ । ଗଛ ନାହିଁ, ନଈ ନାହିଁ, ପଶୁ ନାହିଁ, ପକ୍ଷୀ ନାହିଁ କି ଲୋକର ଚହଲ ନାହିଁ । ସବୁବେଳେ ନିରବ, ସବୁବେଳେ ନିର୍ଜନ । ସେହି ନିରବତା ଭିତରେ କେବଳ କାଳବୈଶାଖର ଝଞ୍ଜା ପାଗଳ ପରି ଧୂଳିବାଲି ଧରି ଏଆଡ଼େ ସେ ଆଡ଼େ ଛୁଟି ଚାଲିଥାଏ ।

ଅକୂଳ ସାଗର ଭିତରେ ଯେପରି ଖଣ୍ଡେଖଣ୍ଡେ ଦ୍ୱୀପ ଭାସୁଥାଏ । ଏହି ବାଲି ସମୁଦ୍ର ଭିତରେ ସେହିପରି ସ୍ଥାନେ ସ୍ଥାନେ ଖଣ୍ଡେ ଖଣ୍ଡେ ସ୍ଥାନ ଥାଏ - ତାଙ୍କୁ ମରୁଦ୍ୱୀପ କୁହାଯାଏ । ଖୁବ୍ ସୁନ୍ଦର, ଖୁବ୍ ଉର୍ବର ଏହି ଦ୍ୱୀପସବୁ । କ୍ଷୁଦ୍ର ଜଳଧାର ନଈପରି ବହି ଯାଇଥାଏ । ସେଥିରେ କାଚଧାର ପରି ହେମ ଶୀତଳ ଜଳ, କୂଳେକୂଳେ କେଡ଼େ ସୁନ୍ଦର ଝଙ୍କାଳିଆ ଖଜୁରୀଗଛ, ସେଥିରେ ପେନ୍ଥିପେନ୍ଥି ଖଜୁରୀଫଳ ସବୁ ନଇଁପଡ଼ିଥାଏ । ଅନ୍ୟାନ୍ୟ କଣ୍ଟା, ଗୁଳ୍ମଜାତୀୟ ଗଛ ମଧ୍ୟ ଶୋଭା ପାଉଥାଏ । ଇଂରାଜୀରେ ଏହାକୁ କୁହାଯାଏ 'Oasis' ଅର୍ଥାତ୍ 'ମରୁଦ୍ୟାନ' ।



# ସର୍ବସାଧାରଣଙ୍କ ପାଇଁ ଏକ ଆବେଦନ ପତ୍ର

ଶ୍ରୀଯୁକ୍ତ ନୀଳମଣି ରାଉତରାୟ,

ଯୋଗାଣ ଓ ବାଣିଜ୍ୟ ବିଭାଗ ମନ୍ତ୍ରୀ ମହୋଦୟ ଓ ଚାନ୍ଦବାଲି ବାସୁଦେବପୁର ତିହିଡ଼ି ନିର୍ବାଚନ ମଣ୍ଡଳୀର ଲୋକପ୍ରତିନିଧି ।

ମହାଶୟ !

ଆପଣ ଆଜି ଆମ୍ଭମାନଙ୍କ ଗ୍ରାମାଞ୍ଚଳକୁ ଆସିଥିବାରୁ ଆମ୍ଭେମାନେ ଆଜି ଦିନଟିକୁ ଗୋଟିଏ ଶୁଭଦିନ ବୋଲି ମନେ କରିଛୁ । ଆମ ନିର୍ବାଚନ ମଣ୍ଡଳୀର ପ୍ରତିନିଧି ଥାଇ ଆପଣ ମନ୍ତ୍ରୀତ୍ୱ ଦାୟିତ୍ୱ ବହନ କରିଥିବାରୁ ଆମ୍ଭେମାନେ ଗର୍ବ ଅନୁଭବ କରୁ । ତରୁଣ ଜୀବନରେ ଆପଣ ମନ୍ତ୍ରୀତ୍ୱ ଗୁରୁଦାୟିତ୍ୱ ଯେପରି ସଂପାଦନ କରିପାରିଛନ୍ତି ତାହା ପ୍ରଶଂସାର କଥା । ଚଳିତବର୍ଷ ଯୋଗାଣର ବିଶେଷ ବ୍ୟବସ୍ଥା ଯୋଗୁଁ ଓଡ଼ିଆଚାଷୀ ତାହାର କଷ୍ଟଅର୍ଜିତ ଉତ୍ପନ୍ନର ଉଚିତ୍ ମୂଲ୍ୟ ପାଇପାରୁଛି ଓ ଦରିଦ୍ର ଖାଉଟି ମଧ୍ୟ ଉଚିତ୍ ମୂଲ୍ୟରେ ଦାନା ପାଇପାରୁଛି । ମନ୍ତ୍ରୀରୂପେ ଆପଣଙ୍କ ଦାୟିତ୍ୱରେ ଥିବା ବିଷୟଗୁଡ଼ିକ ସମଗ୍ର ଉତ୍କଳ ପାଇଁ ଧ୍ୟାନଦେଇ କାର୍ଯ୍ୟକରିବା ସଂଗେସଂଗେ ଆପଣ ଆପଣଙ୍କର ନିର୍ବାଚନ ମଣ୍ଡଳୀକୁ କେବେହେଁ ଭୁଲିନାହାଁନ୍ତି । ଚାନ୍ଦବାଲି ଓ ବାସୁଦେବପୁର ବିସ୍ତୃତ ଅଞ୍ଚଳ ଚିରଦିନ ପାନୀୟଜଳ ଅଭାବର ଯାତନା ଭୋଗ କରୁଥିଲା । ଆପଣଙ୍କ ପ୍ରଚେଷ୍ଟାରେ ସେ ଯାତନା ଦୂର ହୋଇଛି । ଆଜି ଆଶାତୀତ ସଂଖ୍ୟାରେ ନଳକୂପ ଯୋଗାଇ ଦେଇଥିବାରୁ ଉକ୍ତ ଅଞ୍ଚଳର ତୃଷାର୍ତ୍ତ ଜନସାଧାରଣ ଉତ୍କୃଷ୍ଟ ପାନୀୟଜଳର ଅଧିକାରୀ ହୋଇପାରିଛନ୍ତି । ଜନପ୍ରତିନିଧି ଉପଯୁକ୍ତ ହେଲେ ଜନସାଧାରଣ କିପରି ଉପକୃତ ହୁଅନ୍ତି ଏହା ତାହାର ଗୋଟିଏ ପ୍ରକୃଷ୍ଟ ଉଦାହରଣ । ବନ୍ୟା, ବାତ୍ୟା, ମରୁଡ଼ି ସଂକଟ ଯେତେବେଳେ ଏ ଅଞ୍ଚଳକୁ ଘଟିଛି ଆପଣ ସହାନୁଭୂତିଶୀଳ ପ୍ରତିନିଧି ରୂପେ ଅଞ୍ଚଳ ପରିଭ୍ରମଣ କରି ଲୋକଙ୍କର ଦୁଃଖ ଲାଘବ ନିମନ୍ତେ ଯଥାସମ୍ଭବ ବ୍ୟବସ୍ଥା କରିବାରେ ତ୍ରୁଟି କରି ନାହାଁନ୍ତି । ଆପଣ ଯତ୍ନ କରିନଥିଲେ ହୁଏତ ଚାନ୍ଦବାଲିରେ ଏ ପର୍ଯ୍ୟନ୍ତ ବ୍ଲକ୍ ବିଭାଗ ଖୋଲିନଥାନ୍ତା । ଆପଣଙ୍କୁ ଆମ୍ଭେମାନେ ଅନ୍ତରର ସହିତ ଅଭିନନ୍ଦିତ କରି ସମ୍ବର୍ଦ୍ଧନା ଜ୍ଞାପନ କରୁଛୁ ।

ଆମ୍ଭେମାନେ ଆପଣଙ୍କ ସାନ୍ନିଧ୍ୟ ଲାଭର ସୁବର୍ଣ୍ଣ ସୁଯୋଗ ଲାଭକରି ପ୍ରତିକାର ଆଶାରେ ଆମ୍ଭମାନଙ୍କର ନିମ୍ନଲିଖିତ କେତୋଟି ପ୍ରଧାନ ଓ ପୀଡ଼ାଦାୟକ ଅଭାବ ଅସୁବିଧା ଆପଣଙ୍କ ଗୋଚରକୁ ଆଣୁଛୁ –

୧. ମାତ୍ର ଏକ ମାଇଲ ଦୀର୍ଘ ଚାନ୍ଦବାଲି - ବାଲିଗାଁ କଚ୍ଚାରାସ୍ତାକୁ ଯଥାଶୀଘ୍ର ପକ୍କା କରାଯାଉ । ଏହା ହେବାଦ୍ୱାରା ପ୍ରାୟ ୧୦୦ଟି ଗ୍ରାମବାସୀ ତଥା ମଟର ଗମନାଗମନର ଉପଯୋଗୀ ହେବା ସଂଗେସଂଗେ ଗ୍ରାମର ବେପାର ବାଣିଜ୍ୟ ବଢ଼ିବ । ସବୁଶ୍ରେଣୀର ଚିନ୍ତାଶୀଳ ଲୋକେ ଏହା ସପକ୍ଷରେ ମତ ଦେଇଛନ୍ତି ।

୨. ଲୁଣାଜୁଆର ଏ ଅଞ୍ଚଳର ସର୍ବନାଶର ମୂଳ । ସୁଇସ୍ ଓ ଲୁଣାବନ୍ଧ ଦ୍ୱାରା ଏହାର ଆଶୁ ପ୍ରତିକାର ଏକାନ୍ତ ଆବଶ୍ୟକ ।

୩. ଗତ ମରୁଡ଼ି ଓ ଜଳକଷ୍ଟ ସମୟରେ ଯେଉଁ ଅଞ୍ଚଳରେ କୂଅ ହୋଇପାରେନା ପ୍ରତିକାର ସ୍ୱରୂପ ସେ ସବୁ ଅଞ୍ଚଳରେ ଟ୍ୟୁବ୍‌ୱେଲ୍ କରି ଦିଆଗଲା । ଯେଉଁ ଅଞ୍ଚଳରେ କୂଅ ହୋଇପାରେ ସେ ଅଞ୍ଚଳକୁ କୂଅ ଦିଆଯିବ ବୋଲି କୁହା ଯାଇଥିଲା । କିନ୍ତୁ ଦୁଃଖର କଥା ଏ ଅଞ୍ଚଳକୁ ଏ ପର୍ଯ୍ୟନ୍ତ ଜଳକଷ୍ଟର ପ୍ରତିକାର ସ୍ୱରୂପ ଗୋଟିଏ ହେଲେ କୂଅ ଦିଆଯାଇ ନାହିଁ । ଆମ୍ଭମାନଙ୍କର ଏହି ବାଲୁକାମୟ ଅଞ୍ଚଳରେ ଯଥେଷ୍ଟ ସଂଖ୍ୟକ କୂଅ ହେବାର ବ୍ୟବସ୍ଥା କରାଯାଉ । ଆମ୍ଭେମାନେ ଏପର୍ଯ୍ୟନ୍ତ ଜଳକଷ୍ଟ ଭୋଗକରୁଛୁ ।

୪. ଅନ୍ୟାନ୍ୟ ଅଞ୍ଚଳ ତୁଳନାରେ ଆମ୍ଭ ଅଞ୍ଚଳରେ ଖୁବ୍ କମ୍ ସଂଖ୍ୟକ ଟ୍ୟୁବ୍‌ୱେଲ୍ ହୋଇଛି । ହରିଜନ ବହୁଳ ବାଲିଗାଁ ଏ ଅଞ୍ଚଳର ଗୋଟିଏ ବିରାଟ ଗ୍ରାମ । ଏଠାରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ହେବା ଏକାନ୍ତ ବାଞ୍ଛନୀୟ । ଉତ୍କଟ ଦାରିଦ୍ର୍ୟ ଯୋଗୁଁ ଲୋକେ ସ୍କୁଲଗୃହର ଉନ୍ନତି ସାଧନ କରିପାରୁ ନାହାଁନ୍ତି । ଯେକୌଣସି ସୂତ୍ରରୁ ଏହାକୁ ଆର୍ଥିକ ସାହାଯ୍ୟ ମିଳିବାର ବ୍ୟବସ୍ଥା ହେଉ ।

୫. ଏହି ଅଞ୍ଚଳ ଜୋର ଓ ନାଳରେ ପୂର୍ଣ୍ଣ । ଏଣୁ ଗମନାଗମନ ଆମ୍ଭମାନଙ୍କ ପକ୍ଷରେ ଅତି ସଂକଟପୂର୍ଣ୍ଣ । ଏହାଯୋଗୁଁ ମଧ୍ୟ କୃଷିକାର୍ଯ୍ୟରେ ବ୍ୟାଘାତ ଘଟୁଛି । ପଲ୍ଲୀଜୀବନର ମଂଗଳପାଇଁ ଜୋରନାଳ ଗୁଡ଼ିକରେ ଯଥାଶୀଘ୍ର କାଠପୋଲ ନିର୍ମାଣ କରାଯାଉ ।

ଆମ୍ଭେମାନେ ଆପଣଙ୍କର ମଂଗଳ କାମନା କରି ଆପଣଙ୍କୁ ପୁନର୍ବାର ଅଭିନନ୍ଦନ ଜ୍ଞାପନ କରୁଛୁ ।

*ତା.୦୪.୦୬.୧୯୬୦ମସିହା*

*ଆପଣଙ୍କର ବିଶ୍ୱସ୍ତ, ବାଲିଗାଁ ଗ୍ରାମବାସୀ*

*ଜଗନ୍ନାଥ ପଢ଼ିଆରୀ*

# ଅଭିଭାଷଣ

ମାନନୀୟ ସଭାପତି ମହୋଦୟ, ଶ୍ରଦ୍ଧେୟ ଅତିଥିବୃନ୍ଦ ଓ ଭଦ୍ରମଣ୍ଡଳୀ,

ଧାମରା (ଚାନ୍ଦବାଲି) ବନ୍ଦର ଉନ୍ନୟନ କମିଟିର ସଭ୍ୟବୃନ୍ଦ ତଥା ଚାନ୍ଦବାଲିବାସୀଙ୍କ ପକ୍ଷରୁ ମୁଁ ଅଭିବାଦନ ପୂର୍ବକ ଆପଣମାନଙ୍କୁ ଆନ୍ତରିକ ସ୍ୱାଗତ ଜ୍ଞାପନ କରୁଅଛି । ଆଜି ଆପଣମାନେ ଆମ୍ଭମାନଙ୍କ ଅନୁରୋଧରେ କର୍ତ୍ତବ୍ୟର ଗୁରୁଦାୟିତ୍ୱ ଏଡ଼ି ଓ ଆପଣମାନଙ୍କର ମୂଲ୍ୟବାନ ସମୟରୁ କିଞ୍ଚିତ୍ ଦାନକରି ଏହି ସମ୍ମିଳନୀରେ ଯୋଗ ଦେଇଥିବାରୁ ଆମ୍ଭେମାନେ ଆପଣଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛୁ । ରାଜ୍ୟର ଏତେ ପ୍ରତିନିଧି ସ୍ଥାନୀୟ ବିଜ୍ଞ ବ୍ୟକ୍ତିମାନଙ୍କୁ ଆଜି ଏକତ୍ରଭାବେ ଆମ୍ଭମାନଙ୍କ ମେଳରେ ଲାଭ କରିଥିବାର ସୌଭାଗ୍ୟ ପାଇ ଆମ୍ଭେମାନେ ନିଜକୁ ଗର୍ବିତ ଅନୁଭବ କରୁଅଛୁ । ଆପଣମାନଙ୍କ ସମାଗମ ଆମ୍ଭମାନଙ୍କ ମନରେ ଯୁଗପତ୍ ଆନନ୍ଦ ଓ ଆଶାର ସଞ୍ଚାର କରିଛି । ଏପରି ମାହେନ୍ଦ୍ର ମୁହୂର୍ତ୍ତରେ ସୁବର୍ଣ୍ଣସୁଯୋଗ ଲାଭକରି ମୁଁ ଧାମରା (ଚାନ୍ଦବାଲି) ବନ୍ଦର ସଂପର୍କରେ କେତୋଟି ସମସ୍ୟା ଆପଣମାନଙ୍କ ସମକ୍ଷରେ ଉପସ୍ଥାପିତ କରୁଅଛି ।

ସରକାରୀ ରେକର୍ଡ଼ରେ ଚାନ୍ଦବାଲି ବନ୍ଦର 'ଧାମରା (ଚାନ୍ଦବାଲି)' ନାମରେ ଅଭିହିତ ।

ଚାନ୍ଦବାଲି ଅନ୍ୟୁନ ୪୦୦ବର୍ଗମାଇଲ ପରିମିତ ବିସ୍ତୀର୍ଣ୍ଣ ତଳମାଳ ଅଞ୍ଚଳର ପ୍ରାକୃତିକ ବାଣିଜ୍ୟ କେନ୍ଦ୍ର । ସମଗ୍ର ଚାନ୍ଦବାଲି ଥାନା, ବାସୁଦେବପୁର ଥାନାର ଅର୍ଦ୍ଧାଂଶ ଧାମନଗର ଥାନାର ଅର୍ଦ୍ଧାଂଶ, ଆଳି ଥାନାର ଅର୍ଦ୍ଧାଂଶ, ସମଗ୍ର ରାଜନଗର ଥାନା, ଯାଜପୁର ଥାନାର ଏକ ଚତୁର୍ଥାଂଶ ଓ ବିଂଝାରପୁର ଥାନାର ଏକ ଚତୁର୍ଥାଂଶର ପଣ୍ୟ କ୍ରୟବିକ୍ରୟ ପାଇଁ ଚାନ୍ଦବାଲି ଉପରେ ସଂପୂର୍ଣ୍ଣ ନିର୍ଭର କରେ । ତଥାକଥିତ, ତଳମାଳ ଅଞ୍ଚଳରେ ସ୍ଥଳପଥର ଯୋଗାଯୋଗ ନାହିଁ – ପରିବହନ ପାଇଁ ଏ ଅଞ୍ଚଳର ଲୋକେ ଜୁଆରିଆ ନଦୀ ନାଳ ଉପରେ ନିର୍ଭର କରନ୍ତି । ଚାନ୍ଦବାଲି ଉକ୍ତ ବିସ୍ତୀର୍ଣ୍ଣ ଅଞ୍ଚଳର

ପ୍ରାୟ ପ୍ରତି ଗ୍ରାମ ସହିତ ବୈତରଣୀ, ସାଳନ୍ଦୀ, ରେବ, କପାଳୀ, ବ୍ରାହ୍ମଣୀ, ଖରସୁଆଁ, ଧାମରା ନଦୀ ସମୂହ ଓ ଅସଂଖ୍ୟ ଯୋର ଓ ନାଳ ଦ୍ୱାରା ସଂଯୋଜିତ । ଏଣୁ ନଦୀ ନାଳ ବହୁଳ ବିସ୍ତୃତ ତଳମାଳ ଅଞ୍ଚଳର ଚାନ୍ଦବାଲି ହିଁ ଏକମାତ୍ର ସୁବିଧାଜନକ ବାଣିଜ୍ୟ କେନ୍ଦ୍ର ଅଟେ । ଏହା ଏହି ଅଞ୍ଚଳର ସମସ୍ତ ଧାନ ଚାଉଳ ଓ ଝୋଟ ପ୍ରଭୃତି କ୍ରୟକରି କଲିକତାକୁ ରପ୍ତାନି କରେ ଓ ତାହାର ବିନିମୟରେ ଦୈନନ୍ଦିନ ଜୀବନଯାପନ ପାଇଁ ଆବଶ୍ୟକ ଯାବତୀୟ ପଦାର୍ଥ ସେଠାରୁ ଆମଦାନୀ କରି ଜନସାଧାରଣଙ୍କୁ ଯୋଗାଏ । କେବଳ ଏତିକି ନୁହେଁ, ଚାନ୍ଦବାଲି ବନ୍ଦର କେନାଲ ଦ୍ୱାରା ପଟ୍ଟାମୁଣ୍ଡାଇ, କେନ୍ଦ୍ରାପଡ଼ା ଓ କଟକ ସହିତ ଏବଂ ବର୍ଷାକାଳରେ ବୈତରଣୀ ନଦୀଦ୍ୱାରା ଯାଜପୁର ଟାଉନ୍ ସହିତ ମଧ୍ୟ ବାଣିଜ୍ୟ କରେ । ଏସବୁ କଥା ବିଚାରକୁ ନେଲେ ଚାନ୍ଦବାଲିର ଅବସ୍ଥିତି ଓ ପ୍ରାଧାନ୍ୟ ବିଷୟରେ ସହଜରେ ହୃଦୟଙ୍ଗମ କରାଯାଏ ।

ବାଣିଜ୍ୟର ସଂପ୍ରସାରଣ ଓ ସଂକଟ ସମୟରେ ଓଡ଼ିଶାକୁ ଖାଦ୍ୟ ପ୍ରଭୃତି ସରବରାହ ପାଇଁ ଇଂରେଜମାନେ ଅନୁସନ୍ଧାନ କରି ଅବଶେଷରେ ଚାନ୍ଦବାଲିକୁ ବନ୍ୟାପ୍ଲାବିତ ଅଞ୍ଚଳର ଉତ୍କୃଷ୍ଟ ସ୍ଥାନ୍ ରୂପେ ଆବିଷ୍କାର କରିଥିଲେ । ଏହି ଅନୁସନ୍ଧାନ ପରଠାରୁ ୧୮୭୦ ଖ୍ରୀଷ୍ଟାବ୍ଦରୁ କଲିକତା ଚାନ୍ଦବାଲି ମଧ୍ୟରେ ନିୟମିତ ଜାହାଜ ଚଳାଚଳ ଆରମ୍ଭ ହେଲା ଓ ଏହା ହେବାଦ୍ୱାରା ଓଡ଼ିଶାର ଅଶେଷ କଲ୍ୟାଣ ସାଧିତ ହେଲା । ମାଲପତ୍ର ଛଡ଼ା ଓଡ଼ିଶାର ବନ୍ୟାପୀଡ଼ିତ ଗ୍ରାମାଞ୍ଚଳରେ ଅସଂଖ୍ୟ ଦରିଦ୍ର ଲୋକ ଜୀବିକାନ୍ୱେଷଣରେ ଜାହାଜରେ ଏହିବାଟେ କଲିକତାକୁ ଓ କଲିକତାରୁ ଏଠାକୁ ଶସ୍ତାରେ ଗମନ ଓ ପ୍ରତ୍ୟାଗମନ କରିପାରିଲେ ।

ଓଡ଼ିଶା ବନ୍ଦର ସମୂହର କେନ୍ଦ୍ର ଅଫିସ୍ ଏହି ଚାନ୍ଦବାଲିରେ ଅବସ୍ଥିତ । ଓଡ଼ିଶାର ବନ୍ଦରମାନଙ୍କ ମଧ୍ୟରେ ଏକମାତ୍ର ଚାନ୍ଦବାଲି ଥିଲା ଜୀବନ୍ତ ଓ କାର୍ଯ୍ୟକାରୀ ଏବଂ ଏତଦ୍ୱାରା ତାହା ଉତ୍କଳର ବୋଇତ ବାଣିଜ୍ୟକୁ ଏପର୍ଯ୍ୟନ୍ତ ସମ୍ଭାଳି ରଖିଥିଲା । ଜାହାଜ ଚାଲୁଥିଲା ବେଳେ ବର୍ଷେବର୍ଷେ ଏହାର ଆମଦାନୀ ଆଶାତୀତ ଭାବରେ ବୃଦ୍ଧିଲାଭ କରୁଥିଲା ଏବଂ ଏହିସବୁ ରପ୍ତାନୀ ଉପରୁ ବନ୍ଦରର ପ୍ରଶସ୍ତ ଆୟ ଆରମ୍ଭ ହୋଇ ପାରୁଥିଲା । ଏହାର କେତୋଟି ମାତ୍ର ଦୃଷ୍ଟାନ୍ତ ଆପଣଙ୍କ ଅବଗତି ନିମନ୍ତେ ନିମ୍ନରେ ପ୍ରଦତ୍ତ ହେଲା :

| ବର୍ଷ | ରପ୍ତାନିର ପରିମାଣ | କେତେଥରରେ ଜାହାଜଗୁଡ଼ିକ ନେଇଛି | ବନ୍ଦରରୁ ସରକାରୀ ଆୟ |
|---|---|---|---|
| ୧୯୦୯-୧୦ | ୨,୧୯,୩୦୦ ମହଣ | ୧୧୨ | ଟ.୫୬,୩୮୭ |
| ୧୯୧୦-୧୧ | ୨,୪୦,୨୨୪ ମହଣ | ୧୪୬ | ଟ.୪୮,୮୧୫ |
| ୧୯୧୧-୧୨ | ୨,୮୦,୫୩୮ ମହଣ | ୨୦୧ | ଟ.୪୮.୮୦୨ |
| ୧୯୩୫-୩୬ | ୮,୭୮,୯୧୪ ମହଣ | ୧୪୨ | ଟ.୧,୦୨୫, |
| ୧୯୩୬-୩୭ | ୮,୮୨,୬୫୦ ମହଣ | ୧୩୯ ଶୁଳ୍କ | ଟ.୧,୪୫୨ |
| ୧୯୫୩-୫୪ | ୭,୬୩,୭୬୨ ମହଣ | ୭୧ | ଟ.୪୭,୫୩୪ |

ଦ୍ୱିତୀୟ ମହାଯୁଦ୍ଧର ଆବଶ୍ୟକତା ମେଣ୍ଟାଇବାକୁ କଲିକତା - ଚାନ୍ଦବାଲି ମଧ୍ୟରେ ଯାତାୟାତ କରୁଥିବା ଜାହାଜଗୁଡ଼ିକୁ ୧୯୪୩ରେ ଯୁଦ୍ଧ ସଂପର୍କୀୟ କାର୍ଯ୍ୟରେ ନିଯୁକ୍ତ କରାଗଲା । ଯୁଦ୍ଧପରେ ୧୯୪୭ଠାରୁ ପୁଣି ଅବଶ୍ୟ କେତୋଟି ଜାହାଜ ଯାତାୟାତ କଲା କିନ୍ତୁ ଚାନ୍ଦବାଲିର ପ୍ରଧାନ ପଣ୍ୟଦ୍ରବ୍ୟ ଧାନ ଚାଉଳ ଉପରେ ସରକାରୀ କଣ୍ଟ୍ରୋଲ ଜାରୀ ହେବାରୁ ଓ ଧାନ ଚାଉଳ ସରକାରୀ ନିୟନ୍ତ୍ରଣରେ ଜାହାଜରେ ରପ୍ତାନୀ କରାନଯାଇ ରେଳ୍ଣଯୋଗେ ରପ୍ତାନି କରାଯିବାରୁ ଜାହାଜ ଚଳାଚଳ ପଙ୍ଗୁ ହୋଇପଡ଼ିଲା ଏବଂ ଫଳତଃ ଓଡ଼ିଶାର ଜଳପଥ ବାଣିଜ୍ୟର ବିନାଶ ଘଟିଲା ।

ଚାନ୍ଦବାଲି ଏକ ପ୍ରାକୃତିକ ନଦୀ ବନ୍ଦର । ଏହାକୁ ବନ୍ଦର ରୂପେ ପୁନର୍ଜୀବିତ କରିବା ସେପରି କିଛି ବ୍ୟୟ ସାପେକ୍ଷ ନୁହେଁ - ଜନସାଧାରଣଙ୍କ ମଂଗଳ ପ୍ରତି ଦୃଷ୍ଟି ରଖି ସରକାର ଏହାକୁ ପୁନର୍ଜୀବିତ କରିବାକୁ ଆନ୍ତରିକତା ପ୍ରକାଶ କଲାମାତ୍ରେ, ଏହା ଏକ ଜୀବନ୍ତ ବନ୍ଦରରେ ପରିଣତ ହେବ ।

ଯୋଜନା କାର୍ଯ୍ୟ ଓ ଅନ୍ୟାନ୍ୟ ଆବଶ୍ୟକତା ମେଣ୍ଟାଇବାକୁ ରେଳବାଇ ଉପରେ ଏତେ ଚାପ ପଡୁଛି ଯେ ପଣ୍ୟଦ୍ରବ୍ୟର ନିୟମିତ ସରବରାହ ହୋଇନପାରି ପୁଞ୍ଜି ଅଭାବରୁ ବାରମ୍ବାର ଅର୍ଥ ସଂକଟର ସମ୍ମୁଖୀନ ହେଉଥିବାରୁ କ୍ରୟଶକ୍ତି ହରାଇ ବଜାର ମାନ୍ଦା ହୋଇପଡୁଛି । ଦରିଦ୍ର ଜନସାଧାରଣ ସେମାନଙ୍କ ଉତ୍ପନ୍ନ ଦ୍ରବ୍ୟ ମାନ୍ଦା ଦରରେ ବିକିବାକୁ ବାଧ୍ୟ ହେଉଛନ୍ତି ଓ ବେଳେବେଳେ ବିକ୍ରିକରି ନପାରି ବିଷମ

ଅଭାବରେ ପଡୁଛନ୍ତି । ବଜାରର ଏପରି ପରିସ୍ଥିତି କୃଷକ ସମାଜର ଆର୍ଥିକ ଦୁର୍ଗତି ପାଇଁ ବହୁ ପରିମାଣରେ ଦାୟୀ । ଚାନ୍ଦବାଲି ବଜାର ବାରମ୍ବାର ଏପରି ପରିସ୍ଥିତିର ସମ୍ମୁଖୀନ ହୁଏ । ଜାହାଜ ଚଳାଚଳ ହେଲେ ଏଠାରୁ ନିୟମିତ ମାଲ ସରବରାହ କରାଯାଇପାରିବ ଯାହାଫଳରେ କି ଲୋକଙ୍କ ଉତ୍ପନ୍ନ ଦ୍ରବ୍ୟ ଉଚିତ ମୂଲ୍ୟରେ କିଣିବାକୁ ସ୍ଥାନୀୟ ବଜାର ସବୁବେଳେ ତେଜ ହୋଇରହିବ । ଏପରି ବଜାର ଲୋକଙ୍କ ଆର୍ଥିକ ଦୁର୍ଗତି ନିବାରଣ କରିବାରେ ପରମ ସହାୟକ ।

କେବଳ ଏତିକି ନୁହେଁ, ଚାନ୍ଦବାଲିକୁ ଜାହାଜ ଚଳାଚଳ ହେଲେ କେବଳ ସ୍ଥାନୀୟ ବଜାରର କ୍ରୟଶକ୍ତି ଯେ ସର୍ବଦା ତୀକ୍ଷ୍ଣ ରହିବ, ତାହା ନୁହେଁ; ଜାହାଜ ଚଳାଚଳ ହେଲେ ସ୍ଥାନୀୟ ଗ୍ରାମାଞ୍ଚଳ ଲୋକେ ଶ୍ରମିକରୂପେ ମାଲ ବୋଝେଇ ଓ ଖଲାସ କରି ଜୀବିକାର୍ଜନ କରିବେ । ଅକର୍ମଣ୍ୟ ହୋଇ ପଡ଼ି ରହିଥିବା ନୌକାଗୁଡ଼ିକ ପରିବହନ କାର୍ଯ୍ୟରେ ନିଯୁକ୍ତ ହେବାଦ୍ୱାରା ବହୁସଂଖ୍ୟକ ମାଝୀଙ୍କର ଦୁଃଖ ଘୁଞ୍ଚିବ । ଅନେକ କଲିକତା ସହିତ ନାନା ବାଣିଜ୍ୟର ସୁଯୋଗ ଲାଭ କରିବେ । ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକ ଲୋକେ ଆପାତତଃ ଶସ୍ତାମୂଲ୍ୟରେ ପାଇପାରିବେ ଓ ଗୁରୁଭାର ଗ୍ରସ୍ତ ରେଳବାଇ ଉପରୁ କିୟତ୍ ପରିମାଣରେ ଚାପ କମିଯିବ ।

ଏଣୁ ଚାନ୍ଦବାଲି ବନ୍ଦରକୁ ଅଚିରେ ପୁନର୍ଜୀବିତ କରାଯିବାକୁ ଓ ତତ୍ପ୍ରସଂଗରେ ନିମ୍ନଲିଖିତ କେତୋଟି ଅତ୍ୟନ୍ତ ଆବଶ୍ୟକୀୟ ଉନ୍ନତିକରଣ ନିମନ୍ତେ ଆମ୍ଭେମାନେ ବିନୟର ସହିତ ଅନୁରୋଧ କରୁଅଛୁଁ –

୧. ଧାମରା ମୁହାଣରୁ ଚାନ୍ଦବାଲି ପର୍ଯ୍ୟନ୍ତ ନଦୀପଥ ଯଥାଯଥ ରୂପେ ସର୍ଭେ କରାଯାଇ ଜାହାଜ ଚଳାଚଳ ପାଇଁ ସୁଗମ କରାଯାଉ ।

୨. ଚାନ୍ଦବାଲିରୁ ରାଜ୍ୟାନ୍ତରକୁ ଯେତେ ଧାନ ଚାଉଳ ରପ୍ତାନୀ ହେବ ତାହା ଜାହାଜରେ ହିଁ ରପ୍ତାନୀ କରାଯାଉ ।

୩. ଗ୍ରାମାଞ୍ଚଳର ଅସଂଖ୍ୟ ନୌକା ପ୍ରତ୍ୟହ ଧାନ ଚାଉଳ ଆଣି ଚାନ୍ଦବାଲିରେ ଭଡ଼ାରେ ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ବୋଝେଇ କରି ଫେରେ କିନ୍ତୁ ଚାନ୍ଦବାଲିର ସମସ୍ତ ନଦୀତୀର ଘାଟର ଅବସ୍ଥା ଏଡ଼େ ଶୋଚନୀୟ ଓ ବିପଦ ସଂକୁଳ ଯେ ସେଥିରେ ନିରାପଦରେ କାର୍ଯ୍ୟ କରିବା ପ୍ରାୟ ଅସମ୍ଭବ ହୋଇପଡ଼ିଛି । ଉକ୍ତ ନଦୀତୀର ଘାଟର ଉନ୍ନତି କରଣ ନିମନ୍ତେ ବ୍ୟବସ୍ଥା ହେଉ ଓ ଚାନ୍ଦବାଲି ବନ୍ଦରର ପୂର୍ବ ଅଂଶର ଅତି ଶୋଚନୀୟ ଅବସ୍ଥାରେ ପଡ଼ିରହିଥିବା ରାସ୍ତାଗୁଡ଼ିକର ମଧ୍ୟ ଉନ୍ନତି ବିଧାନ କରାଯାଉ ।

୪. ଚାନ୍ଦବାଲିରେ ଗୋଟିଏ ନୌକା ନିର୍ମାଣ କାରଖାନା ଓ ପାଲ ପ୍ରସ୍ତୁତି କାରଖାନା ସ୍ଥାପିତ ହେଉ । ଏ ଆଡ଼ର ବିସ୍ତୃତ ଅଞ୍ଚଳରେ ପ୍ରଧାନତଃ ନୌକାଦ୍ୱାରା ପରିବହନ କାର୍ଯ୍ୟ ସଂପାଦିତ ହୁଏ । ଏପରି ଗୋଟିଏ ସଂସ୍ଥା ସ୍ଥାପିତ ହେଲେ ଲୋକେ ଉପକୃତ ହେବେ ।

୫. ଚାନ୍ଦବାଲିରେ ଗୋଟିଏ ନୌ-ଶିକ୍ଷା ବିଦ୍ୟାଳୟ (ନେଭାଲ ଟ୍ରେନିଂ ସ୍କୁଲ) ଖୋଲାଯାଉ । ଏ ଅଞ୍ଚଳରେ ନାବିକ ଜାତୀୟ ଲୋକେ ବହୁ ସଂଖ୍ୟାରେ ଅଛନ୍ତି । ଉକ୍ତ ସ୍କୁଲ ଏଠାରେ ଖୋଲାଗଲେ ନୌବିଭାଗ ପାଇଁ ପାକିସ୍ଥାନ ଲୋକ ପରିବର୍ତ୍ତେ ଦେଶୀୟ ତାଲିମ ପ୍ରାପ୍ତ ଲୋକେ ନୌବିଭାଗ ପାଇଁ ମିଳିପାରିବେ ।

ବୈତରଣୀ ଓ ବ୍ରାହ୍ମଣୀର ସଂଗମ ସ୍ଥଳରୁ ସମୁଦ୍ର ପର୍ଯ୍ୟନ୍ତ ନଦୀ ଧାମରା ନାମରେ ଅଭିହିତ । ଏହା ଯେପରି ଗଭୀର, ସେହିପରି ପ୍ରଶସ୍ତ ମଧ୍ୟ । ନାବିକମାନେ କହନ୍ତି ଏହାର ମୁହାଣର ପରିସ୍ଥିତି ଏପରି ଯେ ବଙ୍ଗୋପସାଗରର ଝଡ଼ବତାସ ଏହାକୁ ଅଶାନ୍ତ କରିପାରେନା ଓ ଏହା ଏକ ଉତ୍ତମ ପ୍ରାକୃତିକ ପୋତାଶ୍ରୟ ନିମନ୍ତେ ଅତି ଉପଯୁକ୍ତ ଏବଂ ୨୦ଫୁଟ ପର୍ଯ୍ୟନ୍ତ ବଡ଼ ଜାହାଜ ଏବେର ନଦୀ ମୁହାଣରୁ ପ୍ରାୟ ୧୫ମାଇଲ ପର୍ଯ୍ୟନ୍ତ ନଦୀ ମଧ୍ୟକୁ ଆସିପାରିବ । କଥିତ ହୁଏ ପୂର୍ବେ ଧାମରା ମୁହାଣରୁ ପ୍ରଚୁର ଲୁଣ ଓ ଶୁଖୁଆ ବିଦେଶକୁ ରପ୍ତାନି କରାଯାଉଥିଲା । ଏ ପର୍ଯ୍ୟନ୍ତ ମଧ୍ୟ ଏହାର ମୁହାଣ ଅଞ୍ଚଳରେ ପ୍ରଚୁର ଶୁଖୁଆ ପ୍ରସ୍ତୁତ ହୋଇ ଓଡ଼ିଶାର ବହୁ ଅଞ୍ଚଳକୁ ଯୋଗାଇ ଦିଆଯାଏ ।

ଆପଣମାନଙ୍କ ଅବଗତି ନିମନ୍ତେ ଧାମରା ସଂପର୍କରେ କେତେକ ବିଶେଷଜ୍ଞମାନଙ୍କ ମତ ନିମ୍ନରେ ଉଦ୍ଧୃତ ହେଲା -

ଶ୍ରୀ କର୍ତ୍ତାର ସିଂହଙ୍କ ସର୍ଭେ - ରିପୋର୍ଟ ଉପରେ ନିର୍ଭର କରି ଫରାସୀ ବିଶେଷଜ୍ଞମାନେ କହିଛନ୍ତି ଯେ, ନଦୀ ମଧ୍ୟସ୍ଥିତ ବାଲିଚଡ଼ାର ଉନ୍ନୟନ କରାଯାଇ ପାରିବ । ଉପସ୍ଥିତ ଚଡ଼ାଟି ନାଳର ଅତ୍ୟଧିକ ଓସାରଯୋଗୁଁ ହୋଇଅଛି ଏବଂ ପାଲ୍‌ମିରା ପଏଣ୍ଟ ଓ ତ୍ରିକୋଣ ଅଂଶ ମଧ୍ୟରେ ନିୟନ୍ତ୍ରଣ ବାଡ଼ ବା ଟ୍ରେନିଂ ୱାଲ୍‌ସ ଦେଲେ ତାହା ନିଃସନ୍ଦେହରେ ଅତି ଉତ୍ତମ ଫଳ ଦେବ । ଏହି ନିୟନ୍ତ୍ରଣ ବାଡ଼ ଉତ୍ତର ଏବଂ ଦକ୍ଷିଣ ପାର୍ଶ୍ୱରେ ଥିବା ବାଲିସ୍ତୂପର ଉଚ୍ଚତା ସହିତ ସମାନ ହେବା ଉଚିତ ଏବଂ ଜୁଆର ଚିହ୍ନର ଅଧା ସହିତ ଅର୍ଥାତ୍ + ଛଅଫୁଟ ହେବା ଉଚିତ । ତାହାହେଲେ ଫ୍ରାନ୍ସର ଆବିଦଜାନ ବନ୍ଦର ସଦୃଶ ଏହି ଦେଶରେ ମିଳୁଥିବା ପ୍ରଚୁର୍ ପରିମାଣରେ ବାଉଁଶର ଜାଫ୍ରି କାମଦ୍ୱାରା

ବାଡ଼ ନିର୍ମିତ ହୋଇପାରିବ, ଯାହା ବନ୍ୟା ସମୟରେ କ୍ଷୟରୁ ଉକ୍ତ ନାଳକୁ ରକ୍ଷାକରି ପାରିବ ।

କର୍ଣ୍ଣେଲ ଟି.ଏମ୍ ଓଗ୍ ଯେ କି ଭାରତ ସରକାରଙ୍କ କେନ୍ଦ୍ର ଜଳଶକ୍ତି, ସେଚନ ଏବଂ ନୌ-ଚଳାଚଳ କମିଶନର ନେଭିଗେସନ୍ ଡିରେକ୍ଟର ଥିଲେ ଏବଂ ଓଡ଼ିଶାର ତତ୍କାଳୀନ ଶିଳ୍ପ, ବାଣିଜ୍ୟ ଓ ଶ୍ରମମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କର ପ୍ରେରଣାରେ "ଧାମରା ନଦୀକୂଳରେ ଗୋଟିଏ ବନ୍ଦରର ଉନ୍ନୟନ କରିବାରେ ସମ୍ଭାବନା" ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାକୁ ୧୯୪୯ରେ ଏହି ନଦୀକୁ ସର୍ଭେ କରିଥିଲେ, ସେ ତାଙ୍କ ରିପୋର୍ଟରେ ୨୬ପୃଷ୍ଠାରେ ଲେଖିଛନ୍ତି - "ଧାମରା ନଦୀର ସମୁଦ୍ରଠାରୁ ପ୍ରସ୍ତାବିତ ବନ୍ଦର ସ୍ଥାନ ପର୍ଯ୍ୟନ୍ତ ନୌ-ଚଳାଚଳର ଉପଯୋଗିତା ଏପରି ଯେ, ତହିଁରେ ଉତ୍ତର-ନାଳ ବାଟେ ଉଠିଆ ଜୁଆରରେ ୧୭ଫୁଟ ଓ ପଡ଼ିଆ ଜୁଆରରେ ୧୩ଫୁଟ ଗଭୀର ଜଳରେ ଭାସମାନ ହେବା ଭଳି ଜାହାଜ ଆସି ପାରିବ । ମଧ୍ୟ ନାଳରେ ଉଠିଆ ଜୁଆରରେ ୨୦ଫୁଟ ଓ ପଡ଼ିଆ ଜୁଆରରେ ୧୬ଫୁଟ ଗଭୀର ଜଳରେ ଭାସମାନ ହେବା ଭଳି ଜାହାଜମାନ ଆସି ପାରିବ । ଏଣୁ ଏହାର ପ୍ରାକୃତିକ ଅବସ୍ଥିତିରେ ଏବଂ ବିନା ଉନ୍ନୟନରେ ଏହି ନଦୀ ୩୦୦୦ ଟନ୍‌ରୁ ୪୦୦୦ ଟନ୍ ସାମର୍ଥ୍ୟ ବିଶିଷ୍ଟ ଜାହାଜ ଗୁଡ଼ିକୁ ସ୍ଥାନ ଦେବାକୁ ସକ୍ଷମ ଅଟେ ।

କ୍ୟାପଟେନ୍ ଏଇଚ୍.ଜି.ଜି.ଏସ୍‌ଟନ୍ ଯେ କି ବିହାର-ଓଡ଼ିଶା ସରକାରଙ୍କ ଦ୍ୱାରା ଧାମରା ନଦୀ ଏବଂ ତାହାର ମୁହାଣକୁ ସର୍ଭେ କରିବାକୁ ନିଯୁକ୍ତ ହୋଇଥିଲେ, ସେ ୧୯୨୬ ଓ ୧୯୨୭ରେ ଏହାକୁ ସର୍ଭେକରି ତାଙ୍କ ରିପୋର୍ଟର ୨୪ପୃଷ୍ଠାରେ ଲେଖିଛନ୍ତି - "ପରିଶେଷରେ ମୁଁ ଏହି ମନ୍ତବ୍ୟ ପ୍ରକାଶ କରିବାକୁ ଚାହେଁ ଯେ ଏହି ଜିଲ୍ଲାରେ କେତେମାସ ସର୍ଭେ କରିବାପାଇଁ ଅତିବାହିତ କରିବାପରେ, ସବୁଠାରୁ ଅଧିକ ସୁନିଶ୍ଚିତ ହୋଇ ପାରିଛି ଯେ, ଭବିଷ୍ୟତରେ ବନ୍ଦର ପାଇଁ ଶ୍ରେଷ୍ଠତ୍ୱ ଅର୍ଜନ କରିବାର ସମ୍ଭାବନା ଧାମରା ନଦୀର ଯଥେଷ୍ଟ ରହିଛି । ସମଗ୍ର ପ୍ରଦେଶ ମଧ୍ୟରେ ଧାମରା ନଦୀ ନିଃସନ୍ଦେହରେ ସବୁଠାରୁ ଏକ ଉତ୍କୃଷ୍ଟ ଜଳପଥ ଅଟେ ଏବଂ ତାହା ସହିତ ମିଳିତ ହୋଇଥିବା ମନ୍ତେଇ, ବ୍ରାହ୍ମଣୀ, ଖରସୁଆଁ ଓ ବୈତରଣୀ ନଦୀ ମାନଙ୍କରେ ସମ୍ମିଳିତ ସ୍ରୋତର ସାହାଯ୍ୟରେ ତାହା ଅତି ନିକଟ ଭବିଷ୍ୟତରେ ଓଡ଼ିଶା ପ୍ରଦେଶର ଏକ ବିଶାଳ ଜଳପଥ ହୋଇପାରିବ ।

ଏସବୁ କଥାକୁ ବିଚାରକୁ ନେଇ ଧାମରା ନିକଟରେ ଗୋଟିଏ ବନ୍ଦରର ଅଭିବୃଦ୍ଧି ନିମନ୍ତେ ନିମ୍ନଲିଖିତ ବ୍ୟବସ୍ଥାଗୁଡ଼ିକ କରାଗଲେ ତାହା ଦରିଦ୍ର ଓଡ଼ିଶା ପକ୍ଷରେ କଲ୍ୟାଣକର ହୁଅନ୍ତା ।

୧. କଲିକତାରେ ଥିବା ନୌ-ବାହିନୀର କ୍ଷୁଦ୍ର ଯୁଦ୍ଧତରୀ ଗୁଡ଼ିକୁ ସମୁଦ୍ରରେ ପହଞ୍ଚିବାକୁ ପ୍ରାୟ ୬୦ ମାଇଲ୍ ନଦୀପଥ ଅତିକ୍ରମ କରିବାକୁ ପଡ଼େ । ଏଥିରେ ସେଗୁଡ଼ିକୁ ଯଥେଷ୍ଟ ସମୟ ଲାଗେ ଏବଂ ସରକାରଙ୍କୁ ଅଧିକ ବ୍ୟୟ କରିବାକୁ ହୁଏ । ସେଗୁଡ଼ିକୁ ଯଦି ଧାମରା ସନ୍ନିକଟରେ ଅବସ୍ଥାପିତ କରିବାକୁ ଓଡ଼ିଶା ସରକାର ଭାରତୀୟ ନୌବାହିନୀଙ୍କୁ ଅନୁରୋଧ କରନ୍ତି ତାହାହେଲେ ଉକ୍ତ ତରୀଗୁଡ଼ିକୁ ମାତ୍ର ୧୨।୧୪ ମାଇଲ୍ ନଦୀପଥ ଅତିକ୍ରମ କରିବାକୁ ପଡ଼ିବ । ଉପକୂଳ ନିରାପତ୍ତା ଦିଗରେ ଏବଂ ସେମାନଙ୍କର ସାମୁଦ୍ରିକ ଶିକ୍ଷା ଦିଗରେ ବ୍ୟୟଭାର ଲାଘବ ହେବା ସଂଗେସଂଗେ ତାହା ଗୁରୁଭାର ଗ୍ରସ୍ତ କଲିକତା ଉପରୁ ଭିଡ଼ କମାଇ ପାରିବ ।

୨. ଧାମରା କୂଳରେ ଗଭୀର ସମୁଦ୍ରରୁ ମାଛ ମାରିବାପାଇଁ ମତ୍ସ୍ୟବିଭାଗ ପକ୍ଷରୁ ବ୍ୟବସ୍ଥା ହେବା ସଂଗେସଂଗେ ମତ୍ସ୍ୟ ସଂରକ୍ଷଣ ନିମନ୍ତେ ବ୍ୟବସ୍ଥା, ମାଛ ତେଲ ପ୍ରସ୍ତୁତ କରିବା ବ୍ୟବସ୍ଥା ତଥା ଉନ୍ନତ ଉପାୟରେ ଶୁଖୁଆ ପ୍ରସ୍ତୁତ କରିବା ପାଇଁ ଆନୁସଂଗିକ ବ୍ୟବସ୍ଥା କରାଯାଉ । ବର୍ତ୍ତମାନ ଧୀବରମାନେ ଯେଉଁ ମଗରମାଛ ଧରୁଛନ୍ତି ତାହାକୁ ନଷ୍ଟକରି ଦେବା ଫଳରେ ରାଜ୍ୟର ଏହି ସଂପଦ ଅବହେଳିତ ହେଉଅଛି ।

୩. ଓଡ଼ିଶା ଉନ୍ନତିପଥର ଦ୍ରୁତଯାତ୍ରୀ । ଓଡ଼ିଶାରେ ଅକଳନ୍ତି ବଣ୍ୟ ଓ ଖଣିଜ ସଂପଦ ପୂରିରହିଛି । ଉନ୍ନତ ଓଡ଼ିଶାରେ ବଣ୍ୟ ଓ ଖଣିଜ ସଂପଦର ରପ୍ତାନୀ ନିମନ୍ତେ ଏକାଧିକ ବନ୍ଦର ଆବଶ୍ୟକ । ଦରିଦ୍ର ଓଡ଼ିଶାର ଅଭିବୃଦ୍ଧି ନିମନ୍ତେ ନାନା ଦିଗରୁ ତାର ଉନ୍ନତିକରଣର ବାଞ୍ଛନୀୟ । ରୁପ୍‌ସା - ବାଙ୍ଗିରିପୋଷି ପାତି ରେଲଲାଇନ୍‌କୁ ପ୍ରଶସ୍ତ କରି ତାହାକୁ ଟାଟାନଗର ସହିତ ଯୋଗକଲେ ଓ ଭଦ୍ରକ ରାଣିତାଲ ରେଲଷ୍ଟେସନଠାରୁ ଧାମରା ନଦୀକୂଳ ଦେଇ ଚାନ୍ଦବାଲି ପର୍ଯ୍ୟନ୍ତ ରେଲଲାଇନ୍ ପଡ଼ିଲେ, ଚାନ୍ଦବାଲିର ଅଧିକ ଉନ୍ନତି ହେବା ସଂଗେସଂଗେ ଏଠାରେ ଗୋଟିଏ ସୁନ୍ଦର ମଧ୍ୟମ ଧରଣର ବନ୍ଦର ଗଢ଼ି ଉଠନ୍ତା । ଏହି ବନ୍ଦରବାଟେ ଟାଟାନଗରର ଲୁହାଲକଡ଼, ଛୋଟନାଗପୁର ସମେତ ମୟୂରଭଞ୍ଜ ଜିଲ୍ଲାର ବଣ୍ୟ ଓ ଖଣିଜପଦାର୍ଥ ରପ୍ତାନି କରିବାକୁ ତାହା କ୍ଷମ ହୁଅନ୍ତା ।

ଏସବୁ ପ୍ରତି ଆମ୍ଭେମାନେ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରି ଆବଶ୍ୟକୀୟ ବ୍ୟବସ୍ଥା କରାଇବା ନିମନ୍ତେ ଅନୁରୋଧ କରୁଅଛୁ ।

ଧାମରା କଥା ଉତ୍‌ଥାପନ କରି ପାରାଦ୍ୱୀପ ସଂଗେ ପ୍ରତିଦ୍ୱନ୍ଦ୍ୱିତା କରାଯାଉଛି ବୋଲି କିଏ କିପରି ଭୁଲ୍ ବୁଝାମଣା କରନ୍ତି, ଏଥିନିମନ୍ତେ ଆମ୍ଭେମାନେ ଅତିଶୟ ଦୁଃଖିତ । ଏପରି ଅବାସ୍ତବ, ଆତ୍ମଘାତୀ ପ୍ରତିଦ୍ୱନ୍ଦ୍ୱିତାର ଧାରଣା ମଧ୍ୟ ଆମ୍ଭମାନଙ୍କ ମନରେ କେବେ ହେଁ ଜନ୍ମିନାହିଁ । ବରଂ ପାରାଦ୍ୱୀପ ଅଚିରେ ଓ ବିନା ବାଧାବିଘ୍ନରେ ବିରାଟ ବନ୍ଦରରେ ପରିଣତ ହୋଇ ଓଡ଼ିଶାର ମେରୁଦଣ୍ଡ ସ୍ୱରୂପ ପାରାଦ୍ୱୀପରୁ ସମ୍ବଲପୁର ପର୍ଯ୍ୟନ୍ତ ମହାନଦୀର ଅନ୍ତର୍ଭୂମିକୁ ସମୃଦ୍ଧିମନ୍ତ କରୁ, ସୁଦୂର ପ୍ରାଚ୍ୟ ଦେଶମାନଙ୍କରୁ ଜଳପଥରେ ଭାରତ ପାଇଁ ଆସୁଥିବା ପଣ୍ୟପଦାର୍ଥ ଗ୍ରହଣ କରିବାକୁ ସମର୍ଥ ହେଉ ଏବଂ ଭାରତର ପୂର୍ବ ଉପକୂଳରେ ଏହା ଏକ ଆଧୁନିକ ବନ୍ଦରରେ ପରିଣତ ହୋଇ ଉତ୍କଳର ପୂର୍ବଗୌରବ ଓ ଐଶ୍ୱର୍ଯ୍ୟ ଫେରାଇ ଆଣୁ, ଏହା ଆମ୍ଭମାନଙ୍କର ଐକାନ୍ତିକ କାମନା ।

ଚାନ୍ଦବାଲି ବନ୍ଦର ଆଶୁ ଉନ୍ନତି କରାଯାଇ ଧାମରାର ଉନ୍ନତି ପ୍ରତି ତୃତୀୟ ପଞ୍ଚବାର୍ଷିକ ଯୋଜନାରେ ଦୃଷ୍ଟି ଦିଆଯାଉ ବୋଲି ଆମ୍ଭମାନଙ୍କର ନିବେଦନ ।

ଆପଣମାନଙ୍କ ଶୁଭାଗମନ ଯୋଗୁଁ ଆମ୍ଭମାନଙ୍କ ହୃଦୟ ଆଜି ଆଶା ଓ ଆନନ୍ଦରେ ପ୍ଳାବିତ । ଏତେ ପ୍ରତିନିଧି ସ୍ଥାନୀୟ ମହତ୍ ବ୍ୟକ୍ତିମାନଙ୍କ ଏକତ୍ର ସମାଗମ ଚାନ୍ଦବାଲିର ସ୍ମୃତିରେ ପରମ ସୌଭାଗ୍ୟର ଦିବସରୂପେ ଉଜ୍ଜ୍ୱଳ ହୋଇରହିବ । 'ଚାନ୍ଦବାଲି' ଓ 'ଧାମରା'ର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମୟରେ ଯତ୍‌କିଞ୍ଚିତ ଆପଣମାନଙ୍କର କର୍ଣ୍ଣଗୋଚର କରି ଆମ୍ଭମାନଙ୍କର କର୍ତ୍ତବ୍ୟ ସଂପାଦନ କରିପାରିଛୁ ଓ ଆପଣମାନେ ଧୈର୍ଯ୍ୟର ସହିତ ତତ୍‌ପ୍ରତି କର୍ଣ୍ଣପାତ କରିଛନ୍ତି ବୋଲି ଆମ୍ଭେମାନେ ନିଜକୁ କୃତାର୍ଥ ମଣୁଛୁ । ଏ ସଂପର୍କରେ ସବିଶେଷ ବିବରଣୀ ଜାଣିବା ନିମନ୍ତେ ଆମ୍ଭମାନଙ୍କ ଦ୍ୱାରା ପ୍ରକାଶିତ 'ଧାମରା(ଚାନ୍ଦବାଲି)ବନ୍ଦରର ଇତିହାସ' ଦେଖନ୍ତୁ ।

ମୁଁ ପୁନର୍ବାର ଆପଣମାନଙ୍କୁ ଅନ୍ତରର ସହିତ ଅଭିବାଦନ କରୁଛି ଓ ଆପଣମାନଙ୍କ ଶ୍ରମସ୍ୱୀକାର ନିମନ୍ତେ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି । ସତର୍କତା ସତ୍ତ୍ୱେ ଆମ୍ଭମାନଙ୍କର କୌଣସି ତ୍ରୁଟି ଘଟିଥିଲେ, ତାହା ଦୟାପୂର୍ବକ ମାର୍ଜନା କରିବା ହେବେ ।

ସଭାପତି, ଅଭ୍ୟର୍ଥନା ସମିତି
ଧାମରା(ଚାନ୍ଦବାଲି) ବନ୍ଦର ଉନ୍ନୟନ ସମ୍ମିଳନୀ

# ସଂପାଦକୀୟ : ସେଦିନ ଓ ଆଜି

(କଳ୍ପଲତା ୧୮୮୮ ଶକାବ୍ଦ, ୨ୟ ସଂଖ୍ୟା)

କ୍ରମାଗତ ଭାବରେ ଓଡ଼ିଶାରେ ପତ୍ରପତ୍ରିକା ସଂଖ୍ୟା ବୃଦ୍ଧିପାଇ ଚାଲିଛି- ସୁଖର କଥା । 'କଳ୍ପଲତା' ଆଜି ଏହି ସଂଖ୍ୟା ବୃଦ୍ଧିରେ ସାହାଯ୍ୟ କରିଥିବାରୁ ବୁକୁ ତାର ଫୁଲି ଉଠୁଛି ।

ସଂଖ୍ୟାତ୍ମକ ଦୃଷ୍ଟିରୁ ହୁଏତ ଆଜି ପତ୍ରପତ୍ରିକା ସନ୍ଦେହମୁକ୍ତ- କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ଅଧିକାଂଶ ସମୟରେ ନିରାଶ ହେବାକୁ ପଡ଼େ । ଓଡ଼ିଶାର ମୁଷ୍ଟିମେୟ କେତୋଟି ପତ୍ରିକା ବ୍ୟତୀତ ଅନ୍ୟସବୁ ଯଥାର୍ଥ ସାହିତ୍ୟ ପରିବେଷଣ କରିବାକୁ ଅକ୍ଷମ ହୋଇ ପଡୁଛନ୍ତି । ଆର୍ଥିକ ଦୁର୍ଗତି, ପ୍ରିୟାପ୍ରୀତି ତୋଷଣ, ଉପଯୁକ୍ତ ସଂପାଦନାର ଅଭାବ, ଅସାହିତ୍ୟିକମାନଙ୍କର ବିନା ପରିଶ୍ରମ, ବିନା ଅଧ୍ୟୟନରେ ସାହିତ୍ୟିକ ହେବାକୁ ଏକାନ୍ତ ଆଗ୍ରହ- ଏଇସବୁ ପତ୍ରିକାର ଅବନତି ପାଇଁ ଅନେକାଂଶରେ ଦାୟୀ । ପୁଣି ଅନେକ ବ୍ୟବସାୟୀ ସଂପାଦକମାନଙ୍କର ରକ୍ଷଣଶୀଳ ମନୋବୃତ୍ତି ନବାଗତ ତରୁଣ ଲେଖକ, ଲେଖିକାମାନଙ୍କ ଲେଖା ପ୍ରକାଶ ପାଇଁ ଏକାନ୍ତ ଅନିଚ୍ଛା, ସେହି ଲେଖକ ଲେଖିକାମାନଙ୍କ ପ୍ରତିଭା ବିପର୍ଯ୍ୟୟର ଅନ୍ୟତମ ହେତୁ । ଓଡ଼ିଶାର ପତ୍ରପତ୍ରିକା ଇତିହାସ ପୃଷ୍ଠା ଖୋଲି ଯେଉଁ ସଂପାଦକମାନେ ସ୍ମରଣ ପଥକୁ ଆସନ୍ତି, ସେମାନେ କେବଳ ସଂପାଦକ ନଥିଲେ, ଉପରନ୍ତୁ ସେହିମାନଙ୍କ ହାତରେ ଗଢ଼ି ଉଠିଥିଲେ ବହୁ ଲେଖକ ଲେଖିକା । କୌଣସିମତେ ଲେଖାଟି ପଢ଼ିଦେଇ ପତ୍ରିକାରେ ଛାପିଦେବା ହୁଏତ ସଂପାଦନାର ଗୋଟାଏ ଦିଗ (ଯାହା ହେବା ମଧ୍ୟ ଉଚିତ୍ ନୁହେଁ) ହୋଇପାରେ- ମାତ୍ର ସମସ୍ତ ଦିଗ ନୁହେଁ । ବର୍ତ୍ତମାନ ସଂପାଦକଙ୍କ ସହ ବ୍ୟକ୍ତିଗତ ପରିଚୟ ନଥିଲେ ଲେଖା ପ୍ରକାଶ ପାଏନା- ସେ ଯେତେ ଉଚ୍ଚକୋଟିର ଲେଖା ହେଉପଛେ । ଦୁଃଖର ସହିତ ଏକଥା ପ୍ରକାଶ ନକରି ଉପାୟ ନାହିଁ ।

ପୁଣି ସାହିତ୍ୟ କ୍ଷେତ୍ରରେ ଆଜି ନାନାପ୍ରକାର ଗୋଷ୍ଠୀ ତିଆରି ହେଉଛି । ଗୋଷ୍ଠୀର ମୁଖ୍ୟମାନେ ନିଜନିଜକୁ ପ୍ରତିଷ୍ଠିତ ଓ ପ୍ରଚାରିତ କରିବାପାଇଁ ନାମ ଉଦ୍ଦେଶ୍ୟପୂର୍ଣ୍ଣ

ଘଟଣା ସାହିତ୍ୟ କ୍ଷେତ୍ରକୁ ପ୍ରବେଶ କରାଉଛନ୍ତି ଫଳତଃ ସାହିତ୍ୟ ରାଜ୍ୟର ସମ୍ବାଦ ଆଜି ବିସମ୍ବାଦରେ ପରିଣତ ହେଉଛି । ଏ କ୍ଷେତ୍ରେ ନବାଗତ ଲେଖକ ଲେଖିକାମାନେ ନିଜ ପଥରୁ ଓହରି ଆସିବାରେ ବୈଚିତ୍ର୍ୟ କିଛି ନାହିଁ ।

ପତ୍ରିକା କ୍ଷେତ୍ରରେ ଏଇସବୁ ନୀତି ଦୁର୍ନୀତି । ଏଇ ଦୁର୍ନୀତି ଆଜି ଏକ ସମସ୍ୟାରେ ପରିଣତ ହେଲାଣି ।ଏ ସମସ୍ୟାର କିପରି ସମାଧାନ ହେବ ସେ ବି ଏକ ସମସ୍ୟା ।

ଓଡ଼ିଆ ପତ୍ରପତ୍ରିକାର ଏଇଭଳି ଏକ ସମସ୍ୟା-ଶଙ୍କୁଳ ଅବସ୍ଥାରେ 'କଳ୍ପଲତା'ର ଜନ୍ମ । ଉଦ୍ଦେଶ୍ୟ, ତାର ନୂତନ ଲେଖକ ଲେଖିକା ସୃଷ୍ଟି । ଏଇ ଆଭିମୁଖ୍ୟ ନେଇ କଳ୍ପଲତା ପ୍ରିୟାପ୍ରୀତି ତୋଷଣ ଠାରୁ ଦୂରେଇ ରହିଛି । ଆର୍ଥନୀତିକ ଦୁଃସ୍ଥିତି ସହିତ ସଂଗ୍ରାମ କରିଛି - ତାର ସାଫଲ୍ୟ କେବଳ ଓଡ଼ିଶାର ଅଗଣିତ ସାହିତ୍ୟସେବୀମାନଙ୍କ ଉପରେ ହିଁ ନିର୍ଭର କରେ । ତେଣୁ ନିଜ ସମ୍ବନ୍ଧରେ କଳ୍ପଲତାର କୌଣସି କୈଫିୟତ ଆପାତତଃ ନାହିଁ ।



# ସମ୍ପାଦକଙ୍କୁ ପତ୍ର

ଶ୍ରୀଯୁକ୍ତ 'ସମାଜ' ସଂପାଦକ ମହୋଦୟ !

ପ୍ରସଂଗ - 'କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ।'

ମହାଶୟ !

ସୁନ୍ଦରଗଡ଼ ଜିଲ୍ଲାରେ ପ୍ରାଚୀନ 'ବେଦବ୍ୟାସ' ପୀଠ ଅବସ୍ଥିତ । ଏହା ରାଉରକେଲା ନିକଟସ୍ଥ ଶଙ୍ଖ ଓ କୋଇଲି ନଦୀଦ୍ୱୟର ସଂଗମ ସ୍ଥଳରେ ଅବସ୍ଥିତ । ଶଙ୍ଖ ଓ କୋଇଲିର ସଂଗମସ୍ଥଳରୁ ବ୍ରାହ୍ମଣୀ ନଦୀର ଉତ୍ପତ୍ତି । ଏଠାରେ ବେଦବ୍ୟାସଙ୍କ ଆଶ୍ରମ ମଧ୍ୟ ଅଛି । ଶିବରାତ୍ରି ଉପଲକ୍ଷେ ଏଠାରେ ସପ୍ତାହବ୍ୟାପୀ ପ୍ରକାଣ୍ଡ ମେଳା ବସେ । ଏହି ମେଳା ଏ ଅଞ୍ଚଳର ଏକ ପ୍ରସିଦ୍ଧ ଲୋକପର୍ବ ।

ବ୍ୟାସଦେବଙ୍କର ଅନ୍ୟ ନାମ କୃଷ୍ଣ ଦ୍ୱୈପାୟନ । ବର୍ଣ୍ଣରେ କୃଷ୍ଣ ଓ ଦ୍ୱୀପରେ ସେ ଜନ୍ମଗ୍ରହଣ କରିଥିଲେ ବୋଲି କୃଷ୍ଣଦ୍ୱୈପାୟନ ଆଖ୍ୟା ପାଇଥିଲେ । ତାଙ୍କ ମାତା କୁମାରୀ 'ସତ୍ୟବତୀ' ରୂପସୀ କୈବର୍ତ୍ତ କନ୍ୟା । ନୌକାରେ ଦ୍ୱୀପକୁ ପାର ଉତାର କରିବା ଭାର ତାଙ୍କ ଉପରେ ନ୍ୟସ୍ତ ଥିଲା । ଦିନେ ନୌକାରେ ଋଷି ପରାଶର ପାର ହେଉଥିଲା ସମୟରେ ଘନ କୁହେଳିକା ଆଚ୍ଛାଦନ ତଳେ ପରାଶର ଋଷିଙ୍କ ସଂଯୋଗରେ ସତ୍ୟବତୀଙ୍କ ଗର୍ଭରୁ ବ୍ୟାସଦେବଙ୍କ ଜନ୍ମ । ଶଙ୍ଖ ଓ କୋଇଲିର ସଂଗମସ୍ଥଳରେ ଏହି ଦ୍ୱୀପ ଅବସ୍ଥିତ । ନୌକା ଏଠାରେ ପାର ଉତାର କରେ । ଏଠାରେ କୁହୁଡ଼ି ସମୟରେ ଘନକୁହୁଡ଼ି ହୋଇଥାଏ ।

ବ୍ୟାସଦେବଙ୍କ ଜନ୍ମ ସଂପର୍କରେ ମହାଭାରତ ବର୍ଣ୍ଣିତ ଏପରି ଏତେ ବଳିଷ୍ଠ ଯୁକ୍ତି ଥାଉଥାଉ ତାଙ୍କ ଜନ୍ମସ୍ଥାନ ଆଜି ଅବହେଳିତ ।



# ଚିଠିପତ୍ର

## ଚିଠି ନଂ - ୧

## କବି ବିନୋଦ ନାୟକଙ୍କୁ ପତ୍ର

ଶ୍ରଦ୍ଧେୟ ବିନୋଦ ବାବୁ! ତା.୨୭.୦୮.୧୯୭୦

ତୁମର ୧୩.୮.୭୦ ଚିଠିର ଉତ୍ତର ପାଇ ବଡ଼ ଆନନ୍ଦିତ ହେଲି । ଏତେଦିନ ତଳର କଥା ତୁମ ମନରେ ଏଡ଼େ ନିଖୁଣ ଭାବରେ ରହିଛି ଜାଣି ଅଭିଭୂତ ହେଲି । ହଁ, ମୁଁ ଗଡ଼ଜାତରେ ଶିକ୍ଷକତା କରୁଥିଲି ଏବଂ 'ସହକାର'ରେ ମୋର ସେଇସବୁ ଲେଖା ପ୍ରକାଶିତ ହୋଇଥିଲା । ସେ ସମୟରେ ତୁମେ ସୁନ୍ଦରଗଡ଼ ହାଇସ୍କୁଲ ହଷ୍ଟେଲ ଉତ୍ତରପାଖ ଶେଷ ରୁମ୍‌ରେ ରହୁଥିଲ ଏବଂ ତୁମର ପ୍ରାଇଭେଟ୍ ଟିଉଟର୍ ରୂପେ ମଧ୍ୟ କେତେ ସମୟ ଥିଲି । ତୁମର ଏଇ ନିରହଙ୍କାର ଶିଷ୍ଟତା ଏବେ ଏକାନ୍ତ ବିରଳ ।

ତୁମର କବିତା ଗୁଡ଼ିକ 'ଝଙ୍କାର'ରୁ ମୁଁ ଆଗ୍ରହର ସହିତ ପଢ଼େ ଭାରି ଭଲ ଲାଗେ ଏବଂ ମୁଁ ଖୁବ୍ ଗର୍ବ ଅନୁଭବ କରେ । ଅନେକଦିନ ତଳେ ଥରେ ସୁନ୍ଦରଗଡ଼ର ଶ୍ରୀକୃଷ୍ଣ ବାବୁ କହିଥିଲେ - "ଏଇସବୁ କବିତା ତୁମ ପ୍ରିୟ ଛାତ୍ର ବିନୋଦ ନାୟକଙ୍କର ।" ଗଦ୍ୟ ଲେଖା ଆରମ୍ଭ କରିଛ ବେଶ୍ ଭଲ କଥା । ଚିଲପୁରୁଷ ଓ ଅରଣ୍ୟର ପରାଜୟ ପଢ଼ିଲି । ପଶ୍ଚିମ ଓଡ଼ିଶାର ଗ୍ରାମ୍ୟ ଜୀବନର ଚିତ୍ର, ପ୍ରାକୃତିକ ଶୋଭାର ଗରିମା, ଶବ୍ଦ, ଢଗଢମାଳି, ବଚନିକା, କାହାଣୀ ସମ୍ଭାର ଏପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୁ ଆସିନାହିଁ । ଏସବୁ ଆସିଲେ ଓଡ଼ିଆ ସାହିତ୍ୟ ଆହୁରି ଋଦ୍ଧିମନ୍ତ ହେବ, ପୁଷ୍କଳ ହେବ । ବଳିଷ୍ଠ ଲେଖନୀ ଦ୍ୱାରା ଏହା ସମ୍ଭବ ହୋଇପାରିବ । ଅରଣ୍ୟର ପରାଜୟରେ ଏହାର କ୍ଷୀଣ ପରିଚୟ ମିଳିଛି । ଏ ବିଷୟରେ ପରେ ପୁଣି ମୁଁ ତୁମ ପାଖକୁ ପତ୍ର ଲେଖିବି ।

ପ୍ରାୟ ଦୁଇବର୍ଷ ତଳେ ଜଣେ ଭଦ୍ରବ୍ୟକ୍ତି ତାଙ୍କ ନିକଟରେ ଥିବା 'ଭାଷାକୋଷ' ଟ୩୫୦୦/- ବିକ୍ରୟ କରିବାକୁ 'ସମାଜ'ରେ ଆଡଭାଟାଇଜ୍ କରିଥିଲା । ଏବେ 'ଡଗର'ରେ ସେହିପରି ଆଡ୍‌ଭାଟାଇଜ୍‌ମେଣ୍ଟ ବାହାରିଛି । ଏହା ଟ୪୫୦୦/-କୁ ବନ୍ଧେଇ ଭାଷାକୋଷ ମିଳିବ ବୋଲି । ମୋର ମଧ୍ୟ ବନ୍ଧେଇ କିନ୍ତୁ ଉପର ମଲାଟ ବାହାରି ଯାଇଛି । ଉପର ମଲାଟ ଦେଇ ବାନ୍ଧିଦେଲେ ସୁନ୍ଦର ହୋଇଯିବ । ଏହା

ବୋଲି ମୁଁ କହୁନାହିଁ ଯେ ମୋତେ ଟ୩୫୦୦/- କିଁ ଟ.୪୫୦୦/- ନହେଲେ ମୁଁ ଦେବିନାହିଁ ବୋଲି । ମାର୍କେଟରେ ଏହାପାଇଁ ବର୍ତ୍ତମାନ ଡିମାଣ୍ଡ କିରକମ, କେତେ ମୂଲ୍ୟ ମିଳିପାରିବାର ସମ୍ଭାବନା ମୁଁ ଜାଣେନା । ଏକ ଦାରୁଣ ଆର୍ଥିକ ସଂକଟ ଲଙ୍ଘନ ପାଇଁ ମୁଁ ଏହା ବିକ୍ରୟ କରିବାକୁ ଯାଉଛି । ଯୁଗକାଳ ପରିସ୍ଥିତିକୁ ଚାହିଁ ଯେତେ ବେଶି ମୂଲ୍ୟ ମିଳିପାରିବ - (ଅଢ଼େଇ ହଜାର, ତିନିହଜାର, ଚାରି ହଜାର) ତାହାର ଯୋଗାଡ଼ ଅନୁଗ୍ରହ କରି ଦେଲେ ମୁଁ ପରମ ଉପକୃତ ହୁଅନ୍ତି । ସେ ଭାର ତୁମକୁ ଲାଗିଲା । ଯେପରି ଉଚିତ ଭାବିବ କରିବ । ଆବଶ୍ୟକୀୟ ଉପର ମଲାଟ ବାବଦକୁ ଯାହା ଖର୍ଚ୍ଚ ଲାଗିବ, ଭାଷାକୋଷ ମୂଲ୍ୟରୁ ମୁଁ ତାହା କାଟିଦେବାକୁ ପ୍ରସ୍ତୁତ ଅଛି । ଅତି ବେଶିରେ କେତେ ମିଳିବ, ଅନୁଗ୍ରହ କରି ମୋତେ ଯେତେ ଶୀଘ୍ର ଜଣାଇବ । ତାହାହିଁ ମୋ ପକ୍ଷରେ ଗ୍ରହଣୀୟ ।

ଆଶୁ ଉତ୍ତର ପ୍ରାପ୍ତି ଆଶାରେ ରହିଲି । ମୁଁ ତୁମର ସର୍ବାଙ୍ଗୀନ କୁଶଳ କାମନା କରେ ।

ତୁମର ସାର୍
(ଜଗନ୍ନାଥ ପଢ଼ିଆରୀ)

## ଚିଠି ନଂ - ୨

ଶ୍ରଦ୍ଧେୟ ଶ୍ରୀମାନ୍ ! ତା.୨୫.୦୯.୭୦

ପ୍ରହରାଜ ଭାଷାକୋଷ ସଂପର୍କରେ ମୁଁ ଖଣ୍ଡିଏ ଚିଠି ତୁମକୁ ପ୍ରାୟ ମାସକ ତଳେ ଲେଖିଥିଲି । ଏଥିରେ ଅନୁରୋଧ କରିଥିଲି ତୁମକୁ ଆଗରୁ ଉତ୍ତର ପାଇଁ କିନ୍ତୁ କାହିଁକି କେଜାଣି, ତୁମେ ଏପର୍ଯ୍ୟନ୍ତ ଉତ୍ତର ଦେଲନାହିଁ । ଭାଷାକୋଷ ପାଇଁ ଗରାଖ ମିଳିବାର ଆଶା ଅଛି କି ଏବଂ ଯଦି ମିଳନ୍ତି କେତେ ମୂଲ୍ୟରେ ଏହା ବିକ୍ରିହୋଇ ପାରିବ ? ଗରାଖ ମିଳୁମିଳୁ କ'ଣ ଖୁବ୍ ଡେରି ହେବ ? ହେଳା ନକରି ଅନୁଗ୍ରହ ପୂର୍ବକ ଚଞ୍ଚଳ ଉତ୍ତର ଦେବ - ବାଧିତ ହେବି ।

ତୁମର ସର୍ବକୁଶଳ କାମନା କରେ ।
ତୁମର ଗୁଣମୁଗ୍ଧ ସାର୍
(ଜଗନ୍ନାଥ ପଢ଼ିଆରୀ)

## ଚିଠି ନଂ - ୩

ପ୍ରିୟ କମଳାକାନ୍ତ, ତା.୦୫.୦୮.୬୭ରିଖ,

ଗୋଲାଡ଼ିଆ

ତୁମ ଚିଠି ଖଣ୍ଡିକ ପାଇ ମୁଁ ଅଭିଭୂତ ହୋଇପଡ଼ିଲି । ଏବେବି ଅକିଞ୍ଚନ ସାଂଗ ଜଣକର ସ୍ମୃତି ତୁମ ମନରେ ସଜଫୁଲ ପରି ସତେଜ ରହିଛି । ତୁମ ଚିଠି ମୋତେ ପୁନଃ ତାରୁଣ୍ୟ ଦେଇଥିଲା । ପି.ଏମ୍. ଏକାଡେମୀ, କାୟସ୍ଥ ହଷ୍ଟେଲ, ତୁମ ଚିତ୍ର ଅଙ୍କା, ସାହିତ୍ୟ ସୋପାନ ପାଇଁ ଲେଖାଲେଖି, ବିଗତଦିନର କେତେକଥା ସ୍ମୃତିପଟରେ ଚଳଚ୍ଚିତ୍ର ସୃଷ୍ଟି କରିଥିଲା । ଏହିପରି ଗୁଣଟି ପ୍ରକୃତ ସହୃଦୟତା । ମୁଁ ତୁମ ଲେଖାସବୁ ପାଇଁ ଗର୍ବକରେ ଓ ତୁମ ସଫଳତାରେ କିଞ୍ଚିତ ଭାଗୀଦାର ହେବାରୁ ସାଂଗଲୋକଙ୍କୁ କହେ "ଏଇ ଲେଖକ ମୋ କ୍ଲାସମେଟ୍" । ତୁମ ଲେଖାପାଇଁ ମୋ ଚିତ୍ତରେ ବାରମ୍ବାର ଜୟଜୟକାର ଧ୍ୱନିତ ହୋଇଥିଲେ ମଧ୍ୟ, ଦୁଃଖର କଥା, ତୁମ ଠିକଣା ଅଭାବରୁ ମୁଁ ତୁମକୁ ମୋର ଅଭିନନ୍ଦନ ଜଣେଇ ପାରିନାହିଁ ।

ମୁଁ ବରାବର ଚାନ୍ଦବାଲିରେ ଗୋଟିଏ ଜାହାଜ କମ୍ପାନୀରେ କାମ କରୁଥିଲି । ରିଟାୟାର କରିଛି । ରିଟାୟାର କଲେ କ'ଣ ହେବ, ପୁଣି ଏକ ନୂଆ ଦାୟିତ୍ୱରେ ପଡ଼ିଛି । ଚାନ୍ଦବାଲିରେ ଗୋଟିଏ ବାଳିକା ହାଇସ୍କୁଲ ଖୋଲିଛି, ତହିଁର ସମ୍ପାଦକତ୍ୱ ଭାର ମୋ ଉପରେ ପଡ଼ିଛି । ୧୦ମ ଶ୍ରେଣୀଯାଏ ଖୋଲି ଗଲାଣି । ଆଚ୍ଛା, ତୁମର ବଡ଼ଝିଅ ତ ବି.ଇଡି., ସେ ବର୍ତ୍ତମାନ କ'ଣ କରୁଛି ? ସେ ଯଦି ନିଯୁକ୍ତି ନ ପାଇଥାଏ କିମ୍ବା ସ୍କୁଲ ପରିବର୍ତ୍ତନ କରିବାକୁ ଚାହୁଁଥାଏ, ଅନୁଗ୍ରହ କରି ମୋତେ ତୁମେ ଲେଖିବ ।

ମୋର ୩ଟି ସନ୍ତାନ ୧ମ ଝିଅ ୩ୟବର୍ଷ ବି.ଏ. ପଢୁଛି, ୨ୟ ଝିଅ, ମେଟ୍ରିକ୍ ଏକାଦଶରେ ପଢୁଛି, ୩ୟ ପୁଅ, ସେ ମଧ୍ୟ ଏକାଦଶରେ ପଢୁଛି ।

ଏଥର କଟକ ଗଲେ ତୁମ ଘରକୁ ନିଶ୍ଚୟ ଯିବି, ତୀର୍ଥ ଦର୍ଶନ ପରି ଲାଗିବ ମୋତେ । ପିଲାଛୁଆଙ୍କୁ ମୋର ଆଶୀର୍ବାଦ ।

ଇତି

ଜଗନ୍ନାଥ ପଢ଼ିଆରୀ

ଚାନ୍ଦବାଲି

ଶ୍ରୀ କମଳାକାନ୍ତ ଦାସ

ମେରିଆବଜାର, କଟକ-୧

## ଚିଠି ନଂ - ୪

ସ୍ନେହର ନିମାଇ, ତା.୧୮.୦୯.୬୭ରିଖ

ମୁଁ ଦୁର୍ଯ୍ୟୋଧନ ବାବୁ (ମିଲ୍ ମେନେଜର)ଙ୍କ ସହିତ ପରାମର୍ଶ କରିଛି । ସେ କହିଛନ୍ତି, ସେ ନିଜେ ଟ.୨୮୦/- (ପର୍ଯ୍ୟନ୍ତ ଦେଇପାରିବେ ଏବଂ ବିଭିନ୍ନ ମିଲ୍‌ରୁ କିଛିକିଛି କରେଇଦେବେ । ତାଙ୍କୁ ଆପାତତଃ ଟ.୭୫୦/- (ଆୟୋଜନ କରିବାକୁ ଅନୁରୋଧ କରିଛି । ସେ କହିଛନ୍ତି, ଆମ ସମସ୍ତଙ୍କ ସହିତ ଗୋଟିଏ ବୈଠକରେ ମିଳିତ ହେଲାପରେ ସେ ଆଦାୟର ଭାର ନେବେ । ତୁମେ ପବ୍ଲିକେଶନ ପାଇଁ ଭାରି ବ୍ୟଗ୍ର ହୋଇ ପଡୁଛ । ଅର୍ଥ ସଂଗ୍ରହ ପରେ ଅବସ୍ଥା ଦେଖି ପ୍ରକାଶନର ବ୍ୟବସ୍ଥା କରିବା । ପୂଜାରେ ପ୍ରାୟ ସବୁ ପତ୍ରିକା ଝକମକ୍ ହୋଇ ବାହାରିବ - ଆମେ ତାଙ୍କ ମେଳରେ ଉଧେଇବା ନାହିଁ । ଛୁଟି ହେଲାକ୍ଷଣି ତୁମେ ଆସ । ଅର୍ଥାଗମର ବ୍ୟବସ୍ଥା କରିବା । ମୋ ମତରେ କାଳିପୂଜା ବେଳକୁ ପତ୍ରିକା ପ୍ରକାଶିତ ହେଲେ ଭଲ ହେବ । ଚାନ୍ଦବାଲି ସେତେବେଳେ ବେଶ୍ ସରଗରମ ଥାଏ, ଭଲ ବିକ୍ରି କରିପାରିବା । ରେଜିଷ୍ଟ୍ରେସନ ଓ ନୂତନ ନାମକରଣର କିଛି ବ୍ୟବସ୍ଥା ହୋଇନାହିଁ । ବଳରାମବାବୁ ମଧ୍ୟ ଉଦ୍‌ଯୋଗ କରୁଛି, ତଥାପି ତୁମେ ଯଦି ଜିଗର କର, ମୋ ପାଖରେ ଥିବା ଅନ୍ୟମାନଙ୍କର ଲେଖା ଓ ସଂପାଦକୀୟ ତୁମ ଠିକଣାକୁ ପଠାଇଦେବି ।

ତୁମର କୁଶଳ କାମନା କରେ ।

ଶ୍ରୀ ଜଗନ୍ନାଥ ପଡ଼ିଆରୀ

## ଚିଠି ନଂ - ୫

From - Jagannath Padhihari

At./Po - Goladia, Via - Chandbali

Dist - Balasore

To

The Compiler dt.18.10.67

Odia Bhashakosh, Cuttack

Respected Sir,

Although I am a poor man I am very eager to have a set of the Bhashakosha as a household asset. I may kindly be advised, as to how and from where I am get the same to purchase and what an amount it would cost.

Payment at instalments would suit me, if this is allowed, I may very kindly be advised of this too.

My Compliments

**Yours Faithfully**

Jagannath Padhihari

**ଚିଠି ନଂ - ୬**

1329/GM/69

ସମାଜ ଅଫିସ୍
କଟକ
ତା ୨୫-୧୦-୬୯

ପ୍ରିୟ ଜଗନ୍ନାଥ ବାବୁ!

ଆପଣଙ୍କର ତା ୨୫-୯-୬୯ର ପତ୍ର ପାଇଥିଲି । କେତେକ ପୁସ୍ତକ ବିକ୍ରେତାଙ୍କୁ ଗ୍ରାହକ ଠିକଣା କରିବାକୁ ଅନୁରୋଧ କରିଥିଲି । କାହାରିଠାରୁ ସନ୍ତୋଷଜନକ ଉତ୍ତର ମିଳିଲା ନାହିଁ । ଏକହଜାର ଟଙ୍କା ମୂଲ୍ୟରେ ଦେବାକୁ ରାଜି ହୋଇଥିଲି । ବର୍ତ୍ତମାନ ଆପଣ ଚିନ୍ତାକରନ୍ତୁ, ଗ୍ରାହକ ନମିଳିବା ପର୍ଯ୍ୟନ୍ତ ଅପେକ୍ଷା କରିବେ କିମ୍ବା ଟ.୨୦/- ଖର୍ଚ୍ଚକରି ସମାଜରେ ଥରେ ବିଜ୍ଞାପନ ଦେବେ । ଯାହା ସ୍ଥିର କରିବେ, ଜଣାଇବେ ।

ଧାନଫସଲ ପୋକପାଇଁ ଚିନ୍ତା କରୁନାହିଁ । ଆସନ୍ତା ଦଶନ୍ଧି କିପରି ଦୁର୍ଦ୍ଦିନ ମଧ୍ୟରେ ଗତିକରିବ, ତାହାହିଁ ଚିନ୍ତାର ବିଷୟ ।

ଆଶାକରେ ଭଗବାନ ଆପଣଙ୍କୁ କୁଶଳରେ ରଖିଥିବେ ।

ସ୍ନେହାଧୀନ
**ଶ୍ରୀ ଫକୀର ଚରଣ ଦାସ**

(ଜଗନ୍ନାଥବାବୁଙ୍କ 'ଓଡ଼ିଆ ଭାଷାକୋଷ' ବିକ୍ରି କରିବାପାଇଁ ସମାଜର ମୁଖ୍ୟ ପରିଚାଳକ ଶ୍ରୀ ଫକୀର ଚରଣ ଦାସଙ୍କ ଚିଠି ଯେ କି ଚାନ୍ଦବାଲି ବ୍ଲକ୍‌ର ଘଣ୍ଟେଶ୍ୱର ଅଧିବାସୀ ଥିଲେ ।)

ପ୍ରାପକ :

**Jagannath Padhihari**
At/po - Goladia, Via - Chandbali
Dist - Balasore

## ଚିଠି ନଂ - ୭

To

**The Tahasildar, Chandbali**

**Sir,**

With due respect I state that I am an inhabitant of Village-Goladia, P.S.-Chandabali of your revenew circle. An income certificate in my fabour is necessary in connection with the education of my son, Debabrata Padhihari.

My annual income does not exceed Rs.700/-(Rupees seven hundred only).

I request that an annual income certificate to this effect may please be issued in my fabour for which I shall remain thankful.

Goladia
17.06.70

Yours faitfhfully
Jagannath Padhihari

**ଚିଠି ନଂ - ୮**

ସୁନ୍ଦରଗଡ଼
ତା.୦୯.୦୭.୭୧

ମାନନୀୟେଷୁ,

ମୋର ନମସ୍କାର ଗ୍ରହଣ କରିବେ । ଆପଣଙ୍କ ପତ୍ର ପାଇଲି । ଆପଣଙ୍କ ଝିଅ ବିଷ୍ଣୁପ୍ରିୟା ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେଉଥିବା ଜାଣି ଖୁସିହେଲି । ମାତ୍ର ଆପଣ ମୋ ପାଖରୁ ଯେଉଁ ନୋଟ୍ ଚାହିଁଛନ୍ତି, ତାହାଦ୍ୱାରା ତାଙ୍କର ବିଶେଷ ଉପକାର ହେବନାହିଁ । କାରଣ ୧୯୬୭ ମସିହାରେ ଏମ୍.ଏ. ସିଲାବସ୍ ୧୯୭୨ ମସିହା ଏମ୍.ଏ.ସିଲାବସ୍ ମଧ୍ୟରେ ଆକାଶ ପାତାଳ ତାରତମ୍ୟ । ଏକେତ ମୋର ନୋଟ୍‌ସବୁ ମୋ ପାଖରେ ନାହିଁ । ପରୀକ୍ଷା ପରେ ମୋର ଯେଉଁ ବନ୍ଧୁମାନେ ମୋ ପାଖରୁ ତାହା ସବୁ ନେଇଥିଲେ, ସେମାନେ ତାହା ଏଯାବତ୍ ଫେରାଇ ନାହାନ୍ତି । ତା'ଛଡ଼ା, ସେସବୁ ନୋଟ୍ ଥିଲେ ମଧ୍ୟ ବିଷ୍ଣୁପ୍ରିୟାଙ୍କର କୌଣସି ଦରକାରରେ ଆସନ୍ତା ନାହିଁ ।

ତେବେ ଏ ଦିଗରେ କିଛି ସାହାଯ୍ୟ କରିବାପାଇଁ ମୁଁ ଗତବର୍ଷର ଜଣେ ଏମ୍.ଏ. ପାସ୍ କରିଥିବା ବନ୍ଧୁଙ୍କୁ ଗତକାଲି ଚିଠି ଲେଖିଛି । ତାଙ୍କର ନୋଟ୍ ଯଦି ସେ ମୋ ପାଖକୁ ଦିଅନ୍ତି, ମୁଁ ରେଜେଷ୍ଟ୍ରି ଡାକରେ ଆପଣଙ୍କ ନିକଟକୁ ପଠାଇଦେବି । ଆଶାକରେ ଆପଣ ମୋତେ ଭୁଲ୍ ବୁଝିବେ ନାହିଁ ।

ଏସବୁ ବ୍ୟତୀତ ମୁଁ ଆଉ କି ପ୍ରକାର ସାହାଯ୍ୟ କରିପାରିବି । ନିଃସଙ୍କୋଚରେ ମୋତେ ଜଣାଇଲେ, ମୁଁ ସେଥିପାଇଁ ଯଥାସାଧ୍ୟ ଚେଷ୍ଟାକରିବି ।

ଅନ୍ୟାନ୍ୟ ଖବର ଭଲ ।

॥ ଇତି ॥
ଆପଣଙ୍କର
ବଳରାମ ଦାସ

To
Sri Jagannath Padhiari
At/P.O.-Goladia
Via - Chandabali, Dist - Balasore

From
Balaram Das
Sundargarh College,
Sundargarh

(ବି.ଦ୍ର. - ଓଡ଼ିଆ ଭାଷା ସାହିତ୍ୟ ବିଭାଗର ବିଶିଷ୍ଟ ପ୍ରାଧ୍ୟାପକ ଓ ସୁସାହିତ୍ୟିକ ଡକ୍ଟର ବଳରାମ ଦାସ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା କାର୍ଯ୍ୟ ଶେଷକରି ଏବେ ପୁରୀ ସହରରେ ସ୍ଥାୟୀ ବାସିନ୍ଦା ହୋଇଛନ୍ତି । ତାଙ୍କଘର ଚାନ୍ଦବାଲିର ଗୋପାଳପୁର, ଗ୍ରାମରେ । ସେ ଜଣେ ମେଧାବୀଛାତ୍ର ଭାବରେ ଚାନ୍ଦବାଲି ଅଞ୍ଚଳରେ ସୁନାମ ଅର୍ଜନ କରିଥିଲେ ।)

**ଚିଠି ନଂ - ୯**

Chandabali
17.08.72

**Dear Panchanan Babu,**

You will be glad to learn that I have brought back the 'Bhasakos'. It is now with me at Chandbali. Please arrange to take delivery of the same of your earliest convenience.

Sincerely
J.N. Parihari

To

Sri. Panchanan Pallai

Headmaster, Matto High School

At / P.O.-Motto

Dist - Balasore

**ଚିଠି ନଂ -୧୦**

Chandabali
19.09.72

**Dear Panchanan Babu,**

Received your card letter dt.18.09.72. I am starting for Berhampur on 21.09.72 with Bishnupriya to get her admitted into the Training College there for B.Ed. I shall comeback by the 24th or 25th.

Be not troubled, Please arrange payment towards the first weak of the next month.

Let everything be O.K. with you.

Sincerely
J.N. Parihari

To
Sri Panchanan Pallai
Headmaster, Matto High School
At / P.O.-Motto
Dist - Balasore

**ଚିଠି ନଂ -୧୧**

ଗୋଲାଡ଼ିଆ
ତା.୧୯.୦୭.୭୩

ବୁଢ଼ୀ

ତୋ ପାଖକୁ ଗୋଟିଏ ଅନୁବାଦିତା କବିତା ପଠେଇଥିଲି, ପାଇଥିବୁ । ତାହାର ୭ମ ଓ ୮ମ Stanza ନିମ୍ନଲିଖିତ ରୂପେ ମୁଁ ଟିକିଏ ବଦଳେଇକି ପଠେଇଲି । ଦେଖିବୁ, ତତେ କେଉଁଟା ଅଧିକ ପସନ୍ଦ ହେବ, ସେଇୟା କରିବୁ ।

ମହାଜନ - ଜୀବନରୁ ମିଳଇ ଇଙ୍ଗିତ
ଆମେ ମଧ୍ୟ ହୋଇବା ମହାନ
ସମୟ - ସାଗର - ତୀରେ ପଦଚିହ୍ନ ଲେଖି
ରଖିଯିବା ଅଲିଭା ନିଶାଣ । ୭
ଜୀବନ - ସମୁଦ୍ରେ କେଉଁ ଦୁର୍ଭାଗା ଜନର
ଚୂର୍ଣ୍ଣୀଭୂତ ହୁଏ ଯଦି ତରୀ
ବିଜନ ବେଳାରେ ଦେଖି ପଦାଙ୍କ ଆମରି
ଆଶା ତା'ର ଉଠିବ ସଞ୍ଚରି । ୮

(କବି ତାଙ୍କ ବଡ଼ ଝିଅ ବିଷ୍ଣୁପ୍ରିୟା (ବୁଢ଼ୀ)ଙ୍କ ପାଖକୁ ଉକ୍ତ ଚିଠିଟି ଲେଖିଥିଲେ । ଏଥିରୁ ସ୍ପଷ୍ଟ ହୁଏ ଯେ ପିତା କନ୍ୟାଙ୍କ ମଧ୍ୟରେ ସାହିତ୍ୟ ଚର୍ଚ୍ଚା ହେଉଥିଲା ଏବଂ କବି ତାଙ୍କ ରଚନାର ଭଲ ଭନ୍ଦ ବିଷୟରେ କନ୍ୟାଙ୍କଠାରୁ ମତାମତ ଗ୍ରହଣ କରୁଥିଲେ । )

**ଚିଠି ନଂ -୧୨**

ପୋ. - ସାହାସପୁର, ଭାୟା-ଲଇକେରା,
ଜି. - ଝାରସୁଗୁଡ଼ା, ପିନ୍ - ୭୬୮୨୧୫
ତା.୧୪.୦୮.୦୨

କଲ୍ୟାଣୀୟ ଡକ୍ଟର ଶ୍ରୀମାନ୍ ଗିରି,

ଆପଣ ମୋର ବାସଭବନରେ ପଦାର୍ପଣ କରି ମୋତେ ସମ୍ମାନିତ କରିଯାଇଛନ୍ତି । ସାର୍ ପଢ଼ିହାରୀ ସାହିତ୍ୟ ଏକାଡ଼େମୀ ଅଫିସ୍‌ରେ ସାକ୍ଷାତ୍ ଦେଇ ଫେରିଗଲା ପରେ ଅତ୍ୟନ୍ତ କରୁଣ ଦେଖାଯାଉଥିଲେ । ମୁଁ ସାହିତ୍ୟ ଏକାଡ଼େମୀର ସମ୍ମାନ ତାଙ୍କୁ ଦେଇପାରିଲି ନାହିଁ । ଏହାହିଁ ମୋର ଚିରନ୍ତନ ବେଦନା ହୋଇ ରହିଗଲା । 'ଅପୂର୍ବା' -୪୮ ମଧୁସୂଦନନଗର, ୟୁନିଟ୍-୪, ଭୁବନେଶ୍ୱର, ୭୫୧୦୦୧, ଫୋନ୍ -୦୬୭୪-୪୦୦୨୩୨ ଓଡ଼ିଆ ଲେଖକ ପରିଚୟ ୨୦୦୩ । ସଂପାଦକ କ୍ଷୀରୋଦଚନ୍ଦ୍ର ପତି ପ୍ରକାଶ କରୁଛନ୍ତି । ପଢ଼ିଆରୀସାର୍ ଏବଂ ଆପଣଙ୍କ ଜୀବନୀ ଓ ସାହିତ୍ୟକୃତି ସେଠାକୁ ପଠାଇବାକୁ ଅନୁରୋଧ ।

ଆପଣ ସାଂପ୍ରତିକ ପରିବେଶରେ ସଚେତନ ଏବଂ ସମ୍ବେଦନଶୀଳ ବିରାଟ ବ୍ୟକ୍ତିତ୍ୱ । ଏଇ ବ୍ୟକ୍ତିତ୍ୱକୁ ମୁଁ ସମ୍ମାନ ଜଣାଉଛି । ଅଭିନନ୍ଦନ ଜଣାଉଛି । ଆପଣଙ୍କ ସମ୍ମୁଖ ପଥ ଚନ୍ଦନ ଚର୍ଚ୍ଚିତ ହେଉ ।

*ଶୁଭେଚ୍ଛୁ*
*ବିନୋଦ ଚନ୍ଦ୍ର ନାୟକ*

ଡ.ଅରବିନ୍ଦଗିରି
ସୁଏଲପୁର, ମୋତିଗଞ୍ଜ
ବାଲେଶ୍ୱର, ଓଡ଼ିଶା



ପୁତ୍ର ଦେବବ୍ରତ, ପୁତ୍ରବଧୂ କାଦମ୍ବିନୀ ଓ ନାତୁଣୀ ଗୀତାଞ୍ଜଳି ସହ
ସସ୍ତ୍ରୀକ ଜଗନ୍ନାଥ ପଢ଼ିଆରୀ



ଜଗନ୍ନାଥ ପଡ଼ିଆରୀଙ୍କ ପୁତ୍ର ଦେବବ୍ରତ, କନ୍ୟା ପଦ୍ମାବତୀ ଓ କନ୍ୟା ବିଷ୍ଣୁପ୍ରିୟା



୧୯୬୦ରେ ଧାମରା-ଚାନ୍ଦବାଲି ବନ୍ଦର ଅଭ୍ୟର୍ଥନା କମିଟିରେ (ଡାହାଣରୁ ତୃତୀୟ) ଜଗନ୍ନାଥ ପଢ଼ିଆରୀ

## ସଂପାଦିତ ଓ ଲିଖିତ ପୁସ୍ତକାବଳୀ

- ଚନ୍ଦ୍ରମୋହନ ପରିକ୍ରମା
- ଚନ୍ଦ୍ରମୋହନ ଗ୍ରନ୍ଥାବଳୀ
- ଗୋଲକ ସ୍ମୃତିସମ୍ଭାର
- ଫକୀରମୋହନଙ୍କ ଦୁର୍ଲଭ ରଚନାବଳୀ
- ଉତ୍କଳ ଦର୍ପଣ
- ରାଧାକମଳ ସ୍ମୃତିଅର୍ଘ୍ୟ
- ଚନ୍ଦ୍ରମୋହନ ମହାରଣାଙ୍କ ଜୀବନୀ
- ଶ୍ରୀ ଧୂର୍ଜଟୀ ଫକୀରମୋହନ

ଜଗନ୍ନାଥ ପଢ଼ିଆରୀ ଓଡ଼ିଆ ସାରସ୍ୱତଜଗତର ଜଣେ ଅନାଲୋଚିତ ପ୍ରତିଭା । ପ୍ରାଚୀନ ସାହିତ୍ୟ ପତ୍ରିକା 'ସହକାର', 'ନବଭାରତ', 'ଜହ୍ନମାମୁଁ', 'ପଲ୍ଲୀମଙ୍ଗଳ' ଆଦି ପତ୍ରିକାରେ ତାଙ୍କର ଏକାଧିକ ଲେଖା ପ୍ରକାଶ ପାଇଥିଲା । ଜଣେ ଗାଳ୍ପିକ ଓ କବି ଭାବରେ ସମକାଳୀନ ସମାଜରେ ସେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ପତ୍ରପତ୍ରିକାରେ ପ୍ରକାଶିତ ରଚନା ପାଇଁ ମଧ୍ୟ ପାଠକୀୟ ଆଦୃତିଲାଭ କରିଥିଲେ । ସମାଜସେବା, ରାଜନୀତିରେ ସକ୍ରିୟ ଯୋଗଦାନ, ବନ୍ୟା ଓ ବାତ୍ୟାଜନିତ ପାଣ୍ଡୁଲିପିଗୁଡ଼ିକ ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବା ତାଙ୍କ ସାରସ୍ୱତସାଧନା ଦିଗରେ ଅନ୍ତରାୟ ସୃଷ୍ଟି କରିଥିଲା । ଦୀର୍ଘଦିନର ନିରବତା ତାଙ୍କ ସୃଜନ ମନସ୍କତାକୁ ଶିଥିଳ କରି ଦେଇଥିଲା । ଫଳରେ ସେ ସାରସ୍ୱତଜଗତରୁ ଆଜି ପର୍ଯ୍ୟନ୍ତ ଅନାଲୋଚିତ ଓ ଅନାଲୋକିତ ହୋଇ ଲୋକଲୋଚନର ଅନ୍ତରାଳରେ ରହିଯାଇଛନ୍ତି । ଏକଦା ଓଡ଼ିଆ ସାରସ୍ୱତଜଗତରେ ବେଶ୍ ସୁନାମ ଅର୍ଜନ କରିଥିବା ଏହି ସ୍ରଷ୍ଟାଙ୍କୁ ଲୋକଲୋଚନକୁ ଆଣିବାର ପ୍ରୟାସ କରି ତାଙ୍କ ରଚନାସମୂହକୁ ଏକତ୍ର ପ୍ରକାଶ କରିବାର ଉଦ୍ୟମ କରାଯାଇଛି ।

ପ୍ରକାଶକ